# କବି

୰ ତାରାଶଙ୍କର ବନ୍ଦୋପାଧ୍ୟାୟ

ଅନୁବାଦକ

ଡକ୍ଟର ଚଉଧୁରୀ ହେମକାନ୍ତ ମିଶ୍ର



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ନୂଆ ଦିଲ୍ଲୀ

# ଭୂମିକା

ତାରାଶଙ୍କର ବନ୍ଦୋପାଧ୍ୟାୟଙ୍କ 'କବି' ଉପନ୍ୟାସଟି ପ୍ରଥମ ଥର ପ୍ରକାଶିତ ହେବା ସମୟକୁ ମୋ ବୟସ ସାତବର୍ଷ । ୧୯୪୧ ମସିହା । ଲେଖକଙ୍କ ବୟସ ସେତେବେଳକୁ ଚାଳିଶି ଡେଇଁସାରିଲାଣି । ସାବାଳକ ହୋଇଯିବାର କିଛି ପୂର୍ବରୁ ଆମେସବୁ ଯେବେ ଗଳ୍ପ ଉପନ୍ୟାସ ପଢ଼ା ଆରମ୍ଭ କରୁଛୁ, ତାରାଶଙ୍କର ସେତେବେଳକୁ ଖ୍ୟାତିର ମଧ୍ୟାକାଶରେ ଏବଂ 'କବି' ଉପନ୍ୟାସଟି ସେତେବେଳେ ସୁଦ୍ଧା ସମପରିମାଣରେ ଜନପ୍ରିୟ । ଅର୍ଥାତ୍ ତାରାଶଙ୍କରଙ୍କ ସାଥିରେ ଆମର ପ୍ରବୁଦ୍ଧେ କି ବେଶୀ ବ୍ୟବଧାନ ହୋଇଥିବା ସତ୍ତ୍ୱେ ଆମେ ତାଙ୍କ ସାହିତ୍ୟ-ରସରେ ଗଭୀରଭାବେ ଆପ୍ଲୁତ ହୋଇଛୁ । ତାଙ୍କର ବିରାଟ ସୃଜନୀ କ୍ଷମତା ଓ ସୂକ୍ଷ୍ମ ମାନବଚରିତ୍ରବୋଧ ସବୁବେଳେ ହିଁ ଆମ ମନରେ ଗଭୀର ଶ୍ରଦ୍ଧା ଓ ବିସ୍ମୟ ସୃଷ୍ଟି କରିଛି ।

ବଙ୍ଗଳା ସାହିତ୍ୟରେ 'କବି' ଉପନ୍ୟାସଟିର ଖ୍ୟାତି ବର୍ତ୍ତମାନ ସୁଦ୍ଧା ଅମ୍ଳାନ । ଆଲଡସ୍ କବି ଇସ୍ୱେଟସଙ୍କ ସମ୍ପର୍କରେ କୁହାଯାଏ, ତିରିଶ ବର୍ଷଧରି ସେ ଥିଲେ ଜଣେ ସମସାମୟିକ ଲେଖକ—ତାରାଶଙ୍କରଙ୍କ ସମ୍ପର୍କରେ ମଧ୍ୟ ସେହି ବାକ୍ୟଟି ଅବଲୀଳାକ୍ରମେ କୁହାଯାଇପାରେ ।

ରବୀନ୍ଦ୍ରନାଥଙ୍କ ମୃତ୍ୟୁବର୍ଷରେ ପ୍ରକାଶିତ ଏହି ଉପନ୍ୟସଟିକୁ ଗୋଟିଏ ଦୃଷ୍ଟିରୁ ବେଶ୍ ଗୁରୁତ୍ୱପୂର୍ଣ୍ଣ କୁହାଯାଇପାରେ । ସାହିତ୍ୟର ଯେଉଁ ନୂଆ ଧାରାଟି କେତେ ବର୍ଷ ପୂର୍ବରୁ ହିଁ ଆରମ୍ଭ ହୋଇଥିଲା, ରବୀନ୍ଦ୍ରନାଥଙ୍କ ମୃତ୍ୟୁପରେ ତାର ଗୋଟିଏ ବିଶିଷ୍ଟ ରୂପ ପରିସ୍ଫୁଟ ହୋଇଉଠିଥିଲା । ଏ ବିଷୟରେ କିଛି ଆଲୋଚନା କରିବା ଆଗରୁ ଏହାର ପଛଭୂମି ବିଷୟରେ ସଂକ୍ଷେପରେ କିଛି କହିବା ଦରକାର ।

ଚଳିତ ଶତାବ୍ଦୀର ଆରମ୍ଭଠାରୁ ଦ୍ୱିତୀୟ ମହାସମରଯାକେ ବିସ୍ତୃତ ସମୟ ଭିତରେ ରବୀନ୍ଦ୍ରନାଥ ବଙ୍ଗଳା ସାହିତ୍ୟରେ ସାମ୍ରାଜ୍ୟ ବିସ୍ତାର କରିଥିଲେ । ଅନ୍ୟାନ୍ୟ ଭାରତୀୟ ଭାଷାର ସାହିତ୍ୟ ଉପରେ ଏବଂ କିଛି ସମୟଲାଗି ଇଂରାଜୀ ସାହିତ୍ୟରେ ମଧ୍ୟ ତାଙ୍କର ପ୍ରଭାବ କେତେଟା ପଡ଼ିଥିଲା, ସେଇଟା ଆମର ଉପସ୍ଥିତ ଆଲୋଚନାର ବିଷୟ ନୁହେଁ । ବଙ୍ଗଳା ସାହିତ୍ୟର ସେ ଜୀବନସର୍ବସ୍ୱ ହୋଇଥିଲେ, ଏ ବିଷୟରେ ଦ୍ୱିମତ ନାହିଁ ।

ଏପରି ପ୍ରତିଭାବାନ୍ ଲେଖକ ପ୍ରକୃତରେ ଦୁର୍ଲଭ । ଆମେ ସମସ୍ତେ କୌଣସି ସମୟରେ ରବୀନ୍ଦ୍ରନାଥଙ୍କୁ ଅପସନ୍ଦ କରିଅଛୁ, ତାଙ୍କ ସାହିତ୍ୟର ବିରୋଧିତା କରିଛୁ ନାନା କାରଣରୁ; କିନ୍ତୁ ହୃଦୟର ଗଭୀରତମ ପ୍ରଦେଶରେ ଯେଉଁଠାରେ ଆମେ ସମସ୍ତେ ସତ୍ୟବାଦୀ ହେବାକୁ ବାଧ୍ୟ, ସେଠାରେ ରବୀନ୍ଦ୍ରନାଥଙ୍କର ବିରାଟ ପ୍ରତିଭାକୁ ଅସ୍ୱୀକାର କରିପାରିନାହୁଁ—ଏ କଥା ଯେ ଅସ୍ୱୀକାର କରିବ ସେ ହୀନତମ ମିଥ୍ୟାବାଦୀ—ସେ ଲେଖକ ନୁହେଁ ।

ରବୀନ୍ଦ୍ରନାଥ କବିତା, ଉପନ୍ୟାସ, ଗଳ୍ପ, ଗୀତ ଓ ପ୍ରବନ୍ଧ—ସବୁଦୃଷ୍ଟିରୁ ବିରାଟ । ତାଙ୍କ ଜୀବନକାଳରେ ଆହୁରି କେତେ ଲୋକ କବିତା ଲେଖିଛନ୍ତି, ଉପନ୍ୟାସ ଲେଖିଛନ୍ତି, କବିତା, ଗଳ୍ପ ଓ ଗୀତ ରଚନା କରିଛନ୍ତି—କିନ୍ତୁ ସେମାନେ ଆଜି ସମସ୍ତେ ପ୍ରାୟ ବିସ୍ମୃତ କିମ୍ବା ସ୍କୁଲ-କଲେଜର ପାଠ୍ୟପୁସ୍ତକରେ ବନ୍ଦୀ । ସେମାନଙ୍କ ଭିତରେ କେବଳ ମାତ୍ର କବିତାରେ କାଜୀ ନଜରୁଲ୍ ଇସ୍‌ଲାମ ଓ ଉପନ୍ୟାସରେ ଶରତଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କୁ ପାଠକମାନେ ଅଦ୍ୟାପି ଭୁଲିନାହାନ୍ତି ।

ଉପନ୍ୟାସ-କଥା ହିଁ ଧରାଯାଉ । ଉପନ୍ୟାସର ସଂଜ୍ଞା ମାନି ରବୀନ୍ଦ୍ରନାଥଙ୍କର ପ୍ରତ୍ୟେକ ଉପନ୍ୟାସ ଖଣ୍ଡି ଉପନ୍ୟାସ ହୋଇଛି କି ନା, ସେ ବିଷୟରେ ଅନେକ ବିବାଦ ରହିଛି । ଖଣ୍ଡି ଉପନ୍ୟାସ ହୁଅନ୍ତୁ ନହୁଅନ୍ତୁ, ସେଗୁଡ଼ିକର ସାହିତ୍ୟିକ ମୂଲ୍ୟ ଅସାଧାରଣ । ସୂକ୍ଷ୍ମ ହୃଦୟ-ବିଶ୍ଳେଷଣ, ଚରିତ୍ରର ସଜୀବତା ଓ ଭାଷା ବ୍ୟବହାରରେ ସେହି ଉପନ୍ୟାସଗୁଡ଼ିକ ଅତୁଳନୀୟ । ତା ଛଡ଼ା, ଉପନ୍ୟାସର ସଂଜ୍ଞା ତ ଆଉ ପାହାଡ଼-ପର୍ବତ ପରି ଅକ୍ଷୟ ଅଚଳ ନୁହେଁ । ପ୍ରକୃତପକ୍ଷେ ରବୀନ୍ଦ୍ରନାଥଙ୍କର ଉପନ୍ୟାସ ଓ ନାଟକଗୁଡ଼ିକ ହିଁ ଶିକ୍ଷିତ ବଙ୍ଗାଳୀର ରୁଚିକୁ ପରିମାର୍ଜିତ କରିଛନ୍ତି । ତଥାପି, ରବୀନ୍ଦ୍ରନାଥଙ୍କର ଜୀବନକାଳରେ ହିଁ ଔପନ୍ୟାସିକଭାବରେ ଅନେକ ବେଶୀ ଜନପ୍ରିୟ ହୋଇଥିଲେ ଶରତଚନ୍ଦ୍ର । ବିଦଗ୍ଧ ସମାଲୋଚକମାନଙ୍କ ପାଖରେ ଶରତଚନ୍ଦ୍ର ପୂରାପୂରି ସ୍ୱୀକୃତି କେବେ ପାଇନାହାନ୍ତି; କିନ୍ତୁ ପାଠକସମାଜ ତାଙ୍କୁ ବିପୁଳଭାବେ ଗ୍ରହଣ କରିଥିଲା । ରବୀନ୍ଦ୍ରନାଥଙ୍କ ପରି ଗଭୀର ଉପଲବ୍ଧି ଏବଂ ଭାଷା ବ୍ୟବହାରର ଉନ୍ନତ ରୁଚି ବା ସୋଫିଷ୍ଟିକେସନ୍ ଶରତଚନ୍ଦ୍ରଙ୍କର ନଥିଲା; କିନ୍ତୁ ସହଜ ସରଳ ଆବେଗମୟ କାହାଣୀଦ୍ୱାରା ସେ ପାଠକଚିତ୍ତ ଜୟ କରିଥିଲେ ।

ଗଳ୍ପକାରଭାବରେ ଶରତଚନ୍ଦ୍ର ମଧ୍ୟ କିଛି କମ୍ ପ୍ରତିଭାଶାଳୀ ନ ଥିଲେ; କିନ୍ତୁ ସେ ବଙ୍ଗଳା ସାହିତ୍ୟରେ କୌଣସି ଅଲଗା ଧାରା ସୃଷ୍ଟି କରିପାରିନାହାନ୍ତି । ଶରତଚନ୍ଦ୍ରଙ୍କର ଅନୁସରଣକାରୀ ଲେଖକଙ୍କ ସଂଖ୍ୟା ନଗଣ୍ୟ । ବଙ୍ଗଳା ସାହିତ୍ୟର ମୂଳ ଧାରା ରବୀନ୍ଦ୍ରନାଥଙ୍କୁ ଆଶ୍ରୟ କରି ହିଁ ପ୍ରବାହିତ ହେଉଥିଲା ।

୧୯୨୪-୨୫ ମସିହାରୁ ଆରମ୍ଭ ହୁଏ ରବୀନ୍ଦ୍ର-ବିଦ୍ରୋହ । ତତ୍କାଳୀନ ତରୁଣ ଲେଖକମାନେ ପ୍ରକାଶ୍ୟଭାବେ ରବୀନ୍ଦ୍ରନାଥଙ୍କୁ ଅସ୍ୱୀକାର କରି ସାହିତ୍ୟ ରଚନା କରିବାକଥା ଘୋଷଣା କଲେ—କବିତାରେ ଯେମିତି, ଗଳ୍ପ-ଉପନ୍ୟାସରେ ବି ସେଇମିତି । ଏହି ତରୁଣ ଲେଖକମାନେ ପ୍ରାୟ ସମସ୍ତେ ପାଶ୍ଚାତ୍ୟ ସାହିତ୍ୟ ସଙ୍ଗେ ସୁପରିଚିତ; ଅନେକେ ପୁଣି ଇଂରାଜୀ ସାହିତ୍ୟରେ ଏମ୍. ଏ. । ରବୀନ୍ଦ୍ରନାଥଙ୍କ ରଚନାରେ ଯେଉଁସବୁ ବିଷୟବସ୍ତୁ ନାହିଁ; ଯଥା—ବସ୍ତି, ଇଲାକା, କୋଇଲାଖଣି, ବଣୁଆ ଆଦିବାସୀ ଇତ୍ୟାଦି—ସେଇସବୁ ନେଇ ରଚନା ପ୍ରକାଶର ଭିଡ଼ ଦେଖାଦେଲା । ତଥାକଥିତ ଅଶ୍ଳୀଳତା ବା ନାରୀ ପୁରୁଷଙ୍କର ଦୈହିକ ମିଳନକଥା ରବୀନ୍ଦ୍ରନାଥଙ୍କ ରଚନାରେ ନାହିଁ ବୋଲି ତାକୁ ବି ରବୀନ୍ଦ୍ରବିରୋଧୀମାନେ ଅବଲମ୍ବନ ଭାବରେ ଧରିଲେ । ବଙ୍ଗଳା ସାହିତ୍ୟରେ ସେତେବେଳେ ବେଶ୍ ଗୋଟାଏ ଉଦ୍ଦୀପନା ଓ ଜାଗରଣର ସମୟ ଆସିଥିଲା ।

ରବୀନ୍ଦ୍ରନାଥଙ୍କର ଅନୁକରଣକାରୀ ବା ଉପଚ୍ଛାୟା ଜାତୀୟ ଲେଖକଙ୍କ ତୁଳନାରେ ରବୀନ୍ଦ୍ରବିରୋଧୀ ଲେଖକମାନେ ନିଶ୍ଚିତଭାବେ ଅଧିକ ଆକର୍ଷଣୀୟ । ତେବେ ଦୁଃଖର କଥା, ରବୀନ୍ଦ୍ରବିରୋଧୀମାନେ ସେମିତି କିଛି ଅମୂଲ-ମୂଲ ଫସଲ ବଙ୍ଗଳା ସାହିତ୍ୟକୁ ଉପହାର ଦେଇପାରିନାହାନ୍ତି । ଅଭିଜ୍ଞତାହୀନ ବିଷୟବସ୍ତୁ ନେଇ ନୂଆ ରୀତି ସୃଷ୍ଟି-ମୋହରେ ସେମାନେ କୃତ୍ରିମ ରଚନା ହିଁ ବେଶୀ ସୃଷ୍ଟି କରିଛନ୍ତି । କବିତାଦୃଷ୍ଟିରୁ ଗୋଟିଏ ଅଲଗା ଧାରା ସୃଷ୍ଟି ହେଲେହେଁ, ଉପନ୍ୟାସଦୃଷ୍ଟିରୁ ସେମାନେ ସମ୍ପୂର୍ଣ୍ଣ ବ୍ୟର୍ଥ, କୁହାଯାଇପାରେ । ଯେଉଁ ତିନିଜଣ ଲେଖକ ରବୀନ୍ଦ୍ରନାଥଙ୍କର ପରବର୍ତ୍ତୀ କାଳରେ ପ୍ରଧାନ ଔପନ୍ୟାସିକ ହିସାବରେ ସ୍ୱୀକୃତ, ସେମାନଙ୍କ ଭିତରୁ କେହି ହେଲେ ଏହି ରବୀନ୍ଦ୍ରବିରୋଧୀ ଗୋଷ୍ଠୀଭୁକ୍ତ ନଥିଲେ । ସେମାନେ ନିଜସ୍ୱ ଅଭିଜ୍ଞତାର ଭିତ୍ତିରେ, ନିଜସ୍ୱ ଭାଷାରେ, ଉପନ୍ୟାସ ରଚନା କରିଛନ୍ତି । ତାହାର ହେତୁରୁ ତିଆରି ହୋଇଛି ଅଲଗା ଗୋଟିଏ ସାହିତ୍ୟରୂପ । ରବୀନ୍ଦ୍ରନାଥଙ୍କର ବିରୋଧିତା କରିବା ଘେନି ଏମାନେ ମୁଣ୍ଡ ଖେଳାଇ ନାହାନ୍ତି । ଏହି ତିନିଜଣ ବଙ୍ଗଳା ସାହିତ୍ୟର "ତିନି ବାନାର୍ଜୀ" ବା "ଥ୍ରୀ ଗ୍ରେଟ୍ ବ୍ୟାନାର୍ଜିସ୍" ନାମରେ ପରିଚିତ—ବିଭୂତିଭୂଷଣ, ମାଣିକ ଓ ତାରାଶଙ୍କର । ଏମାନଙ୍କ ମଧ୍ୟରୁ ତାରାଶଙ୍କର ବନ୍ଦ୍ୟୋପାଧ୍ୟାୟ ହିଁ ଅନବରତ ସୃଜନଶୀଳ ଥିଲେ ।

ସେହି ହିସାବରେ, ରବୀନ୍ଦ୍ରନାଥଙ୍କ ମୃତ୍ୟୁବର୍ଷରେ ପ୍ରକାଶିତ 'କବି' ଉପନ୍ୟାସ ଆଧୁନିକ କାଳର ବଙ୍ଗଳା ସାହିତ୍ୟର ଗୋଟିଏ ଦିଗ୍‌ଦର୍ଶକ ଚିହ୍ନ କୁହାଯାଇପାରେ । ପ୍ରଥମେ ଏହି ଉପନ୍ୟାସଟି ଯେବେ ପଢ଼ିଲି, ସେହି ଅଭିଜ୍ଞତା ମୋର ବର୍ତ୍ତମାନ ସୁଦ୍ଧା ମନେ ଅଛି । କେବଳ ମନେହେଉଥାଏ ସରିଯିବ କି ଆଉ, ହଠାତ୍ ବନ୍ଦ ହୋଇଯିବ କି ଆହା !

ଶେଷ କରିହାର କେତେବେଳେଯାକେ ଚୁପ୍ ଚୁପ୍ ବସିରହିଥିଲି, ଆଖିରୁ ଲୁହ ବି ଗଡ଼ାଇଥିଲି—କୈଶୋର ବୟସରେ ଘୁଡରେ ଏହିରକମର ପବିତ୍ର ଆଖିଲୁହ ଜମା-ଥାଏ । ଆହା, ସେହି ମୁଗ୍ଧତାବୋଧ ଆଉ ହୁଏତ ଫେରିଆସିବ ନାହିଁ । ବହିଟି ପଢ଼ୁ ପଢ଼ୁ ଘୁଡଭିତରେ ସଦାବେଳେ ଗୋଟିଏ କୋହ ଅନୁଭବ କରିଥିଲି—ରକମେ ନିଃସଙ୍ଗତାର କୋହ—ଅଭିଜ୍ଞ ପାଠକ ମାନେ ଜାଣନ୍ତି । ମହତ୍ତ୍ୱ ସାହିତ୍ୟ ପାଠକରି ଏହି ଧରଣର କୋହର ସ୍ୱାଦ ପାଇବା ପାଇଁ ଆମେ ବାରମ୍ବାର ପ୍ରଲୁବ୍ଧ ହୋଇଥାଉଁ ।

ତାରାଶଙ୍କରଙ୍କର ପ୍ରଥମ ଉପନ୍ୟାସଗୁଡ଼ିକ ତଟକା ସତେଜ ପବନ ପରି ବଙ୍ଗଳା ସାହିତ୍ୟରେ ଉପସ୍ଥିତ ହୋଇଥିଲେ । ରବୀନ୍ଦ୍ରବିରୋଧୀମାନଙ୍କ ଭାଷାର କଚର-କଚର ଓ ନକଲି ଆଧୁନିକତାର ଦୌରାତ୍ମ୍ୟରେ ପାଠକମାନେ ଯେତେବେଳେ କ୍ଲାନ୍ତ, ସେତିକିବେଳେ ତାରାଶଙ୍କର ପରିବେଷଣ କଲେ ଖାଣ୍ଟି ରକ୍ତମାଂସର ମଣିଷ, ଯାହାଙ୍କର ସୁଖଦୁଃଖ ଆମର ପରିଚିତ—ଏହି ଦେଶର ମାଟି-ପାଣି-ପବନରେ ବଢ଼ିଥିବାର ନିର୍ଭୁଲ ଚିହ୍ନ ତାଙ୍କ ଦେହରେ । ଏହିସବୁ ମଣିଷ ଦୁଃଖ ଦାରିଦ୍ର୍ୟ ଲାଞ୍ଛନାରେ ନିର୍ଯାତିତ ହୋଇଛନ୍ତି; କିନ୍ତୁ ସେସବୁ ଡେଇଁ ଅନ୍ୟ ଏକ ସ୍ତରରେ ପହଞ୍ଚିବାର ଚେଷ୍ଟା ବି ଦେଖାଇଛନ୍ତି ଲେଖକ । ତାଙ୍କ ଉପନ୍ୟାସରେ ଗଳ୍ପର ଆକର୍ଷଣ ମଧ୍ୟ ଅସାଧାରଣ । ରବୀନ୍ଦ୍ରନାଥ ତାରାଶଙ୍କରଙ୍କୁ କହିଥିଲେ—ତମେ ଯେ ଗଳ୍ପ ଲେଖିବାକୁ ଯାଇ ନଲେଖିବାର ବାହାନା କରନା, ଏଇଟା ମତେ ଖୁବ୍ ଭଲ ଲାଗେ ।

ବଙ୍ଗଳା ଦେଶର ଗୋଟିଏ ବିଶେଷ ଅଞ୍ଚଳର ମଣିଷ ହିଁ ତାରାଶଙ୍କରଙ୍କ ସାହିତ୍ୟରେ ବେଶୀ ସ୍ଥାନ ପାଇଛନ୍ତି । ଅନେକେ କହନ୍ତି, ଶୈଶବ ଓ କୈଶୋରର ଅଭିଜ୍ଞତା ଭିତରୁ ହିଁ ଲେଖକ ତାଙ୍କର ସାରାଜୀବନର ରଚନାର ମାଲମସଲା ପାଇଛନ୍ତି । ତାରାଶଙ୍କର ସ୍ୱୟଂ ବି ଜଣେ ଗ୍ରାମ୍ୟ ଜମିଦାରବଂଶର ସନ୍ତାନ, ଜୀବନର ବେଶ୍ କିଛି ସମୟ କଟେଇଛନ୍ତି ଗ୍ରାମାଞ୍ଚଳରେ । ସ୍ୱଭାବତଃ, ଜମିଦାର-ପରିବାର ସମ୍ବନ୍ଧରେ ତାଙ୍କର ବାସ୍ତବ ଅଭିଜ୍ଞତା ରହିଛି । ପୁଣି, ସ୍ୱାଧୀନତା ଆନ୍ଦୋଳନ ଓ ସମାଜସେବା କର୍ମରେ ଅଂଶ ଗ୍ରହଣ କରିବା-ଫଳରେ ସମାଜର ନିମ୍ନସ୍ତରର ମଣିଷ ସାଙ୍ଗରେ ବି ସେ ଗଭୀରଭାବେ ମିଶିଛନ୍ତି । ସାହିତ୍ୟକୁ ହିଁ ଜୀବିକା ହିସାବରେ ଗ୍ରହଣ କରି ସେ ଯେତେବେଳେ ପ୍ରଥମେ କଲିକତାରେ ଆସି ବସା ବାନ୍ଧିଲେ, ସେତେବେଳେ ତାଙ୍କୁ ସହିବାକୁ ପଡ଼ିଛି କଠୋରତମ ଦାରିଦ୍ର୍ୟ । ଏହିସବୁ ଅଭିଜ୍ଞତାରୁ ପ୍ରତ୍ୟେକଟି ସେ କାମରେ ଲଗାଇଛନ୍ତି ପୁରାପୁରି ଭାବେ । ଜୀବନକୁ ଅନେକ ଦୃଷ୍ଟିକୋଣରୁ ଦେଖିବାର ଦୁର୍ଲଭ କ୍ଷମତା ବି ସେ ଅର୍ଜନ କରିଛନ୍ତି । ପୁଣି ସ୍ଥାନ-କାଳର ଗଣ୍ଡି ଲଙ୍ଘନ କରି ନିଜର ସୃଷ୍ଟ ଚରିତ୍ରଗୁଡ଼ିକୁ ସେ ବାସ୍ତବ ରଖି ସୁଦ୍ଧା ସାର୍ବଜନୀନ କରିପାରିଛନ୍ତି । ତେବେ, ସମାଜସେବା ଓ ଜେଲ୍ ଖଟିବାର

ଅଭିଜ୍ଞତା ହେତୁରୁ ହିଁ ହୁଏତ ତାଙ୍କ ରଚନାରେ କେତେବେଳେ କେମିତି ଆଦର୍ଶବାଦଟା ଟିକିଏ ଚଢ଼ା-ସୁରରେ ବାଜୁଛି ।

'କବି' ଉପନ୍ୟାସର ନାୟକ ଏହି ରକ୍ଷଣଶୀଳ ସମାଜର ଅତି ନିମ୍ନସ୍ତରର ମଣିଷ । ଆମେ ଯାହାଙ୍କୁ କହୁଁ 'ଡମ' । ସହରରେ 'ଡମ' କହିଲେ ମଡ଼ା ପୋଡ଼ିବା ଲୋକ ବୁଝାଏ । କିନ୍ତୁ ଗ୍ରାମାଞ୍ଚଳରେ 'ଡମ୍ ଜାତି' କହିଲେ ବୁଝାଏ ଭୟଙ୍କର ଦୁର୍ଦ୍ଧର୍ଷ ମଣିଷଙ୍କୁ, ଯେଉଁମାନେ କେବେ ଜମିଦାରଙ୍କ ଅଧୀନରେ ଲଠିଆଲ ବା ପାଇକ ବରକନ୍ଦାଜ ହିସାବରେ ନିଯୁକ୍ତ ହେଉଥିଲେ—ପରେ ସେମାନେ ସ୍ୱେଚ୍ଛା ଡକେଇତିକୁ ପେଶା କରିନେଇଛନ୍ତି । ବର୍ତ୍ତମାନ ଅବଶ୍ୟ ସେମାନେ ଶ୍ରମିକଶ୍ରେଣୀ । ଏହିପରି ବଂଶର ପୁଅ ନିତାଇ ଜଣେ କବି । ନିତାଇର ମାମୁ ଜଣେ କୁଖ୍ୟାତ ଡକେଇତ । ନିତାଇର ବି ଡକେଇତିରେ ଯୋଗଦେବାର କଥା—କିନ୍ତୁ ପିଲାଦିନୁ ସେ ଭାବପ୍ରବଣ ଓ ସଚ୍ଚୋଟ । ଡକେଇତି ନକରି ନିତାଇ କବିତା ଓ ଗୀତ ଲେଖେ । ଉପନ୍ୟାସର ଆରମ୍ଭରୁ ହିଁ ବୁଝାଯାଏ, ଏହି ଲେଖକ ମଣିଷକୁ ଗୋଟିଏ ସ୍ତରରୁ ଉଚ୍ଚତର ସ୍ତରକୁ ଯେନିଯିବାରେ ବିଶ୍ୱାସ କରନ୍ତି । ଏହାହିଁ ସୁସ୍ଥ ଜୀବନଧର୍ମ, ସଭ୍ୟତାର ଆଦର୍ଶ ।

ଏହି ଉପନ୍ୟାସର ନାୟକ-ଚରିତ୍ରଟି ମଧ୍ୟ ସେ ବାସ୍ତବ ଜୀବନରୁ ଗ୍ରହଣ କରିଛନ୍ତି । ପରବର୍ତ୍ତୀ ସମୟରେ ତାରାଶଙ୍କର ତାଙ୍କର ସ୍ମୃତିକଥାରେ ଏ ବିଷୟରେ ବିସ୍ତୃତ ବର୍ଣ୍ଣନା ଦେଇଛନ୍ତି । ତାଙ୍କ ଗାଆଁର ରେଲ ଷ୍ଟେସନରେ ଏହିପରି ଜଣେ ଡମ ଯୁବକ କୁଲି କାମ କରୁଥିଲା । "କଳା ଆବଲୁସ୍ ଭଳିଆ ରଙ୍ଗ, ଅଳ୍ପ ପଢ଼ିପାରେ, ଷ୍ଟେସନରେ କୁଲିଗିରି କରେ ଓ ରାସ୍ତାଘାଟରେ ମନକୁ ମନ କବି ଗୀତ ଗାଉଥିଲେ । ଦିନେ ସତୀଶକୁ ଦେଖିଲି, ଗୋଟାଏ ନିର୍ଜନ ଆମ୍ବତୋଟାରେ ଆମ୍ବଗଛଗୁଡ଼ିକୁ ଶ୍ରୋତା କରିନେଇ ଗୋଟିଏ ହାତ କାନରେ ଦେଇ ଆଉ ହାତଟି ହଲାଇ ହଲାଇ ସାମାନ୍ୟ ନିଁଘଣ୍ଡ କବିଗୀତ ବୋଲିଯାଉଛି । ଏହି ଚରିତ୍ରଟି ନେଇ ଆରମ୍ଭ କଲି ।"

ଅବଶ୍ୟ, ବାସ୍ତବ ସତ୍ୟ ଓ ସାହିତ୍ୟର ବାସ୍ତବତା ଭିତରେ ପାର୍ଥକ୍ୟ ଅନେକ । ବାସ୍ତବର ଚରିତ୍ରଟିରୁ ଉପାଦାନ ଓ ପ୍ରେରଣା ନେଲେ ବି ଆମେ ଜାଣୁ, ଉପନ୍ୟାସର ନାୟକଟି ଆସ୍ତେ ଆସ୍ତେ ଗଢ଼ିଉଠିଛି ତାହାର ନିଜସ୍ୱ ନିୟମରେ । ବାସ୍ତବରେ ବିଲକୁଲ୍ ଏହି ରକମର ମଣିଷ ହୁଏ କି ହୁଏନା, ତାହା ଖୋଜି ବାହାର କରିବାର ବି ଦରକାର ନାହିଁ; ସେ ତାଳୁରୁ ତଳିପାଯାକେ ବିଶ୍ୱାସଯୋଗ୍ୟ । ବାସ୍ତବତା ଛଡ଼ା ବି ସାହିତ୍ୟରେ ଗୋଟାଏ ଔଚିତ୍ୟବୋଧ ରହିଥାଏ । ସେହି ବିଗ୍ଧରେ ଏ ଚରିତ୍ରଟି ଗୋଟିଏ ସାର୍ଥକ ସୃଷ୍ଟି । ବାସ୍ତବର ଅଭିଜ୍ଞତା ଓ ତୀକ୍ଷଣ ସୃଷ୍ଟି କ୍ଷମତା ଛଡ଼ା ଏହି ଔଚିତ୍ୟବୋଧ ଆସେ ନାହିଁ ।

'କବି' ପ୍ରଥମେ ପ୍ରକାଶିତ ହୋଇଥିଲା ଗୋଟିଏ ଗଳ୍ପଭାବରେ । ସେତେବେଳେ ତହିଁରେ ଝୁମୁର ଗୀତ ଦଳଟିର କଥା ହିଁ ନଥିଲା । ପରେ ଉପନ୍ୟାସରୂପ ଦେବାବେଳେ ଦ୍ୱିତୀୟ ଅଂଶଟି ଆସିଥିଲା । ସେଥିରୁ ମଝିରେ ସାମାନ୍ୟ ଗୋଟିଏ ଯୋଡ଼ ଚିହ୍ନ ଥିଲେ ବି, ବସନ ପରି ଆଶ୍ଚର୍ଯ୍ୟ ଗୋଟିଏ ନାରୀଚରିତ୍ର ଆମର ସାହିତ୍ୟ ଉପହାର ପାଇଛି । ଏହି ନଗନ ଚରିତ୍ରଟି ବି ତାରାଶଙ୍କର ବାସ୍ତବରୁ ଗ୍ରହଣ କରିଛନ୍ତି । ତାଙ୍କ ଗାଁ ଷ୍ଟେସନ ପାଖରେ ଗୋଟିଏ ଝୁମୁରଦଳ ଆସି ଆସ୍ଥାନା ଜମାଇଥିଲା । ତାଙ୍କ ଭିତରେ ବସନ ବୋଲି ଗୋଟିଏ ଝିଅକୁ ଦଇକା ହୁଏ । ଏହିସବୁ ଅଶିକ୍ଷିତ କୁସଂସ୍କାରାଚ୍ଛନ୍ନ ଅସହାୟ ମଣିଷଯାକ ଦଳର କାହାରି ସହିତ ଦେଖା ହେଲେ ତାକୁ ଚିହ୍ନି ପକାଇଯାଆନ୍ତି । ସମାଜସେବା କର୍ମରେ ନିଯୁକ୍ତ ତାରାଶଙ୍କର ସେତେବେଳେ ଗ୍ରାମେ ଗ୍ରାମେ କଲେରାର ଇଞ୍ଜେକ୍ସନ ଦେଉଥାନ୍ତି । ଚିକିତ୍ସା କରିବାକୁ ଆସି ସେ ବସନଙ୍କୁ ଦେଖିଲେ । ପରେ ବି ସେ ଏହି ଗୀତଦଳ ପାଖକୁ ଆସି ଅଭିଜ୍ଞତା ସଞ୍ଚୟ କରିଛନ୍ତି ।

'କବି' ଉପନ୍ୟାସର ସବୁଠୁ ବଡ଼ ସମ୍ପଦ ହେଲା ତାର ଗୀତଗୁଡ଼ିକ । ଏହି ଗୀତଗୁଡ଼ିକ ସଂଗ୍ରହ କରାହୋଇନାହିଁ, ତାରାଶଙ୍କରଙ୍କର ନିଜର ରଚନା । କବିଭାବରେ ତାରାଶଙ୍କରଙ୍କର ବିଶେଷ ପରିଚୟ ନାହିଁ; କିନ୍ତୁ ଏହିପ୍ରକାରର ସଙ୍ଗୀତ ରଚନାରେ ସେ ଅଦ୍ୱିତୀୟ । 'କବି'ର ଗୀତଗୁଡ଼ିକ ଏହାର ଚରିତ୍ର ଓ କାହାଣୀ ସଙ୍ଗେ ଅଙ୍ଗାଙ୍ଗୀଭାବେ ମିଶିଯାଇଛି । ଆନ୍ତରିକ ପ୍ରେରଣା ନହେଲେ ଏପରି ଗୀତ ଲେଖିହୁଏନା । ସ୍ମୃତିକଥାରୁ ଜଣାଯାଏ, ଏହି ଗୀତଗୁଡ଼ିକର ରଚନାର ଇତିହାସ । ଘରେ ତାରାଶଙ୍କରଙ୍କ ସ୍ତ୍ରୀ ଗୁରୁତରଭାବେ ଅସୁସ୍ଥ, ଆଉ ଗୋଟିଏ ଜାଗାରେ କୋଡ଼ରେ ସୁଟକେଶ ରଖି ତାଉପରେ କାଗଜ ଥୋଇ ସେ ଗୀତ ଲେଖିଚାଲିଛନ୍ତି । ଥରେ ଥରେ ମନୋଯୋଗ ଦେଉଛନ୍ତି ରୁଗ୍ଣା ସ୍ତ୍ରୀ-ଆଡ଼େ, ଆଉ ଗୋଟିଏ ଧାଡ଼ି ଲେଖି ଶୁଣାଇଆସୁଛନ୍ତି ତାଙ୍କର ସେତେବେଳକାର ପଡ଼ୋଶୀ, ବିଖ୍ୟାତ ଶିଳ୍ପୀ ଯାମିନୀ ରାୟଙ୍କୁ; ପୁଣି ଫେରିଆସି ପର ଲାଇନ୍‌ଟିରେ ଖୋଜି ବସୁଛନ୍ତି ସୌନ୍ଦର୍ଯ୍ୟ ବନ୍ଦନାର ଭାଷା । ଏହାରି ନାମ ପ୍ରେରଣା । ଅନୁବାଦ ମାଧ୍ୟମରେ ଏହି ଗୀତଗୁଡ଼ିକର ରସ କେତେ ମିଳିବ କେଜାଣି, କାହିଁକିନା ଭଙ୍ଗାଭଙ୍ଗା ଆଞ୍ଚଳିକ କଥାଭାଷା ବ୍ୟବହାରରେହିଁ ତାର ବୈଶିଷ୍ଟ୍ୟ ରହିଛି ।

ପାଠକେ, ଏଥର 'କବି' ପରି ଗୋଟିଏ ବିଶୁଦ୍ଧ ଆବେଗର ଉପନ୍ୟାସ ପଢ଼ିବାକୁ ପ୍ରସ୍ତୁତ ହୁଅନ୍ତୁ । ଭଲପାଇବା ଓ ଦୁଃଖର କଥା ଏଥିରେ ଖୁବ୍ ନିବିଡ଼ଭାବେ କୁହାଯାଇଛି । ତା ଆଗରୁ ଭୂମିକାରେ ଅଧିକ ବାଗାଡ଼ମ୍ବର ହୁଏତ ଅବାନ୍ତର ମନେହେବ ।

ସୁନୀଲ ଗଙ୍ଗୋପାଧ୍ୟାୟ

# ଏକ

ଖାଲି ରୀତିମତ ଗୋଟାଏ ବିସ୍ମୟକର ଘଟଣା ନୁହେଁ, ପୂରାପୂରି ଗୋଟାଏ ସଂଘଟନ । ଚୋର-ଡକେଇତ ବଂଶର ପୁଅ ହଠାତ୍ ହୋଇଗଲା ଜଣେ କବି ।

ଏମିତିକା ନଜିର୍ ଅବଶ୍ୟ ରହିଛି—ରାକ୍ଷସକୁଳରେ ପ୍ରହ୍ଲାଦ; କିନ୍ତୁ ସେ ହେଲା ଭଗବତ୍‌ଲୀଳାର ଅଙ୍ଗ—ଯିଏ ମୂକଙ୍କୁ କରନ୍ତି ବାଚାଳ, ଯାହାଙ୍କ ଇଚ୍ଛାରେ ପଙ୍ଗୁ ଗିରି ଲଙ୍ଘନ କରିପାରେ; ସେହି ପରମାନନ୍ଦ ମାଧବଙ୍କ ଇଚ୍ଛାରେ ଯାଇ ରାକ୍ଷସକୁଳରେ ପ୍ରହ୍ଲାଦର ଜନ୍ମ ସମ୍ଭବପର ହୋଇଥିଲା । ରାମାୟଣର କବି ବାଲ୍ମୀକି ଡକେଇତ ଥିଲେ ଠିକ୍, ତେବେ ସେ ଥିଲେ ବ୍ରାହ୍ମଣସନ୍ତାନ । ସେ ବି ଭଗବତ୍ ଲୀଳା । କିନ୍ତୁ କୁଖ୍ୟାତ ଅପରାଧପ୍ରବଣ ଡମବଂଶଜାତ ସନ୍ତାନର କବିରୂପେ ଆତ୍ମପ୍ରକାଶକୁ ଭଗବତ୍‌ଲୀଳା କୁହାଯାଇପାରେ କି ନା, ସେ ସମ୍ବନ୍ଧରେ କୌଣସି ଶାସ୍ତ୍ରୀୟ ନଜିର ନାହିଁ । କହିବାକୁ ଗଲେ ଶ୍ରୁତି ଅରୁଚି । ସୁତରାଂ ଏଇଟାକୁ ଲୋକମାନେ ଗୋଟିଏ ବିସ୍ମୟ ଭାବରେ ହିଁ ଗ୍ରହଣ କରିନେଲେ ଏବଂ ବିସ୍ମିତ ବି ହେଲେ ।

ଗ୍ରାମର ଭଦ୍ରଲୋକମାନେ ଠିକ୍ କହିଲେ—ଏ ଗୋଟାଏ ବିସ୍ମୟ ! ରୀତିମତ !

ଅଶିକ୍ଷିତ ହରିଜନମାନେ କହିଲେ—ନିତାଇଚରଣ ମାତ୍ କରିଦେଲା ରେ ବାବା !

ଯେଉଁ ବଂଶରେ ନିତାଇଚରଣର ଜନ୍ମ, ସେ ବଂଶଟି ହିନ୍ଦୁସମାଜର ପ୍ରାୟ ପତିତତମ ସ୍ତରର ଅନ୍ତର୍ଗତ ଡମବଂଶ । ତେବେ ସହର ଅଞ୍ଚଳରେ ଡମ କହିଲେ ଠିକ୍ ଯେଉଁ ସ୍ତରକୁ ବୁଝାଏ, ଏମାନେ ସେ ସ୍ତରର ନୁହନ୍ତି । ଏ ଡମମାନେ ବଂଗଳାର ବିଖ୍ୟାତ ଲଠିଆଲ—ପ୍ରାଚୀନକାଳରୁ ହିଁ ବାହୁବଳ ସକାଶେ ଏମାନେ ଇତିହାସବିଖ୍ୟାତ । ଏମାନଙ୍କର ଉପାଧି ହିଁ ହେଲା ବୀରବଂଶୀ । ନବାବୀ ପଲଟଣ ଭିତରେ କୁଆଡ଼େ ଏକଦା ବୀରବଂଶୀମାନେ ବୀରତ୍ୱରେ ବିଖ୍ୟାତ ଥିଲେ । କମ୍ପାନୀ ଅମଳରେ ନବାବଙ୍କ ଆଶ୍ରୟ ହରାଇ ଦୁର୍ଦ୍ଧର୍ଷ ଯୁଦ୍ଧବ୍ୟବସାୟୀମାନେ ପରିଣତ ହେଲେ ଡକେଇତରେ । ପୁଲିସ୍‌ବିଭାଗର ଇତିହାସ ଡମବଂଶର କୀର୍ତ୍ତିକଳାପରେ ପରିପୂର୍ଣ୍ଣ । ଏହି ଗ୍ରାମର ଡମ ପରିବାରମାନଙ୍କର ପ୍ରତ୍ୟେକଟିର ରକ୍ତେ ରକ୍ତେ ବର୍ତ୍ତମାନ ସୁଦ୍ଧା ସେହି ଧାରା ପ୍ରବାହିତ । ପୁଲିସ କଠିନ ବନ୍ଧ ଦେଇଛି ସେହି ପ୍ରବାହମୁଖରେ—ଲୁହାର ବାଡ଼ ଦେଇଛି । ହାତକଡ଼ି, ଲୁହାର ଛଡ଼ଦିଆ ଫାଟକ, ଗୋଡ଼ର ବେଡ଼ିର ଲୁହା ଯେପରି ପ୍ରତ୍ୟକ୍ଷ, ଫୌଜଦାରୀ ଦଣ୍ଡବିଧିର ଆଇନ୍ ବି ସେହିପରି ଲୁହାର ଆଇନ୍ । ତଥାପି ବାଛି ବାଛି ଛିଦ୍ରପଥ ଦେଇ ଅଥବା ଅନ୍ତଃସଲିଳା ଫଲ୍‌ଗୁପରି ନିଃଶବ୍ଦରେ ଅଧୀର ଗତିରେ ଆଜି ବି ସେ ଧାରାଟି ବହିଚାଲି-

ଅଛି । ନିତାଇର ମାମୁ ଗୌର ବୀରବଂଶୀ—ଅଥବା ଗୌର ଡମ ଏ ଅଞ୍ଚଳର ବିଖ୍ୟାତ ଡକେଇତ । ଏହି ବର୍ଷେ ଖଣ୍ଡେ ହବ ସେ ପାଞ୍ଚ ବର୍ଷ କାଳ 'କଳାପାଣି' ଅର୍ଥାତ୍ ଆଣ୍ଡାମାନ୍‌ରେ ରହି ଦଣ୍ଡଭୋଗ କରି ଘରକୁ ଫେରିଅଛି ।

ନିତାଇର ଅଜା, ଗୌରର ବାପ ଶମ୍ଭୁ ବୀରବଂଶୀ ଆଣ୍ଡାମାନରେ ଜୀବନ ବିତାଇଛି ।

ନିତାଇର ବାପ ଥିଲା ସିନ୍ଧିକଟା ଚୋର । ପିତାମହ ଥିଲା ଠେଙ୍ଗୁଆଳ । ତା ନିଜ ଜୋଇଁକି କୁଆଡ଼େ ସେ ରାତି ଅନ୍ଧାରରେ ପଥିକ ଭାବି ହତ୍ୟା କରିଥିଲା । ସେହି ଜୋଇଁମରା ପଡ଼ିଆଟା ଏଠୁ କୋଶେ ହବ ଦୂର ।

ଏମାନଙ୍କର ଊର୍ଦ୍ଧ୍ୱତନ ପୁରୁଷଙ୍କ ଇତିହାସ ପୁଲିସ୍-ରିପୋର୍ଟରେ ରହିଛି—ସେ ଗୋଟାଏ ଭୟାନକ ରକ୍ତାକ୍ତ ଇତିହାସ ।

ଏହି ନିତାଇଚରଣ ସେହି ବଂଶର ପୁଅ । ଖୁଣୀର ଦୌହିତ୍ର, ଡକେଇତର ଭାଗିନେୟ, ଠେଙ୍ଗୁଆଳର ପୌତ୍ର, ସିନ୍ଧିକଟା ଚୋରର ପୁତ୍ର—ନିତାଇର ଚେହେରାରେ ବଂଶର ଚିହ୍ନ ସ୍ପଷ୍ଟ ଓ ପ୍ରତ୍ୟକ୍ଷ । ଦେହଟା କଠିନ ପେଶୀ; ଦୀର୍ଘ, ସବଳ, ରଙ୍ଗଟି କଳା—ରାତିର ଅନ୍ଧକାର ପରି । କେବଳ ବଡ଼ ବଡ଼ ଆଖି ଦୁଇଟିର ଦୃଷ୍ଟି ତାର ବଡ଼ ବିନୀତ ଓ ସେ ଦୃଷ୍ଟି ଭିତରେ ଗୋଟିଏ ସକରୁଣ ବିନୟ ରହିଛି । ସେହି ନିତାଇ ଅକସ୍ମାତ୍ କବିରୂପେ ଆତ୍ମପ୍ରକାଶ କଲା । ଲୋକମାନେ ଆଶ୍ଚର୍ଯ୍ୟ ହୋଇ ତା ଆଡ଼େ ଫେରି ଚାହିଁଲେ—ନିତାଇ ଗୌରବର ଲାଜରେ ଅବନତ କରି ଯୋଡ଼ହାତ ହୋଇ ସକରୁଣ ନୟନରେ ମାଟିକି ଚାହିଁରହିଲା । ତହିଁ ସଙ୍ଗେ ଓଠରେ ଟିକେ ଲଜ୍ଜିତ ହସ ।

ଘଟଣାଟା ଏଇ—

ଏହି ଗ୍ରାମର ପ୍ରାଚୀନ ନାମ ଅଟ୍ଟହାସ—ଏକାବନ ମହାପୀଠରୁ ଅନ୍ୟତମ ମହାପୀଠ । ମହାପୀଠର ଅଧିଷ୍ଠାତ୍ରୀ ଦେବୀଙ୍କ ନାମ ମହାଦେବୀ ଚାମୁଣ୍ଡା । ମାଘ ପୂର୍ଣ୍ଣିମାରେ ଚାମୁଣ୍ଡାଙ୍କ ପୂଜା ଗୋଟିଏ ବିଶିଷ୍ଟ ପର୍ବ । ଏହି ପର୍ବ ଉପଲକ୍ଷେ ଏଠାରେ ମେଳଣ ବସେ । ଏହି ମେଳଣରେ ଚିରକାଳ ବେଶ୍ ଜମଜମାଟିଆ କବିଗାନ*ର ପାଲି ହୁଏ । ନୋଟନଦାସ

* ଓଡ଼ିଶାର ପାଲି ପରି ବଂଗଳାରେ କବିଗାନ ପ୍ରଚଳିତ ଅଛି । ଏଥିରେ ଜଣେ କବି ବା ଗାଆଣ (କବିୟାଲ), ଜଣେ ପାଳିଆ, ଜଣେ ଢୋଲିଆ ଓ ଜଣେ କଂସାଲ (କଂସାର ଘଣ୍ଟ) ବଜାଇବାକୁ ଥାଏ । ଓଡ଼ିଶାର ଯୋଡ଼ିପାଲି ପରି କବିଗାନରେ ମଧ୍ୟ ଆଶୁ-କବିତାର ପ୍ରତିଯୋଗିତା ହୋଇଥାଏ । 'କବିଗାନ' ଭିତରେ କବିତାମାନ ଅଧିକତଃ ସ୍ୱରଚିତ ।

ଓ ମହାଦେବ ପାଲ୍—ଏ ଦୁହେଁ ଏ ଅଞ୍ଚଳର ଖ୍ୟାତନାମା କବିସ୍ୱାଲ । ଏମାନଙ୍କର ଗାନ ଏ ମେଲାରେ ବନ୍ଧା ହୋଇଥିବ । ଏଥରକ ସେହି ଆଶାରେ ଚାରଟା ବେଳୁଁ ଲୋକଭିଡ଼ ଜମିବାକୁ ଆରମ୍ଭ କରି ସନ୍ଧ୍ୟାବେଳକୁ ବେଶ୍ ଗୋଟାଏ ଜନତାରେ ପରିଣତ ହୋଇ-ଥିଲା—ପ୍ରାୟ ହଜାର ଦେଢ଼ ହଜାର ସରିକି ଲୋକଙ୍କର ଗୋଟିଏ ସମାବେଶ ହୋଇଥିଲା ।

ସମାରୋହ କରି ସଭାର ଆୟୋଜନ ହୋଇଛି । ସନ୍ଧ୍ୟାବେଳେ ଚାରିପଟେ ଚାରିଟା ପେଟ୍ରୋମ୍ୟାକ୍ସ ଆଲୁଅ ଲଗାହେଲା । କବିସ୍ୱାଲଙ୍କ ଭିତରୁ ମହାଦେବ ପାଲର ଦଳ ଆସି ସଭାରେ ବସିଲେ; କିନ୍ତୁ ନୋଟନଦାସର ସନ୍ଧାନ ମିଳିଲା ନାହିଁ । ଯେଉଁ ଲୋକଟି ନୋଟନକୁ ଡାକିବାକୁ ଯାଇଥିଲା, ସେ ଫେରିଆସି କହିଲା—ବସାରେ କେହି କୋଉଠି ନାହାନ୍ତି ଆଜ୍ଞା, ଲୋକ ନାହିଁ କି ବାକ ନାହିଁ କି ଜିନିଷପତ୍ରର କିଛି ନାହିଁ; ଘରଆଡ଼ ଖାଁ ଖାଁ କରୁଛି । ଖାଲି ସତରଞ୍ଜିଟା ପଡ଼ିଛି, ସେଇ ଯୋଉଟା ଆମେ ଦେଇଥିଲୁ ।

ଶୁଣିକରି ତ ମେଳାର କର୍ତ୍ତୃପକ୍ଷ ସ୍ତମ୍ଭିତ ଓ କିଂକର୍ତ୍ତବ୍ୟବିମୂଢ଼ ହୋଇଗଲେ । ଲୋକମାନେ ହୋ-ହା କରି ଗୋଳମାଳ ଆରମ୍ଭ କରିଦେଲେ ।

କାମଟା ଯେ ଘୋର ଅନ୍ୟାୟ ହୋଇଛି, ସେଥିରେ ସନ୍ଦେହ ନାହିଁ । ତଥାପି କହିବାକୁ ହବ ଯେ ନୋଟନଦାସର ଦୋଷ ନାହିଁ । ଗଲା ଥରଠାରୁ ହିଁ ତାର ଗୀତର ପାଉଣା ବାକି ଥିଲା । ଗଲା ସନ ମେଲାର ତହବିଲରେ ଟଙ୍କାର ନିଅଣ୍ଟ ପଡ଼ିଥିଲା; ସେଥିଲାଗି ଗ୍ରାମ୍ୟଣ୍ଡାର ମହନ୍ତ ସେମାନଙ୍କ ମୁଣ୍ଡରେ ବେଲପତ୍ରୀ ଦେଇ ଆଶୀର୍ବାଦ କରି କହିଥିଲେ—ଆଗତ ବର୍ଷକୁ । ବାବାମାନେ, ଆଗତ ବର୍ଷକୁ । ଆଗତ ବର୍ଷକୁ ଗୀତ ହବା ଆଗରୁଇ ତମମାନଙ୍କର ଦୁଇ ବର୍ଷର ପାଉଣା ଶୁଝାଇ ଦିଆହବ ।

ନୋଟନ ଓ ମହାଦେବ ବହୁ ଦିନରୁ ଏହି ମେଲାରେ ଗାଆନ୍ତି । ଯେବେ ଏ ମେଲାର ସମୃଦ୍ଧି ଥିଲା, ସେମାନେ ପାଇଛନ୍ତି ବି ଯଥେଷ୍ଟ; ସେହି କୃତଜ୍ଞତା ବା ଚକ୍ଷୁଲଜ୍ଜାରୁ ହିଁ ଗତଥର ସେମାନେ କିଛି କହିପାରିନାହାନ୍ତି । କିନ୍ତୁ ଏଥର ଆସି ନୋଟନ ଯେତେ-ବେଳେ ମହନ୍ତଙ୍କୁ ପ୍ରଣାମ କରି ହାତ ପାଦ ଛୁଡ଼ାହେଲା, ସେତେବେଳେ ମଧ୍ୟ ସେ ଟଙ୍କା ଜାଗାରେ ତା ହାତରେ ଦେଲେ ତାଜା ଟହଟହ ମନ୍ଦାର ଫୁଲଟିଏ ଏବଂ ଆଶୀର୍ବାଦ କଲେ—ବୁଢ଼ାଟିଏ ହେଇଥା, ମଙ୍ଗଳ ହେଉ ।

ଏତକ କହି ସେ ଅନ୍ୟ ପ୍ରସଙ୍ଗରେ ମନୋନିବେଶ କଲେ । ଲୋକବାକ ଅନେକ ସେଠାରେ ବସିଥିଲେ—ଅଧିକାଂଶ ସେମାନଙ୍କ ମଧ୍ୟରୁ ଗାଆଁର ଭଦ୍ରଲୋକ, ସେହିମାନଙ୍କ ସଙ୍ଗରେ ହିଁ ଆଗରୁ ପ୍ରସଙ୍ଗଟି ଚାଲୁଥିଲା । ନୋଟନ ଅପେକ୍ଷା କରି ବସିରହିଲା ପ୍ରସଙ୍ଗଟି

ଶେଷ ହେବାଯାକେ । ସେହି ବୈଠକରେ ଆଲୋଚନା ହେଉଥିଲା—ମେଲାର ଏବଂ ମା' ଚାମୁଣ୍ଡାଙ୍କ ଆସ୍ଥାନର ଆୟବ୍ୟୟ ପେଇଁ । ମହାନ୍ତ ଆୟ ଏବଂ ବ୍ୟୟର ହିସାବ ସବିସ୍ତାରେ ବର୍ଣ୍ଣନ କରି ସିଦ୍ଧାନ୍ତ କରିଦେଲେ ଯେ, ମା ଚାମୁଣ୍ଡାର ହ୍ୟାଣ୍ଡନୋଟ୍ ନ କାଟିଲେ ଆଉ ଉପାୟ ନାହିଁ । ପରିଶେଷରେ ମୃଦୁ ହାସ୍ୟ କରି କହିଲେ—ଧିଅନା, ତମେ କେହି ଟଙ୍କା ଉଧାର ଦିଅନା ବାବା ! ଦେଖ, ଏମିତିକା ଖାତକ ଆଉ ମିଳିବେନି । ଏ ଖାତକର କୁବେର ଖଜାଞ୍ଚି । ଧର୍ମର କାଗଜରେ କାମନାର ସ୍ୟାହିରେ ହ୍ୟାଣ୍ଡନୋଟ ଲେଖିନେଇ ଅର୍ଥ ଦେଲେ, ସେପାରିରେ ମୋକ୍ଷସୁଧ ସମେତ ପରମାର୍ଥ କଡ଼ାଗଣ୍ଡା ବୁଝିନେବ । ଏତିକି କହି ହା-ହା-କରି ସେ ହସିଉଠିଲେ । ସଙ୍ଗେ ସଙ୍ଗେ ସମସ୍ତେ ହସିଲେ । ନୋଟନଦାସ ବି ହସିଲା । ତେବେ ସେ ବୁଦ୍ଧିମାନ । ସୁତରାଂ ତା ପରେ ପରେ ସେ ବୈଠକରୁ ବାହାରି ଆସିଲା ।

ନୋଟନ ବସାରେ ସେତେବେଳକୁ ନୂଆ ବାୟନାଟିଏ ଆସି ତାର ଅପେକ୍ଷା କରୁଥିଲା । ଏଠୁ ଦଶ କୋଶ ଦୂରରେ ଗୋଟିଏ ମେଳା ବସିବ, ସେଠାରେ ଏଥରକ ପ୍ରବଳ ସମାରୋହ । ସେମାନେ କବିଗାନର ସକାରେ ନୋଟନକୁ ପାଇବାଲାଗି ଲୋକ ପଠାଇଛନ୍ତି । ଅନ୍ତତଃ ଏଠିକାର ମେଲାରେ ଗାଉଣା ଶେଷ କରି ମଧ୍ୟ ଯିବାକୁ ହେବ । କିଛି ନ ହେଲେ ବି ଯଦି କୌଣସିମତେ ଶେଷ ଦିନକର ଗାଉଣାଟା ନଗାଇ ଟିକେ ଆଗରୁ ଯାଇପାରେ, ତାହେଲେ ତ କଥା ହିଁ ନାହିଁ । ସେପରି ସ୍ଥଳେ ଦକ୍ଷିଣାର କାଞ୍ଚନ ପରିମାଣ ମଧ୍ୟ ଓଜନରେ ଗରୁଆ ହେବ ।

ନୋଟନ ଯୋଡ଼ହାତ କପାଳରେ ଲଗାଇ କହିଲା—ଜୟ ମା ଚାମୁଣ୍ଡେ । ତାହା-ପରେ ସେ ତାହାର ପାଳଆକୁ କହିଲା—ବୋତଲଟା ଦେ ତ ! ବୋତଲ ନ ହେଲେ ନୋଟନର ଚଳେନା, ବୋତଲରୁ ହିଁ ସିଧା କିଛିଟା ପାନୀୟ ପାନକରି ନୋଟନ ଦିହ-ହାତ ଝାଡ଼ି ବସିଲା ।

ଲୋକଟି ନୋଟନ ମୁହଁକୁ ଚାହିଁ ବସିଥିଲା, ସେ କହିଲା—ତାହେଲେ ଓସ୍ତାଦ୍, ମତେ ଗୋଟିଏ କଥା କହିଦେଉନ୍ତୁ । ମତେ ପୁଣି ଏଇ ଟ୍ରେନ୍‌ରେ ହିଁ ଫେରିବାକୁ ହବ । ଟ୍ରେନ୍‌ବେଳ ତ ହେଲା ଆସି ।

ନୋଟନ ହସି କହିଲା—ମୁଁ ଯେବେ କାଲିଠଉଁ ଗାଉଣା କରେ ?

ଲୋକଟା ବିସ୍ମିତ ଓ ଚିନ୍ତିତ ହୋଇ କହିଲା—ଆଜ୍ଞା, ତାହେଲେ ଏଠା କଥା କଣ ହବ ?

ନୋଟନ କହିଲା—ନଜେ ଶୋଇପାରୁଚୁ ସେତିକି ଭଲ, ଆଉ ଶଙ୍କର କଥା ତତେ ଭାବିବାକୁ ହବନି, ହେଲା ? ମୁଁ କିନ୍ତୁ ଟଙ୍କାଟା କିଛି ବେଶୀ ନେବ !

ଲୋକଟା ଉତ୍ସାହର ସହିତ କହିଲା—ଆଚ୍ଛା ହଉ । ତାହେଲେ, କେତେବେଳେ ଯିବେ ଆପଣ ?

—ଆଜି । ଏଇକ୍ଷଣି । ତୋର ସାଙ୍ଗରେ । ଏଇ ଟ୍ରେନ୍‌ରେ ।

ଲୋକଟା ଉତ୍ସାହିତ ହୋଇଉଠିଲା ।

—ଦକ୍ଷିଣାଟା କିନ୍ତୁ ଶହେକ ପନ୍ଦର ଟଙ୍କା ।

—ଆଜ୍ଞା, ସେତିକି ଦେବି । ଲୋକଟାର ଉତ୍ସାହର ଆଉ ସୀମା ରହିଲାନି '

—କିନ୍ତୁ ଆଗେ ଟଙ୍କାଟା ଦବାକୁ ହବ ।

ତତ୍‌କ୍ଷଣାତ୍ ଲୋକଟି ଦଶଟଙ୍କିଆ ନୋଟ୍‌ଟିଏ ବାହାର କରି ଦେଲା । କହିଲା—ଏଇ ବଇନା ଦେଲି । ଆଉ ସେଠିକା ମାଟିରେ ଗୋଡ଼ ପଡ଼ିଲେଇ ବାକି ଟଙ୍କା କଡ଼ାକ୍ରାନ୍ତି ହିସାବ କରି ବୁଝାଇଦେବି ।

ନୋଟ ପେଣ୍ଡିକ ଅଣ୍ଟାରେ ଖୋସି ନୋଟନ ଉଠିପଡ଼ିଲା । ଢୋଲିଆ ଓ ପାଳିଆ-ମାନଙ୍କୁ କହିଲା—ଉଠ ! ଲୋକଟାକୁ କହିଲା—ଟଙ୍କାଟା ଆଗ ପାଇଲେ ଯାଇ ବସାରେ ପଶିବି । ତା ପରେ ସନ୍ଧ୍ୟାର ଅନ୍ଧାର-ଅନ୍ଧାରରେ ପଡ଼ିଆବାଟେ ଷ୍ଟେସନ ଆସି ମୁହଁଟି ତାଙ୍କି ଟ୍ରେନ୍‌ରେ ଉଠି ବସିଅଛୁ ଏବଂ ସେ ଟ୍ରେନ୍ ବି ଚାଲିଯାଇଛୁ । ଘଟଣାଟିର ଏଇ ଶେଷ ।

ନୋଟନ ପଳାଇଛୁ ଶୁଣି ଅନ୍ୟ ପଟର କବି ମହାଦେବ ସଭାରେ ବସି ମନେ ମନେ ଅବଶୋଷ କରୁଥିଲା । ଆଜିଯାକେ ନୋଟନ ସଙ୍ଗରେ ପାଲାରେ ସେ କେବେ ହାରିନାହିଁ; କିନ୍ତୁ ଆଜି ସେ ସବାନ୍ତଃକରଣେ ନୀରବରେ ପରାଜୟ ସ୍ୱୀକାର କଲା—ସଙ୍ଗେ ସଙ୍ଗେ ପୁଣି ନୋଟନକୁ ବେଇମାନ୍ ବୋଲି ଗାଳି ବି ଦେଲା । ତାକୁ କହିଦେଇଥିଲେ କିଣ ସିଏ ବି ଯାଇନଥାନ୍ତା କି ?

ସଭାରେ ଜନତା କ୍ରମଶଃ ଧୈର୍ଯ୍ୟ ହରାଉଥିଲା, ସମ୍ପାଦକଟା ସେଯାକେ ସେମାନଙ୍କ ପାଖରେ କିଛି ପରିଷ୍କାର ହୋଇନାହିଁ । ଅଧୀର ଶ୍ରୋତାଦଳ କଳରବରେ ମାଛହାଟ ବସାଇ ସାରିଲେଣି । ଅନ୍ୟତ୍ର ଗୋଟେ ଜାଗାରେ ମେଳାର କର୍ତ୍ତୃପକ୍ଷ ଏବଂ ଗ୍ରାମ୍ୟ ଜମିଦାରଗଣ ନୋଟନ ପ୍ରସଙ୍ଗ ଆଲୋଚନା କରୁଥିଲେ । ମହନ୍ତ ଚିନ୍ତିତଭାବରେ ଦାଢ଼ିରେ ହାତ ବୁଲାଉଛନ୍ତି । ବେଳେ ବେଳେ କହୁଛନ୍ତି—ତାରା-ତାରା ।

ନୋଟନ ପଳାଇଛୁ, କବିଗାନ ହେବ ନାହିଁ—ଏଇ କଥାଟି ଥରେ ଉଚ୍ଚାରିତ ହେଲେ ବାସ୍, ସାଙ୍ଗେ ସାଙ୍ଗେ ଏହି ଦର୍ଶକଦଳ ବନ୍ଧଭଙ୍ଗା ଜଳାଶୟର ଜଳପରି ଚାରିଆଡ଼େ ଚିଟକି ପଡ଼ିବେ । ଜଳଶୂନ୍ୟ ପୁଷ୍କରଣୀର ଓଦା ପଙ୍କପରି ଜନଶୂନ୍ୟ ମେଳାଟାରେ

ରହିବ ଖାଲି ଗୋଡ଼ର ଦାଗ ଓ ଧୂଳି ।

ସିଆଡ଼େ ଆଉ ଦଳେ ଗ୍ରାମ୍ୟ ଜମିଦାର ଏକବାରେ କୁଣ୍ଡାରେ ନିଆଁ ପରି ଜଳି-ଉଠିଲେଣି ହୁକୁ କରି । ଏଇଲାଗେ ପାଇକ ଲଠିଆଳ ପଠେଇ ବେକରେ ଗାମୁଛା ବାନ୍ଧି ନୋଟନକୁ ଧରିଆଣି କୋଡ଼ା ମାରି ପିଠିରୁ ଛାଲି ଉଠାଇବାର ବନ୍ଦୋବସ୍ତଠାରୁ ଆରମ୍ଭ କରି, କ୍ଷତିପୂରଣ ଲାଗି ମକଦ୍ଦମା କରି ହତଭାଗାର ଘରଡ଼ିହ ଉଚ୍ଛନ୍ନ କରିବାର ବନ୍ଦୋବସ୍ତ ପର୍ଯ୍ୟନ୍ତ ନାନା ଉତ୍ତେଜିତ କଳ୍ପନାରେ ତୃଣଦାହୀ ବହ୍ନି ପରି ହିଁ ସେମାନେ ଲେଲିହାନ ହୋଇ ଜଳୁଅଛନ୍ତି । ଏହି ଜମିଦାରମାନଙ୍କ ମଧ୍ୟରୁ ଅନ୍ୟତମ, ଗଙ୍ଗେଇସେବୀ ଭୂତନାଥ —ନାମରେ ଭୂତନାଥ ହେଲେ ମଧ ଦକ୍ଷଯଜ୍ଞବିନାଶୀ ବିରୂପାକ୍ଷଙ୍କ ପରି ହିଁ ସେ ଦୁର୍ମଦ ଓ ଦୁର୍ଦ୍ଦାନ୍ତ—ହଠାତ୍ ପାଇକଗୁଡ଼ା ଭିଡ଼ ଡେଇଁପଡ଼ିଲା । କହିଲା—ଦଜଣ ଲୋକ । କହି ଦୁଇଟି ଆଙ୍ଗୁଠି ଟେକି ଦେଖାଇଲା । କିଛିବେଳ ରହିଯାଇ କହିଲା—ଦୋ ଠୋ ଆଦମୀ ହମାରା ସାଥ୍ ଦେଓ, ହାମ୍ ଅଭି ଯାଏଗା । ଦଶ କୋଶ ରାସ୍ତା । ଆରେ ଦଶ କୋଶ ତ ଦୁଲ୍‌କୀ ମେ ଚଲି ଯାଏଗା । ଏତକ କହି ସେ ଯେପରି ଦୁଲକୀ ଚାଲ୍‌ରେ ଚାଲିବାଲାଗି ଝୁଲିବାକୁ ଆରମ୍ଭ କଲା ।

ଠିକ୍ ଏତିକବେଳେ କିଏ ଜଣେ କଥାଟା ଜାଣିପାରି ସଭାର ଗୋଟିଏ କୋଣରୁ ପାଟିକରି ଡାକିଲା—ଉଠିଆରେ ରାଖହରି, ଉଠିଆ ।

—କାହିଁକି ରେ ? ଉଠିଗଲେ ଆଉ ଜାଗା ରହିବନି ।

—ଜାଗା ନେଇ କଣ ଧୋଇ ଖାଇବୁ ? ଉଠିଆ—ଘରକୁ ଯିବା, ଯାଇ ଭାତ ଖାଇବା । ଆରେ ନୋଟନଦାସ ଭାଗମ୍ ଭାଗ୍, ପଳେଇଛି । କବିଗାୟନ ହବ ନେଇଁ ।

—ନା । ମିଛ କଥା ।

—ତୋ ରାଣ ଅଛି ରେ । ସତ ।

ରାଖହରି ରସିକ ବ୍ୟକ୍ତି । ସେ ସଙ୍ଗେ ସଙ୍ଗେ କହିଉଠିଲା—ବୋଲ ହରି—! ସମଗ୍ର ଜନତା ନିମ୍ନାଭିମୁଖୀ ଆଲୋଡ଼ିତ ଜଳରାଶିର କଲ୍ଲୋଳପରି କୌତୁକରେ ଉଚ୍ଛ୍ୱସିତ ହୋଇ ଧ୍ୱନି କରିଉଠିଲା--ହରି ବୋଲ ! * ଅର୍ଥାତ୍ ମେଲାଟିର ଶବଯାତ୍ରା ଘୋଷଣା କରିଦେଲା । ସଙ୍ଗେ ସଙ୍ଗେ ତୃଣଦାହୀ ବହ୍ନି ଯେପରି ଘରେ ଲାଗିଗଲା । ଜମିଦାରବର୍ଗ ଜନତା ଉପରେ ହିଁ କ୍ଷିପ୍ତ ହୋଇଉଠିଲେ ।

—କିଏ ? କିଏ ? କିଏ ରେ ଶଳା ?

—ଧର ତ ଶଳାକୁ, ଧର ତ । ହାରାମଜାଦା ପାଜି, ଧର ଶଳାକୁ !

---

* ଏହାହିଁ ବଙ୍ଗଳାରେ ଶବଯାତ୍ରାର ଧ୍ୱନି ।

ଭୂତନାଥ ବ୍ୟାଘ୍ର-ବିକ୍ରମରେ ଭୁଲପଡ଼ି ରାଖହରି ବଦଳରେ ଯାହାକୁ ସାମନାରେ ପାଇଲା, ତାହାରି ବାଳରୁ ମୁଠାଏ ଧରି ହୁଙ୍କାର ଦେଇ ଉଠିଲା—ଚୁପ୍ ରହୋ ସାଲା ।

ଅନ୍ୟ କେହି ଜଣେ ତାକୁ ଶାନ୍ତ କଲେ—ହାଁ—ହାଁ—ହାଁ ! କଣ କରୁଚ ଭୂତନାଥ, ଛାଡ଼, ଛାଡ଼ିଦିଅ । ସେ ରାଖହରି ନୁହେଁ !

ଭୂତନାଥ ତାକୁ ଛାଡ଼ିଦେଲା ସିନା; କିନ୍ତୁ ବୀରବିକ୍ରମରେ ଘୋଷଣା କରିଦେଲା—ଖବର୍—ଦା—ର ।

ଜଣେ ବିବେକୀ ବ୍ୟକ୍ତି କହିଲେ—ମେଳା ମହୋତ୍ସବରେ ଇମିତି କରିଥାଏ ମଣିଷ । ଅଷ୍ଟାତାମସା ଘେନି ତ ମେଳା । ଭୋଲା ମୟୁରା * କବିୟାଲ—ଜାଡ଼ା ଗାଆଁରେ କବି-ଗାଉଣା ଗାଉଁ ଗାଉଁ ଜମିଦାରଙ୍କ ମୁହଁ ସାମନାରେ କହିଥିଲା—

"କମିତି କରେ ତୁ କହିଲୁ ଜଗ., ଜାଡ଼ା ଗୋଲୋକ ବୃନ୍ଦାବନ,
ଯୋଉଠି ବାହ୍ମଣ ରଜା ଚଷା ପରଜା, ଚାରିଆଡ଼ରେ ବାଉଁଶବଣ !
କାହିଁ ରେ ତୋ ଶ୍ୟାମକୁଣ୍ଡ, କାହିଁ ରେ ତୋର ରାଧାକୁଣ୍ଡ—
ଆଗରେ ଅଛି ମୂଳାକୁଣ୍ଡ, କର ଯାଇ ମୂଳା ଦରଶନ ।"

ସେଥିରେ କି ବାବୁମାନେ ରାଗ କରି ନଥିଲେ, ବରଂ ଖୁସି ହୋଇଥିଲେ ।

ଭୂତନାଥ ଏତେ କଥା ବୁଝେନା, ସେ ବକ୍ତାକୁ ଗୋଟିଏ କଥାରେ ନାକଚ କରିଦେଲା—ଯା ଯା ଯାଃ । କାହା ମର୍ଦ୍ଦେ କିଏ, କାହିଁ ରାଣୀ, କାହିଁ ଚନ୍ଦରକାଣୀ ।

—ଆରେ, ଚନ୍ଦରକାଣୀ ହେଲେ ବି ତ ସେଇ ମାଇକିନିଆ ଟିଏ କି ନାହିଁ ? ରାଗିଲେ ଚଳିବ କି ? ଦୁଇ ତିନି ମାଇଲ ଦୂରରୁ ସବୁ ବିଟିଆ ସଜେଇ ଆସିଚନ୍ତି କବି-ଗାଉଣା ଶୁଣିବେ ବୋଲି । ଏଇଲା ଶୁଣୁଚନ୍ତି—'କବିୟାଲ ଭାଗମ୍ ଭାଗ୍', ତାହେଲେ ଟିକିଏ ଟାପରି କରି ହରିଧ୍ୱନି ଦେବେ ନାହିଁ ? ରାଗନା ।

ମହାନ୍ତ ବର୍ତ୍ତମାନ ମୋହାନ୍ତ ହୋଇଅଛନ୍ତି ସିନା; କିନ୍ତୁ ଦିନେ ସେ ଜଣେ ପକ୍କା ଜାରପଟ୍ଦାର ଅର୍ଥାତ୍ ଜମିଦାର-ସିରସ୍ତାର କୁଟିବୁଦ୍ଧି ନାଏବ ଥିଲେ । ଗଞ୍ଜେଇ ସେ ଚିରକାଳ ଖାଆନ୍ତି । ସେ ଏତେବେଳଯାକେ ଚୁପ୍‌ଚାପ କବିଗାନ କଥା ଟାଇ ଭାବୁଥିଲେ । ସେ ହଠାତ୍ କହିଉଠିଲେ—ଆଚ୍ଛା, ଆଚ୍ଛା, କବିଗାନ ହିଁ ହବ । ଚନ୍ଦ୍ରା କଣ ସେଥିକି ? ଚନ୍ଦ୍ରାମଣି ନିଜେ ଯୋଉ ପାଗଳୀ ମାଆର ଦରବାରରେ ବନ୍ଧା, ତାର ପୁଣି ଚନ୍ଦର

---

* ବଙ୍ଗଳାର ବିଖ୍ୟାତ କବିୟାଲ ଏବଂ ଆଣ୍ଟୋନି ଫିରିଙ୍ଗି କବିୟାଲଙ୍କର ସମସାମୟିକ ।

ଯାଉନା ? କହି ହା-ହା କରି ହସିଉଠିଲେ । ହୋଇଛି ହୋଇଛି, ଚନ୍ଦର ସନ୍ଧାନ ମିଳିଛି ।

କବିଗାନ ଶାସ୍ତ୍ର କି ନା—ସେ ପ୍ରଶ୍ନ ସେତେବେଳେ କାହାରି ମନରେ ଉଠିବାର କଥା ବି ନୁହେଁ, ସମୟ ବି ନୁହେଁ । ସୁତରାଂ ସେ ପ୍ରଶ୍ନ ନକରି ସମସ୍ତେ ନିସ୍ପୃହ ଦୃଷ୍ଟିରେ ମହାନ୍ତଙ୍କ ମୁହଁକୁ ଚାହିଁଲେ ।

ମହନ୍ତ କହିଲେ—ଡାକ ମହାଦେବ ଆଉ ତାର ପାଳିଆଙ୍କୁ । ଅତଃପର ମୁଣ୍ଡ ହଲାଇ ହଲାଇ କହିଲେ—ସେଠିଆ ହେବ—ଗୁରୁ-ଶିଷ୍ୟଙ୍କର ହିଁ ମୁକ୍ତି ହେଉ । ରାମ-ରାବଣଙ୍କ ଯୁଦ୍ଧଠାରୁ ଦ୍ରୋଣ-ଅର୍ଜୁନଙ୍କ ଯୁଦ୍ଧ କିଛି କମ୍ ନୁହେଁ । ରାମାୟଣ ସପ୍ତକାଣ୍ଡ, ମହାଭାରତ ହେଲା ଅଷ୍ଟାଦଶ ପର୍ବ ।

ଗଣ୍ଡଗୋଳ ଉଠିଲା—ମହାଦେବ ! ମହାଦେବ ! ଆହେ କବିୟାଲା ! ହେ ଓସ୍ତାଦ୍‌ଜୀ, ଶୁଣ ଶୁଣ !

## ଦୁଇ

ନିହାତ ବାଧ୍ୟ ହୋଇ ମହାଦେବ ପ୍ରସ୍ତାବଟାରେ ସମ୍ମତ ହେଲା ।

ମହନ୍ତ ସୁଦୁର୍ଲଭ ଆଶୀର୍ବାଦ କରି ତାକୁ କଳ୍ପତରୁତଳେ ବସାଇଦେଲେ ଏବଂ ଟୁରକରେ ପ୍ରମାଦ ଜଣାଇଲା । ଅତଃପର ସମ୍ମତ ନ ହୋଇ ଉପାୟ ଥିଲା କି ! କିନ୍ତୁ ଆଉ ଜଣେ ଢୋଲିଆ ଓ ପାଳିଆ ଲୋଡ଼ା । ଠିକ୍ ଏତିକିବେଳେ ନିତାଇଚରଣର ଆବିର୍ଭାବ । ସେ କରଯୋଡ଼ି ପରମ ବିନୟୀଭାବରେ, ଶୁଦ୍ଧ ଭାଷାରେ ନିବେଦନ କଲା—ପ୍ରଭୁ, ଅଧୀନର ଗୋଟିଏ ନିବେଦନ ରହିଅଛି ଆପଣଙ୍କର ଶ୍ରୀଚରଣରେ ।

ଅନ୍ୟ କେହି କିଛି କହିବା ଆଗରୁ ମହାଦେବ କବିୱାଲା କହିଉଠିଲା—ଏଇ ତ, ଏଇ ତ ଆମ ନିତାଇଚରଣ ଏଠି ଅଛି, ଆଉ ଭାବନା କଣ ତେବେ ? ନିତାଇ ଠିକ୍ ପାଳିଆ ହେଇ ପାରିବ । ଆରେ, ପାରିବୁନି ?

ନିତାଇର ଗୁଣଗ୍ରାମ କବିୱାଲାମାନେ ଜାଣିଛନ୍ତି—କବିଗାଉଣା ଯୋଉଠି ହେଉ, ସେ ଯାଇ ସେହି ପାଳିଆଙ୍କ ଦଳରେ ମିଶି ବସିପଡ଼େ; ଯେତେବେଳେ କଂସାଳ ବଜାଏ, ଆଉ ପାଳିଆଙ୍କ ଭିତରେ ତ ମୂଳରୁ ଶେଷଯାକେ ବେଠି ଖଟିଯାଉଥାଏ ।

ବାବୁବର୍ଗ ଭିତରେ ଜଣେ କଲିକତାରେ ଚାକିରି କରନ୍ତି, ମଇଳା ଲୁଗା-ଜାମାର ଗଦା ଭିତରେ ସେ ବାସି ଇସ୍ତ୍ରି କରା ବସ୍ତ୍ର ପରିହି ଶୋଭମାନ ଥିଲେ । ଢଙ୍ଗଟି ବି ତାଙ୍କର ବେଶ୍ ଗମ୍ଭୀର । ସେ ଖୁବ୍ ଉଚ୍ଚ ସ୍ୱରରେ ଗୁରୁଗମ୍ଭୀର ପୃଷ୍ଠପୋଷକ ପରି କରୁଣାମିଶ୍ରିତ ବକ୍ତବ୍ୟ ପ୍ରକାଶ କରି କହିଲେ—ଆଁ, କଣ କହିଲ ? ଆମ ନିତାଇଚରଣର ପୁଣି ଏତେ ଗୁଣ ? ଏ ଯୋଏଣ୍ଟ୍ ! ବାହା ବାହାରେ ନିତାଇ ! ଲଗିଯା ରେ ଠୋକା ଲଗିଯା । ଅଭି ଡେରି କାହିଁକି—ଆରମ୍ଭ କରିଦିଅ ତା ହେଲେ । ସେ ହାତଘଣ୍ଟା ଦେଖିବାର ଚେଷ୍ଟା-କରି କହିଲେ—ଏଇଲା ତ ଆସି—କେତେଟା ବାଜିଲାଣି ?

କିଏ ଜଣେ ଫର୍ କରି ଦିଆସିଲି କାଠିଟାଏ ଜାଳିଦେଇ ଆଗେଇ ଧରିଲା !

ଭଦ୍ରଲୋକ ବିରକ୍ତ ହୋଇ ହାତଟା ଦୁଲାଇ ନେଇ କହିଲେ—ଆଃ, ଆଲୁଅର ଦରକାର ନାହିଁ । ରେଡ଼ିୟମ୍ ଅଛି, ଅନ୍ଧାରରେ ଦିଶିବ ।

ଭୂତନାଥ ରେଡ଼ିୟମ-ଫେଡ଼ିୟମ୍ ଜାଣେନା । ସେ ଖିକିଖିକି ହସି ନିତାଇକୁ କହିଲା—ଲେ ବାହାଦୁର୍, ଲେ; ଧର, କୁଆ * କାଟି କରି ଅମାବାସ୍ୟା ନିଜ । କୁଆ, କୁଆ ବି ଆସୁ । ତୋର ଗୀତ ଶୁଣିବା ।

ନିତାଇ ମନେ ମନେ ଆହ୍ଲାଦ ହେଲା ବି ମୁହଁରୁ କଥା ବାହାର କଲାନାହିଁ । ସିଆଡ଼େ ହାଟରେ ଯେତେବେଳକୁ ଢୋଲରେ କାଠି ପଡ଼ିଲାଣି—କୁଡ଼ୁତାକ୍ କୁଡ଼ୁତାକ୍ କୁଡୁମ୍ କୁଡୁମ୍ ।

ନିତାଇ ପାଲିଆଗିରି କରିବାକୁ ଲାଗିପଡ଼ିଲା ।

ନିଜ ପାଲିଆ ସାଙ୍ଗରେ ଗାଆଣର କବିଗାଉଣାର ଲଢ଼େଇ । ସୁତରାଂ ପ୍ରତି-ଯୋଗିତାଟା ହେଉଥିଲା ଆପୋଷମୂଳକ—ଅତ୍ୟନ୍ତ ଥଣ୍ଡା ରକମର । ତୀବ୍ରତା ବା ଉଷ୍ଣତା ଆଦୌ ସଞ୍ଚାରିତ ହେଉନଥାଏ । ଶ୍ରୋତାମାନଙ୍କ ମଧ୍ୟରେ ଗୁଞ୍ଜନ ଉଠୁଥାଏ ଦୁଇ ରକମର । ସେମାନଙ୍କ ମଧ୍ୟରେ ଯେଉଁମାନେ ତୀକ୍ଷ୍ଣବୁଦ୍ଧି, ସେମାନେ କହିଲେ—ଯା ଯାଃ, ପଖାଳ ଭାତ ଭଳିଆ ଗୀତ । ଏଗୁଡ଼ା କିଏ ଶୁଣିବ ହୋ । ତାଙ୍କ-ତାଙ୍କ ଭିତରେ ସଲ୍ଲା କରି ପାଲି ହଉଚି । ଚାଲ ଘରକୁ ଯିବା ବାହାରି । ଦ'ଚାରି ଜଣ ଉଠି ବାହାରିଗଲେ ।

ଆଉ ଦଳେ କହିଲେ—ଆରେ, ମହାଦେବର ପାଲିଆଟା ବେଶ୍ ଭଲ କବିଆଲରେ !

---

* କଥାରେ ଅସଂଲଗ୍ନ, ଅର୍ଥହୀନ ସଂଯୋଗ ।

ଆଚ୍ଛା ଗାଆଣ, ଭଲ ଗାଆଣ ! ଫଟ୍‌ଫାଟ୍‌ ଜବାବ ଦେଇଯାଉଛ ଦେଖୁନ ।

ନତାଇଚରଣର ବ ପ୍ରଶଂସା ହେଉଥାଏ । ପ୍ରଶଂସା ପାଇବାଭଳିଆ ନତାଇଚରଣର ମୂଳଧନ ବ ରହୁଛ । ତାର କଣ୍ଠଟି ବଡ଼ ବଢ଼ିଆ । ତାହାଛଡ଼ା କଥାକୁ କଥା କାଟିଗୁଲଛ ଚମତ୍କାର କର । ମହାଦେବର ପାଳିଆକୁ ପଛରେ ପକାଇ ନଜେ ସ୍ୱାଧୀନ ଭାବରେ ଦୁଇଗୁର ପଦ ଗାଇବାକୁ ସେ ପ୍ରାଣପଣେ ଚେଷ୍ଟାକର ଗୁଲଛ ।

ବାବୁମାନେ ଏଥିରେ ତାହାକୁ ଉତ୍ସାହ ଦେଇ କହୁଛନ୍ତ,— "ସାବାସ୍‌ ନତାଇ, ସାବାସ୍‌ ! ସାବାସ୍‌ !

ନତାଇର ସ୍ୱଜନ ଓ ବନ୍ଧୁବାନ୍ଧବେ କହୁଲେ— ଆଚ୍ଛା, ଖାସା ଇସ୍ତେ !

କଣିକଆ କର ମାଇକନଆଁ ଝିଅଙ୍କ ମେଳା । ଏଇ ମାଇପେ ସମସ୍ତେ ବ୍ରାତ୍ୟ-ସମାଜର, ସେମାନଙ୍କର ବ ବସ୍ମୟର ସୀମା ରହୁନାହିଁ । ନତାଇର ପରମବନ୍ଧୁ ଷ୍ଟେସନର ପସ୍ଟେଣ୍ଟସମ୍ୟାନ୍‌ ରଜାଲଲ ବାଏନ୍‌ର ସ୍ତ୍ରୀ ହସି ହସି ପ୍ରାୟ ଗଡ଼ିଯାଉଛ—ମୋ ମାଆ ଲୋ ! ନତେଇ ପେଟରେ ପୁଣି ଏତେ କଥା ! ମାଆ ଲୋ !

ତା ପାଖରେଇ ବସିଛ ରଜାର ଶାଳୀ, ଷୋଳ ସତର ବର୍ଷର ଝିଅଟି, ପାଖ ଗାଆଁର ବୋହୂ—ସେ ବସ୍ମୟରେ ହତବାକ୍‌ ହୋଇଯାଇଛ; ସେ ମହିରେ ମହିରେ ବରକ୍ତ ହୋଇ କହୁଛ—ନାନୀ, ତୁ ଖାଲି ହସୁଥିବୁ ନା ଶୁଣିବୁ; ଟିକେ ରହ, ଶୁଣ ଟିକଏ !

ରଜା ଅଳ୍ପ ଦୂରରେ ବସି ବନ୍ଧୁ-ଗୌରବରେ କ୍ରମାଗତ ଦୋହଲୁଥିଲା । ସେ ହସି ହସି କହୁଲା— ଦେଖତା ହୋ ଠାକୁରଝୀ ? * ଓସ୍ତାଦ୍‌ କୈସା ଗାନା ଗାତା ହେ, ଦେଖତା ?

ରଜା ଏହ ଶ୍ୟାଳକାଟିକ ଡାକେ ଠାକୁରଝୀ । ନତାଇ ବ ତାକୁ ଡାକେ— ଠାକୁରଝୀ । ଶଶୁର ଘର ଅର୍ଥାତ୍‌ ପାଖ ଗାଁରୁ ସେ ନତ ଦୁଧ ନେଇ ଆସେ ବକବାକୁ । ନତାଇ ନଜେ ବ ତା ପାଖରୁ ପାଏ ଲେଖାଏଁ ଦୁଧ 'ଲଗୁଆ' ନେଇଥାଏ । ଏହ କାରଣରୁ ହିଁ ଝିଅଟିର ବସ୍ମୟ ଏତେ ବେଶୀ । ଯାହାକୁ ମଣିଷ ଚହ୍ନେ, ତା ଭିତରୁ ଅକସ୍ମାତ ଗୋଟାଏ ଅପରଚତ ମଣିଷ ବାହାର ଆସିଲେ ବସ୍ମୟରେ ଏଇମିତ

---

(*) "ଠାକୁରଝୀ" ଶବ୍ଦ ନଣନ୍ଦକୁ ବୁଝାଏ । ବଙ୍ଗଳାରେ ଶ୍ୱଶୁରଙ୍କୁ "ଠାକୁର" କୁହାଯାଏ । ଏଇଥିରୁ ଶବ୍ଦଟିର ଉତ୍ପତ୍ତି । ରଜା ଥଟ୍ଟା କର ଏହ ନାମ ବ୍ୟବହାର୍‌ କରେ । ଏ ବଷୟରେ ପରେ ବସ୍ତୃତ ଉଲ୍ଲେଖ ରହଅଛ । ଏହ ଚରତ୍ରଟିର ପ୍ରାଧାନ୍ୟଦୃଷ୍ଟିରୁ 'ଠାକୁରଝୀ' ଶବ୍ଦଟି ଅପରବର୍ତ୍ତିତ ରଖିଅଛ । ସୌକର୍ଯ୍ୟ ସକାଶେ 'ର' ରୁ ହଲନ୍ତଟି ମାତ୍ର ଲୁପ୍ତ କରାଯାଇଛ ।

ହତବାକ୍ ହେବାକୁ ପଡ଼େ ।

ନିତାଇର କିନ୍ତୁ ସେତେବେଳକୁ ସ୍ୱାଡ଼େ ବୁଝି ଦେଖିବାର ଅବକାଶ ନଥିଲା । ସେ ସେତେବେଳେ ପ୍ରଚଣ୍ଡ ଉତ୍ସାହରେ ଉତ୍ସାହିତ ହୋଇପଡ଼ିଅଛି । ଉତ୍ସାହର ପ୍ରାବଲ୍ୟରେ ସେ କାହାଣୀର ସେହି ଓଟ ଭଳିଆ ନାସିକାର ପ୍ରବେଶପଥରେ ମୁଣ୍ଡ ଗଳାଇ ଦେଲା ଏବଂ ସେ ନିଜେ ହିଁ ସ୍ୱାଧୀନ ଭାବରେ ଗୀତ ବାନ୍ଧିବା ଆରମ୍ଭ କରିଦେଲା । ଆ-କିଶ ରାଗିଣୀ ଟାଣି ମହାଦେବର ପାଳିଆ ବାନ୍ଧିଥିବା ଦୁହାଟାକୁ ବି ବଦଳାଇ ଦେଇ ସେହି ସୁର, ସେହି ଛନ୍ଦରେ ନିଜେ ନୂଆ ଦୁହା ବାନ୍ଧି ଗାଇ ଲାଗିଲା, ଏବଂ ତାର ସୁନ୍ଦର କଣ୍ଠ ତାହାକୁ ସଙ୍ଗେ ସଙ୍ଗେ ପ୍ରତିଷ୍ଠିତ ମଧ୍ୟ କରି ପକାଇଲା ।

ମହାଦେବର ପାଳିଆ, ସେ ଇ ଦେଖିବାକୁ ଗଲେ ଗୋଟାଏ ଲଢ଼ୁଆ ଗାଆଣ । ସେ ଆପତ୍ତି ଉଠାଇ କହିଲା—ସ୍ୱାଇ ! ଏ କିଏ ରେ ? କିଏଟା ଗାଉଛୁ ରୁ ? ସ୍ୱାଇ ନେତାଇ ! ସ୍ୱାଇ !

ନିତାଇ ସେ କଥାଟା କାନକୁ ନେଲାନାହିଁ । ବାଁ ହାତଟିରେ କାନ ଘୋଡ଼ାଇ ଡାହାଣ ହାତଟି ଛେପ ରୋକିବା ଲାଗି ମୁହଁ ସାମନାରେ ଧରି ଗୀତ ବୋଲିଚାଲିଲା । ଟିକିଏ ଆଗକୁ ଝୁଙ୍କିପଡ଼ି ତାଳେ ତାଳେ ଅଳ୍ପ ନାଚ ନାଚ ସେ ସେତେବେଳକୁ ଗାଉଛି—

"ହଜୁର ଭଦ୍ରଲୋକ ପାଞ୍ଚଜଣ ରହିଛନ୍ତି ଦେଇ କାନ
ସୁବିଚାର ହବ ନିଶ୍ଚେ ପୁଣ—
ଜାଣେ ଗୋ ଜାଣେ—

ବାବୁମାନେ ଖୁବ୍ ବାହାବା ଦେଲେ—ବହୁତ ଆଚ୍ଛା ! ସାବାସ୍ ! ବାହାବା ! ନିତାଇ ବାନ୍ଧିଛି ବଢ଼ିଆ !

ସାଧାରଣ ଶ୍ରୋତାମାନେ ବି କହିଲେ—ଖାସା । ଖାସା । ଖାସା ହେ !

ନିତାଇ ଧାଇଁକରି ଡେଇଁପଡ଼ି ବୁଲିଯାଇ ଢୋଲିଆଟାକୁ ଧମକ ଦେଇ କହିଲା—ସ୍ୱାଇ ତାଳ କାଟୁଛୁ । ପରେ ପରେ ସେ ତାଳ ଦେଖାଇ ହାତରେ ତାଳି ଦେଇ ବାଜଣାର ବୋଲ କହିବାକୁ ଲାଗିଲା—ଧିକଡ଼ ତା-ତା-ଧିନତା, ତା-ତା ଧିନତା-ଗୁଡ଼୍ ଗୁଡ଼୍ ତା-ତା-ଥିୟା-ଧିକଡ଼; ହାଁ—! କହି ସେ ତାର ନୂଆ ସ୍ୱରଚିତ ଦୁହାଟାକୁ ଫେରିଆସିଲା—

"କ-ରେ କାଳି କପାଳିନୀ—ଖ-ରେ ଖର୍ପରଧାରିଣୀ
ଗ-ରେ ଗୋମାତା ସୁରଭି—ଗଣେଶଜନନୀ
କଣ୍ଠେ ଦିଅ ମା ବାଣୀ ।

ପାଖକେ ଅର୍ଦ୍ଧ-ଶିକ୍ଷିତ ଟୋକା କେଇ ଜଣ ବସିଥିଲେ । ସେମାନେ ହୁଃ-ହୁଃ କରି ହସିପକାଇଲେ । ଜଣେ କହିଲା—ଗ-ରେ ଗୋରୁ, ଛ-ରେ ଛେଳି, ମ-ରେ ମେଣ୍ଢା । ସାବାସ୍ । ହାସ୍ୟଧ୍ୱନିର ରୋଳ ଉଠିଲା ।

ନିତାଇ ସାଙ୍ଗେ ସାଙ୍ଗେ ସଳଖି ଠିଆହେଲା, ତା ପରେ ହାସ୍ୟଧ୍ୱନି ଟିକିଏ ଶାନ୍ତ ହେବାପରେ କହିଲା—ଆହେ ପାଲିଆଏ !

ମହାଦେବର ପାଲିଆ ତ ଘୋଷା ହୋଇ ବସିଛି, ଆଉ କୋଉ ପାଲିଆ ଅଛି କି ? କେହି ଜବାବ ଦେଲେନାହିଁ । ନିତାଇ ଜବାବର ପ୍ରତ୍ୟାଖାନ କରି କହିଲା— ପାଲିଆଏ ! ଗୋମାତା ଶୁଣି ସମସ୍ତେ ହସୁଛନ୍ତି ! କହୁଛନ୍ତି ! ଗ-ରେ ଗୋରୁ, ଛ-ରେ ଛେଳି, ମ-ରେ ମେଣ୍ଢା !

ଢୋଲ୍‌ଆଟା ଏଥରକ କହିଲା—ହାଁ !

ଆଚ୍ଛା—କହି ସେ ଗୀତ ମେଲିଦେଲା—

“ଗୋମାତା ଶୁଣିଣ ଯେ ହସନ୍ତି ସଭିଏ
ଦୀନ ନିତାଇଚରଣ ଯୋଡ଼କରେ କହେ—”

ଏହାକହି ହାତ ଦୁଇଟି ଯୋଡ଼ିକରି ଚେରାଏ ଘୁରିଆଡ଼େ ବୁଲିଗଲା । ସାଙ୍ଗ ରାଜା ପରମ ଉତ୍ସାହରେ କହିପକାଇଲା—ବହୁତ ଆଚ୍ଛା ଓସ୍ତାଦ୍ !

କିନ୍ତୁ ନିତାଇ ସେତେବେଳକୁ ଆଖିରେ କିଛି ଭଲକରି ଦେଖିପାରୁନାହିଁ, ରାଜାକୁ ବି ସେ ଲକ୍ଷ୍ୟ କଲାନାହିଁ, ସେ ଆପଣାର ଗୀତରେ ଇ କହିଗଲା—

“ଶୁଣନ୍ତୁ ସୁଜନେ ଦୀନର ନିବେଦନ
ଗୋ କିମ୍ବା ଗୋରୁଙ୍କୁ ନକରିବ ହାନ ।
ଗାଈ ଭଗବତୀ, ଷଣ୍ଢ ଶିବଙ୍କ ବାହନ
ସୁରଭିଙ୍କ ଶାପେ ମଲେ କେତେ ଯେ ରାଜନ ।।”

ରବ ଉଠିଲା—ଚମତ୍କାର ! ଚମତ୍କାର ! ଢୋଲ୍‌ଆଟା ଢୋଲରେ କାଠି ମାରିଲା—ଡୁଡୁମ୍ ! ନିତାଇ କହିଲା—

“ଶାସ୍ତ୍ରର ସାର କଥା କହୁଛି ଜଣାଇ
ଗୋଧନ ତୁଲେ ଧନ ଯେ ଭୂଭାରତେ ନାହିଁ ।
ସେଇ ଯେ ଗୋଲକପତି ବିଷ୍ଣୁ ବନମାଳୀ
ବ୍ରଜଧାମେ ସାଜିଥିଲେ ଗୋରୁ ରଖୁଆଳ ।।”

ନତାଇର ଏହି ଉପସ୍ଥିତ ବୁଦ୍ଧିସମ୍ପନ୍ନ ଜବାବ ଶୁଣି ସମସ୍ତେ ଅବାକ୍ ହୋଇଗଲେ । ଛନ୍ଦ ବାନ୍ଧି ଏପରି ଦୁରନ୍ତ ଓ ଯୁକ୍ତିପୂର୍ଣ୍ଣ ଜବାବ ଦେବା ତ ଆଉ ସହଜ କଥା ନୁହେଁ । ବନ୍ଧୁ ରାଜା ପର୍ଯ୍ୟନ୍ତ ହତବାକ୍; ରାଜାର ମାଇପର ଦମ ବନ୍ଦ ହୋଇଯାଇଛି, ଠାକୁରଣୀର ଓଢ଼ଣା ଖସିପଡ଼ିଅଛି—ଦେହର ବେଶବାସ ବି ଅସଂଯତ ।

ନତାଇର କିନ୍ତୁ ଆହୁରି ସରିନାହିଁ, ସେ କହିଲା—

"ଶୁଣି ତା ଛଡ଼ା—ଆହୁରି ଅଛି ମୋ ମାନେ
ଗୋ ବୋଇଲେ ପୃଥ୍ୱୀ—କହନ୍ତି ପଣ୍ଡିତ ଜନେ ॥

ଏଣିକି ବାବୁମାନେ ବି ଉଚ୍ଛ୍ୱସିତ ପ୍ରଶଂସା କରି ଉଠିଲେ । ଶ୍ରୋତାମାନେ ହର୍ଷଧ୍ୱନି କରିଉଠିଲେ । ନତାଇ ବିଜୟଗର୍ବରେ ଢୋଲ୍‌ଅଢ଼ାଇ କହିଲା—ବଜା !

ଏତେବେଳେ ଯାଇ ସମସ୍ତେ ଟିକିଏ ଦାଗ ହୋଇ ବସିଲେ । ରାଜା ଏତେର ବୁଲ୍‌ପଡ଼ି ସ୍ତ୍ରୀ ଓ ଠାକୁରଣୀ ଆଡ଼କୁ ଗୁହିଁ କହିଉଠିଲା ଇଆଡ଼େ ଦେଖ ! ସ୍ତ୍ରୀ ବିସ୍ମୟ-ମୁଗ୍ଧ ଦମ ହସି କହିଲା—ସତେ ଲୋ !

ତରୁଣୀ ଠାକୁରଣୀଟିର କିନ୍ତୁ ସେତେବେଳକୁ ବିସ୍ମୟର ନିଶା ଲାଗିରହିଛି । ସେ ବିପୁଳ ବିସ୍ମୟରେ ଶିଥିଳଚୈତନ୍ୟ ଭଳି ନତାଇ ଆଡ଼କୁ ଗୁହିଁ ରହିଥିଲା । ରାଜା ତାର ଅସଂଯତ ବାସ ଓ ବିସ୍ମିତ ଭଙ୍ଗୀ ଦେଖି ବିରକ୍ତ ହୋଇପଡ଼ିଲା, ତୁଚ୍ଛ ସ୍ୱରରେ କହିଲା—ଆଃ ! ଆଲୋ ଠାକୁରଣୀ ! ମୁଣ୍ଡରେ ଲୁଗା ଦେ ।

ରାଜାର ସ୍ତ୍ରୀ ତାକୁ ଗୋଟାଏ ଠେଲି ମାରି କହିଲା—ମଲା, ଚେତା ନାହିଁ କିଅରେ !

ଠାକୁରଣୀ ଏଥର ଜିଭ କାମୁଡ଼ି, ଲୁଗା ଟାଣି ମୁଣ୍ଡରେ ଦେଇ କହିଲା—ଖାସା ଗାଉଛି ଲୋ ଓସ୍ତାଦ୍ !

କେତେଣ ବାବୁଙ୍କ ମେଳରେ ବି ବିସ୍ମୟର ସୀମା ନଥିଲା । ସେଇଠୁ କଲିକତା-ପ୍ରବାସୀ ଲୁକଣିଆ ବାବୁଟି ବି ସ୍ୱୀକାର କଲେ—ୟେସ୍ । ଏ ସାର୍ଟମତ ଆଶ୍ଚର୍ଯ୍ୟ କଥା ! ସନ୍ ଅଫ ଏ ଡୋମ—ୟାଁ—ସ୍ପି ଇକ୍ ଏ ପୋଏଟ୍ ।

ଦୁର୍ଦ୍ଦାନ୍ତ ଭୂତନାଥ କ୍ରୁଦ୍ଧ ହୋଇଗଲେ ରୁଦ୍ର, ତୁଷ୍ଟ ହୋଇଗଲେ ଆଶୁତୋଷ—ମାନସିକ ଅବସ୍ଥାର ଏହି ଦୁଇ ଦୂରତମ ପ୍ରାନ୍ତରେ ଅତି ସହଜରେ ହିଁ ସେ ଗଞ୍ଜା-ପ୍ରସାଦରେ ବ୍ୟୋମମାର୍ଗରେ ନିମେଷକେ ଯାଇ ଆସିପାରେ । ସେ ବିଲ୍‌କୁଲ୍ ମୁଗ୍‌ଧ ହୋଇ ଯାଇଥିଲା । ସେ କହିଲା—କୁଣ୍ଡାଦସ୍ତାରେ ଖାସା ଗୁଉଲ ରେ ବାବା । ରତ୍ନ ରେ, ଗୋଟାଏ ରତ୍ନ—ମାଣିକର ପୁଅ ମାଣିକ ! ସାବାସ୍ ବେଟା !

ମହନ୍ତ ହସି ହସି କହିଲେ—ମୋର ପାଗଳୀ ମାଆର ଖିଆଲ ବାବା; ନିତାଇକୁ ବଡ଼ କରିବାକୁ ମା' ମୋର ନୋଟନକୁ ଡାକୁଛନ୍ତି ।

ଏହା ପରେ ପରେ ଆରମ୍ଭ ହେଲା ମହାଦେବର ପାଳି । ମହାଦେବ ପକ୍କା ପ୍ରାଚୀନ କବିୟାଲ । ସବୁ ଦେଖିଶୁଣି ସେ ନୂଙ୍କ ଭ୍ରୂକୁଟି କରି ଗୀତ ଧରିଲା—ବ୍ୟଙ୍ଗ, ରଙ୍ଗ ଗାଳି-ଗୁଲଜରେ ନିତାଇକୁ ଶୃଙ୍ଖଳବଦ୍ଧ କରି ଠିଲ ଠିଲ ବଧ କରିବାକୁ ଆରମ୍ଭ କଲା ସେ । ତାର ସରସ, ଅଶ୍ଳୀଳତାମିଶା ଗାଳିଗୁଲଜରେ ସଭାଟା ସାରା ହାସ୍ୟରୋଳରେ ମୁଖର ହୋଇ ପଡ଼ିଲା । ନିତାଇ ସଭାରେ ବସି ଅଳପ ଅଳପ ହସୁଥିଲା ଓ ମନେ ମନେ ଗାଳିଗୁଲଜର ଜବାବ ଖୋଜୁଥିଲା ।

କିନ୍ତୁ କ୍ଷୁଣ୍ଣ ହେଲା ରାଜା । ସେ ତ ମିଲିଟାରି ମିଜାଜ୍‌ର ଲୋକ—ସାଙ୍ଗକୁ ଏଇ ଗାଳି-ଗୁଲଜଗୁଡ଼ାକ ତାର ଅସହ୍ୟ ହୋଇପଡ଼ିଲା । ସେ ସଭାରୁ ଉଠିଯାଇ କିଛି ସମସ୍ତ ମେଳାଆଡ଼େ ବୁଲି ବାହାରିଗଲା । ରାଜାର ସ୍ତ୍ରୀ ଖୁବ୍ ହସୁଥାଏ । ଠାକୁରଝି ଝିଅଟି କିନ୍ତୁ ଖୁବ୍ ଦୁଃଖିତ ହୋଇଛି; ସେ ବି ଏଥରକ ବିରକ୍ତ ହୋଇ କହିଲା—ହ'ସନା ଅପା ! ଏମିତି କରି କିଏ କୋଉ ମଣିଷକୁ ଗାଳିଦିଏ !

ମହାଦେବ ତଗ ବୋଲୁଥାଏ—

"ସୁବୁଦ୍ଧି ଉମର ପୁଅ କୁବୁଦ୍ଧି ପାଇଥିଲା
କଟୁରି-ବାଉଁଶ ଗୁଣ୍ଡ କବିତା କରିବାକୁ ଅଇଲା ।
ଟୋକାର ବାପ ସିନ୍ଧିକଟା ଚୋର, ବଡ଼ବାପ ଠେଙ୍ଗୁଆଳ
ଅଜା ନାମଯାଦା ଡକେଇତ କଳାପାଣି ଖଟି ଗଲା କାଳ ।
ସେଇ ବଉଁଶର ପୁଅ ହୋଇକରି କବିତା କରିବୁ ତୁହି
ଉମର ଦୁଲାଲ ରତ୍ନାକର, କି ଚୁଙ୍ଗୁଡ଼ିର ଛୁଆ ରହି ॥

ଜଣେ କିଏ ସେ ମନ୍ତବ୍ୟ କଲା—

ଅଳପ ପାଣିରେ ଭଲ୍ ରେ ଚୁଙ୍ଗୁଡ଼ି, ଗହୀର ପାଣିକି ଯାଆନା ।

ପାଳିଆଏ ବଡ଼ ଉତ୍ସାହରେ ମହାଦେବର ନୂଆ ଦୁହାଟା ଗାଇଲେ—

"ଖତଗଦାର ଯେ ଅଇଁଠା ପତର ସ୍ୱରଗ ଯିବାକୁ ଆଶା ଗୋ !
ଫଡ୍ ଫଡ୍ କରି ଉଡ଼ିଲା ପତର ସ୍ୱରଗ ଯିବାକୁ ଆଶା ଗୋ !
ହାଇରେ କଳି—ମାଆ ଲୋ ମଲି—

ଗଟୁଡ଼ ହୋଇଚେ ମଶା ଗୋ—ସ୍ୱରଗ ଯିବାକୁ ଆଶା ଗୋ ॥

ଅକସ୍ମାତ୍ ମହାଦେବ କହୁଛନ୍ତି—ଆଃ, ବଡ଼ ବ୍ୟସ୍ତ କଲ ରେ ବାବା । କହିଦେଇ ସେ ନିଜ ଗୋଡ଼ରେ ଗୋଟାଏ ଚାପୁଡ଼ା ମାରିଦେଲା ଓ ସଙ୍ଗେ ସଙ୍ଗେ ଗାଇଲା—

"ଗୋଡ଼ରେ କାମୁଡ଼େ ମଶା ମାରିଦେଲି ଚାପୁଡ଼େ
ବଇକୁଣ୍ଠରେ ବିଷ୍ଣୁ କାନ୍ଦନ୍ତି—ଚଢ଼ିବେ କା ଉପରେ ।"

ମହାଦେବର ପାଲିଆ—ଯାହାକୁ ନାକଚ କରିଦେଇ ନିତାଇ ଗାଆଣ ହୋଇଛି—ସେଇ ଏଥର ଉଦ୍ଧାରିଦେଲା—ଚହଟ ଚାପୁଟା ସମ୍ଭାଳି ପାରେନା—ସ୍ୱରଗେ ଯିବାକୁ ଆଶା ଗୋ ।

ଏହାପରେ ରାତି ଯେତେ ଅଗ୍ରସର ହେଲା, ମହାଦେବର ତାଣ୍ଡବ ସେତିକି ବଢ଼ିଗଲା ଶ୍ଳୀଳ-ଅଶ୍ଳୀଳ ଗାଳିଗୁଲଜ ଦେଇ ସେ ନିତାଇକୁ ବିପର୍ଯ୍ୟସ୍ତ କରିଦେଲା । ମହାଦେବର ଏହି କୌଶଳ-ପ୍ରତିରୋଧର କ୍ଷମତା ନିତାଇର ନଥିଲା; କିନ୍ତୁ ତାର ବାହାଦୁରି ଏତିକି ଯେ କ୍ଷତବିକ୍ଷତ ହୋଇ ସୁଦ୍ଧା ସେ ଧରାଶାୟୀ ହେଲା ନାହିଁ । ଠିଆହୋଇ ହସି ହସି ସବୁ ସହିନେଲା । ସେ ଗାଳିଗୁଲଜର ଉତ୍ତରରେ କେବଳ ଚିଗ ଟମେଲ ବୋଲିଲା—

"ଓସ୍ତାଦ ତମେ ବାପ ସମାନ ତମକୁ କରେଁ ମାନ୍ୟ
ତମେ ମତେ ହେ ଦଉଛ ଗାଳି ଧନ୍ୟ ହେ ତମେ ଧନ୍ୟ ।
ତମର ହେଉଛି ବୁଢ଼ାକାଳେ କୁମତି—ମୋର କିନ୍ତୁ ଅଛି ମତି ତମରି ଚରଣେ
ନିର୍ଭୟରେ ଦେବ ଜବାବ ଭୟ କିଛି ନାହିଁ ମୋର ମନେ ।"

ଲୋକଙ୍କର କିନ୍ତୁ ସେତେବେଳକୁ ଏ ବିନୀତ ମିଷ୍ଟ ରସ ଉପଭୋଗ କରିବାଭଳି ଅବସ୍ଥା ନାହିଁ । ମହାଦେବ ଗାଳିଗୁଲଜର ମଦ-ରସରେ ସଭାକୁ ମାତାଲ କରି ଦେଇଛି; ଆଉ ମହାଦେବ ତୁଳନାରେ ନିତାଇ ବାସ୍ତବରେ ନିଷ୍ପ୍ରଭ । ସୁତରାଂ ତାହାର ପରାଜୟ ହେଲା । ସେଥିରେ ଅବଶ୍ୟ ନିତାଇର କୌଣସି ଗ୍ଲାନିବୋଧ ନଥିଲା; ବରଂ ସେ ହଠାତ୍ ନିଜକୁ ଜଣେ ବିଶିଷ୍ଟ ବ୍ୟକ୍ତି ବୋଲି ହିଁ ଅନୁଭବ କଲା ।

ପାଲି ଶେଷରେ ସେ ବାବୁମାନଙ୍କୁ ପ୍ରଣାମ କରି ଯୁକ୍ତକରରେ ସବିନୟେ କହିଲା—ହଜୁରେ, ଅଧୀନ ମୂର୍ଖ ଛୋଟଲୋକ—

ତାକୁ କଥାଟି ଶେଷ କରିବାକୁ ନଦେଇ ବାବୁମାନେ କହିଲେ—ନା ନା । ଖୁବ୍

ଭଲ, ଭଲ ଗାଉଛୁ ତୁ । ବହୁତ୍ ଆଚ୍ଛା, ବହୁତ୍ ଆଚ୍ଛା ।

ପ୍ରଚଣ୍ଡ ଉତ୍ସାହରେ ତାହାର ପିଠିରେ କେଇଟା ଘାଘାତକ ଚପେଟାଘାତ କରି ଭୂତନାଥ କହିଲା—ସାବାସ୍ । ଜିତା ରହୋ ରେ ବେଟା ! ଜିତା ରହୋ ।

ଚାକଣିଆ ବାବୁଜଣକ କରୁଣାମିଶ୍ରିତ ପ୍ରଶଂସାରେ ଦ୍ରପଟିଏ ହସି ବାରମ୍ବାର ବିସ୍ମୟ ପ୍ରକାଶ କରି କହିଲେ—ୟୁ ଆର୍ ଏ ପୋଏଟ୍, ଆଁ ! ଏ ପୋଏଟ୍ ! ୟୁ ଆର୍ ଏ ପୋଏଟ୍ !

କଥାଟାର ଅର୍ଥ ବୁଝି ନପାରି ନିତାଇ ବିନୀତ ସପ୍ରଶ୍ନ ଭଙ୍ଗୀରେ ବାବୁଙ୍କ ଆଡ଼େ ଚାହିଁ କହିଲା—ଆଜ୍ଞା ?

ବାବୁ କହିଲେ—ତୁ ତ ଜଣେ କବି ରେ ।

ନିତାଇ ଲଜ୍ଜିତ ହୋଇ ମଥାପୋତି ମାଟିକି ଚାହିଁରହିଲା । ପରେ ସେ ମହାଦେବକୁ କହିଲା—କ୍ଷମା କରିବେ ଓସ୍ତାଦ । ମୁଁ ଅଧମ । କହିବାକୁ ଗଲେ ମାଛିଠାରୁ ହୀନ ।

ମହାଦେବ ଅବଶ୍ୟ ପ୍ରତିପକ୍ଷର ଏହି ବିନୟରେ ଲଜ୍ଜିତ ହେଲାନାହିଁ; ବରଂ ସେ ନିତାଇର ବିନୟରେ ଖୁସି ହୋଇ କହିଲା—ମୋ ଦଳରେ ତୁ ପାଳିଆଗିରି କର୍‌ରେ । ତାପରେ ନିଜେଇ ଦଳ କରିପାରିବୁ । ତା ଛଡ଼ା ତୋର କଣ୍ଠଟି ବେଶ୍ ମିଠା !

ନିତାଇ ମନେ ମନେ ଟିକିଏ ରୂଢ଼ ଅଥଚ ରସିକତାସମ୍ମତ ଜବାବ୍ ଖୋଜୁଥିଲା; ମହାଦେବର ଗାଳିଗୁଲଜ ଭିତରେ ଜାତି ଉଠେଇ ଓ ବାପଅଜା ଉଠେଇ ଗାଳି-ଗୁଲଜଗୁଡ଼ାକ ତା ଛାତିରେ କଣ୍ଟା ପରି ଫୁଟିଥିଲା । କିନ୍ତୁ କିଛି ଉତ୍ତର ଦେବାର ପୂର୍ବରୁ ହିଁ ପଛରୁ ଦଶ କୋଡ଼ିଏ ଏକାସଙ୍ଗେ ଡାକିଲେ—ନେତାଇଚରଣ, ନେତାଇଚରଣ ହୋ !

ଡାକ ଶୁଣି ନିତାଇଚରଣ ପୁଲକିତ ହୋଇ ବୁଲି ଠିଆହେଲା । ଆଜି ହିଁ ସେ 'ନିତେ' 'ନେତା' 'ନିତୋ' 'ନେତାଇ'ରୁ ନିତାଇଚରଣ ହୋଇଯାଇଛି । ଯେଉଁମାନେ ଡାକୁଥିଲେ, ସେମାନେ ଅଦୂରବର୍ତ୍ତୀ ବାବୁମାନଙ୍କୁ ଦେଖାଇ କହିଲେ—ବାବୁମାନେ ଡାକୁଛନ୍ତି, ମହନ୍ତ ଡାକୁଛନ୍ତି ।

ମହନ୍ତଜୀ ଚଣ୍ଡୀଙ୍କ ପ୍ରସାଦୀ ଗୋଟିଏ ସିନ୍ଦୁରଲିପ୍ତ ବେଲପତ୍ରର ମାଳ ଦୂରରୁ ରଖିକରି ତା ମୁଣ୍ଡକୁ ଫୋପାଡ଼ି ଦେଇ କହିଲେ—ବାଃ ବାଃ, ଖୁବ୍ ଭଲ । ମା ତୋର ଉନ୍ନତି କରିବେ । ମାଆଙ୍କ ମେଳାରେ ରାତିଏ ଗାଉଣା ତୋର ଫି ବର୍ଷ ବରାଦ ରହିଲା । ସୁନ୍ଦର କଣ୍ଠ ତୋର ।

ଚାକଣିଆ ବାବୁ ନିତାଇର ପିଠି ଚାପୁଡ଼ାଇ କହିଲେ—ଗୋଟାଏ ମେଡଲ ତତେ ଦିଆଯିବ । ତା ପରେ ହସିକରି ପୁଣି କହିଲେ—ଆଁ ! ୟୁ ଆର ଏ ପୋଏଟ୍ !

ଏ ଗୋଟାଏ ବିସ୍ମୟ !

ନିତାଇ କିଂକର୍ତ୍ତବ୍ୟବିମୂଢ଼ ହୋଇପଡ଼ିଲା । କଣ କରିବ, କଣ କହିବ, କିଛି ବୁଝି-
ପାରିଲାନି । ବାବୁ କହିଲେ—କିନ୍ତୁ ହୁସିଆର, ତୋ ନିଜ ଗୋଷ୍ଠିବାଗିଆ ତୁ
ଚୋର-ଡକେଇତି କରିବୁ ନାହିଁଟି ! ତୁ ହେଲୁ କବି—ଏ ପୋଏଟ୍ !

ଏଥରକ ହାତ ଯୋଡ଼ି କରି ନିତାଇ କହିଲା—ଆଜ୍ଞା, ପ୍ରଭୁ ! ଚୋରି ମୁଁ ଜୀବନରେ
କରିନାହିଁ । ମିଛ କଥା ବି ମୁଁ କହେନା ହଜୁର୍ ! ନିଶା ବି କରେନା ମୁଁ । କାହି
ପାଟକ ମା-ଭାଇଙ୍କ ସାଙ୍ଗରେ ବି ଏଇଥିପାଇଁ ମୋର ପଡ଼େନା । ଘର ତ ଘର, ମୁଁ
ମାଇ ବି ତ୍ୟାଜ୍ୟ କରିଛୁ କହିବାକୁ ଗଲେ । ମୁଁ ଆଏ ଇଷ୍ଟିସନରେ ରାଜନ ପଏଣ୍ଟସ୍-
ମ୍ୟାନ ପାଖରେ । କୁଲିଗିରି କରି ପେଟ ପୋଷେ ।

ଏ ଗାଆଁର ଚୋର, ସାଧୁ, ଭଲମନ୍ଦ ସବୁ କିଛି ଖବର ଭୂତନାଥର ନଖଦର୍ପଣରେ ।
ସେ ସାଙ୍ଗେ ସାଙ୍ଗେ ନିତାଇକୁ ସମର୍ଥନ କରି କହିଲା—ହଜାର ବାର ସତ ! ସଚ୍ଚା
ସାଧୁ ଆଦମୀ ନିତାଇ ।

ନିତାଇ ପୁଣି କହିଲା—ଏଇ ମା' ଚଣ୍ଡୀଙ୍କ ସାମନାରେ ଠିଆହୋଇ କହୁଚି, ମିଛ
କହୁଥିଲେ ମୋ ମୁଣ୍ଡରେ ବଜର ପଡ଼ିବ ।

## ତିନି

ନିତାଇ ମିଥ୍ୟା ଶପଥ କରିନାହିଁ । ସତରେ ନିତାଇ ଜୀବନରେ କେବେହେଲେ ଚୋରି
କରିନାହିଁ । ତାହାର ଆତ୍ମୀୟସ୍ୱଜନ, ଗଭୀର ରାତିରେ ନିଃଶବ୍ଦ ପଦସଞ୍ଚାରରେ ନିର୍ଭୟ
ବିଚରଣ ମଧ୍ୟରେ ଯେଉଁ ଉଦ୍‌ବେଗମୟ ଉଲ୍ଲାସ ଅନୁଭବ କରନ୍ତି, ସେ ଉଲ୍ଲାସର ଆସ୍ୱାଦ
ସତରେ ନିତାଇର ରକ୍ତକଣିକାଗୁଡ଼ିକ ପାଖରେ ଅଜ୍ଞାତ । ଗ୍ରୀକ୍-ବୀର ଆଲେକ୍‌ଜାଣ୍ଡରଙ୍କ
ସମ୍ମୁଖରେ ଥେସିଆନ ଦସ୍ୟୁଙ୍କ ପରି ନ୍ୟାୟର ତର୍କ ଏଠାକାର ବୀରବଂଶୀମାନେ
ଜାଣନ୍ତି ନାହିଁ ସତ୍ୟ, ତେବେ ନୀତି ଓ ଧର୍ମର କଥା ଶୁଣିଲେ ସେମାନେ ବ୍ୟଙ୍ଗ କରି
ହସନ୍ତି ଏବଂ ନିତାଇର ଏହି ଚୌର୍ଯ୍ୟବୃତ୍ତି-ବିମୁଖତା ଲାଗି ସେମାନେ ତା ଭିତରେ
ଆବିଷ୍କାର କରନ୍ତି ଗୋଟାଏ ଭୀରୁତା ଏବଂ ସେଇଥିଲାଗି ସେମାନେ ତାହାକୁ ଘୃଣା
କରନ୍ତି ।

କପରି ଭାବରେ ଯେ ଏମିତି ହେଲା ତାହାର ଇତିହାସ ଅଜ୍ଞାତ । ତାଚ୍ଛଲ୍ୟଭରେ କେହି ଲକ୍ଷ୍ୟ କରିନାହିଁ ବୋଲି ସମ୍ଭବତଃ ଅଲକ୍ଷ୍ୟରେ ହଜିଯାଇଛି । ତେବେ ଗୋଟିଏ ଘଟଣା ଲୋକଙ୍କ ଅଖିରେ ବାରମ୍ବାର ପଡ଼ୁଥିଲା । ସେହି ଘଟଣାଟି ଲୋକଙ୍କ ଆଖିରେ ଏବେ ବି ଭାସେ । ରୋଜ ସନ୍ଧ୍ୟାବେଳେ ନିତାଇଚରଣ ବହି-ବସ୍ତାନିଟି କାଖରେ ଜାକି କାଳିପଡ଼ା ଲଣ୍ଠନ ଧରି ନାଇଟ୍ ଇସ୍କୁଲକୁ ଚାଲିଛି । ସ୍ଥାନୀୟ ଜମିଦାରଙ୍କ ମାଆଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ପ୍ରତିଷ୍ଠିତ ନୈଶ ବିଦ୍ୟାଳୟରେ ନିତାଇ ପଢ଼ାଶୁଣା କରିଥିଲା । ସେତେବେଳେ ଡମ ସାହିର ଅନେକଗୁଡ଼ିଏ ପିଲା ପଢ଼ୁଥିଲେ । ଛାତ୍ର ସଂଗ୍ରହ କରିବା ଉଦ୍ଦେଶ୍ୟରେ ଜମିଦାର ଖଣ୍ଡିଏ ଲେଖାଏଁ ଲୁଗା ଦେବାର ଘୋଷଣା କରିବାଫଳରେ ହିଁ ବୀରବଂଶୀମାନେ ପିଲାମାନଙ୍କୁ ଆଣି ପାଠଶାଳାରେ ଭର୍ତ୍ତି କରି ଦେଇଥିଲେ । ସଙ୍ଗେ ସଙ୍ଗେ ନିତାଇ ବି ଆସିଥିଲା । ବର୍ଷ ଶେଷରେ ଲୁଗାଟି ନେଇ ଦ୍ୱିତୀୟ ଭାଗର ଚୋର ବେଣୀର ଗଳ୍ପ * ପଢ଼ିବା ଆଗରୁ ହିଁ ଡୋମଙ୍କ ପୁଏ ପାଠଶାଳାରୁ ଖସି ଚାଲିଗଲେ; କେବଳ ନିତାଇ ହିଁ ରହିଗଲା । ନିତାଇ ପରୀକ୍ଷାରେ ଫାର୍ଷ୍ଟ ହୋଇଥିଲା ବୋଲି ଲୁଗା ସଙ୍ଗେ ଖଣ୍ଡିଏ ଜାମା ଓ ଖଣ୍ଡିଏ ଗାମୁଛା ଏବଂ ତାହା ସଙ୍ଗେ ଗୋଟିଏ ଲଣ୍ଠନ ପାଇଲା । ଏହି ପ୍ରାପ୍ତିଯୋଗ ହେତୁରୁହିଁ ସମସ୍ତେ ପାଠଶାଳା ଛାଡ଼ିଲେ ବି ନିତାଇ ଛାଡ଼ି ନାହିଁ । ସେତେବେଳେ ଧୁଅ ଲୁଗା, ଗାମୁଛା, ଜାମା ଓ ଲଣ୍ଠନ ଚାରି ଦଫା ପୁରସ୍କାର ପାଇବାରେ ନିତାଇର ମାଆ ବି ବେଶ୍ କିଛି ଗୌରବ ଅନୁଭବ କରିଥିଲା । ବଂଶଧାରା-ବିରୋଧୀ ଗୋଟିଏ ଅଭିନବ ଗୌରବର ଆସ୍ୱାଦ ମଧ୍ୟ ବୋଧହୁଏ ନିତାଇ ପାଇଥିଲା । ଏହା ପରେ ଆହୁରି ବର୍ଷ ଦୁଇଟା ନିତାଇ ପାଠଶାଳାରେ ପଢ଼ିଥିଲା । ଏହି ଦୁଇ ବର୍ଷରେ ପୁରସ୍କାର ହିସାବରେ ଲୁଗା, ଜାମା, ଗାମୁଛା, ଲଣ୍ଠନ ଛଡ଼ା ନିତାଇକୁ ମିଳିଥିଲା କେଇଖଣ୍ଡ ବହି—ଶିଶୁବୋଧ ରାମାୟଣ, ମହାଭାରତ କଥା, ଜନ୍ତୁଙ୍କ ଗଳ୍ପ । ସେଗୁଡ଼ିକ ନିତାଇର କଣ୍ଠସ୍ଥ । ନିତାଇ ସୁଯୋଗ ପାଇଥିଲେ ଅହୁରି ପଢ଼ିଥାନ୍ତା; କିନ୍ତୁ କେବଳ ନିତାଇ

---

* ଈଶ୍ୱରଚନ୍ଦ୍ର ବିଦ୍ୟାସାଗରକୃତ ବର୍ଣ୍ଣପରିଚୟର ଦ୍ୱିତୀୟ ଭାଗର ଏକ ଗଳ୍ପ । ଗୋଟିଏ ବାଳକ ଛୋଟ ଛୋଟ ଜିନିଷ ଚୋରି କରୁ କରୁ କ୍ରମେ ବଡ଼ ବଡ଼ ଚୋରି କଲା । ତାହାର ମାଉସୀ ତାକୁ ଖୁବ୍ ପ୍ରଶ୍ରୟ ଦେଉଥାଏ । ଶେଷକୁ ବଡ଼ ଚୋରିରେ ଧରାପଡ଼ି ତାହାର ଫାଶୀ ହୁକୁମ ହୁଏ । ଫାଶୀପୂର୍ବରୁ ତାହାର ଶେଷ ଇଚ୍ଛା ପଚରାଯିବାରୁ ସେ ମାଉସୀକୁ ଦେଖିବାକୁ ଚାହିଁଲା । ମାଉସୀକୁ ଡାକି ତା କାନରେ କିଛି କହିବା ବାହାନାରେ ତାର କାନ କାମୁଡ଼ି ଛିଣ୍ଡାଇଦେଲା ଓ ଚେତାଇଦେଲା ଯେ ଠିକ୍ ସମୟରେ ଶାସନ ପାଇଥିଲେ ସେ ଚୋରି କରିବାର ଅଭ୍ୟାସରୁ ମୁକ୍ତ ପାଇଥାନ୍ତା ।

ଛଡ଼ା ପାଠଶାଳାରେ ଆଉ ଦ୍ୱିତୀୟ ଛାତ୍ର ନ ଥିବାରୁ ପାଠଶାଳାଟି ହିଁ ଉଠିଗଲା । ଅଗତ୍ୟା ନିତାଇ ପାଠଶାଳା ଛାଡ଼ିବାକୁ ବାଧ୍ୟ ହେଲା । ସେତେବେଳକୁ ତାର ବିଦ୍ୟାନୁରାଗ ଆଉ ଗୋଟିଏ ବାଟରେ ଶାଖା ବିସ୍ତାର କରିଅଛି । ଏଠାକାର କବି-ଗାଉଣାର ପାଲାର ସେ ପରମ ଭକ୍ତ ହୋଇ ପଡ଼ିଅଛି । ବଂଗଳାର ସମଗ୍ର ଅଶିକ୍ଷିତ ସମ୍ପ୍ରଦାୟ ହିଁ କବିଗାଉଣାର ଭକ୍ତ; କିନ୍ତୁ ସେ ଭକ୍ତ ତାଙ୍କର ଅଶ୍ଳୀଳ ରସିକତା ପ୍ରତି ଆସକ୍ତ ମାତ୍ର । ନିତାଇର ଆସକ୍ତି ଭିନ୍ନ ପ୍ରକାରର । ପୁରାଣର କାହାଣୀ, କବିତାର ଘାତପାତ ଏବଂ ଉପସ୍ଥିତ ବୁଦ୍ଧିର ଚମତ୍କାରପ୍ରଦ କୌତୁକ ମଧ୍ୟ ତାହାକୁ ଭଲ ଲାଗେ ।

ମାମୁପୁଅ; ମାଉସୀପୁଅ ଭାଇମାନେ ନିତାଇକୁ ଥଟ୍ଟା କରି ଏତେ ଦିନଯାଏ ଡାକୁଥିଲେ ପଣ୍ଡିତ ମହାଶୟ ! ଏଥରକ ସେମାନେ ତାକୁ ଦଳକୁ ନେଇ ଦୀକ୍ଷା ଦେବାକୁ ବ୍ୟଗ୍ର ହୋଇପଡ଼ିଲେ, ଅର୍ଥାତ୍ ରାତିର ଅଭିଯାନ ଦଳରେ ସେମାନେ ତାକୁ ନେବାକୁ ଚାହିଁଲେ ।

ମାମୁ ଗୌରଚରଣ ସଦ୍ୟ ପାଞ୍ଚ ବର୍ଷ ଜେଲ୍ ଖଟି ଘରକୁ ଫେରିଅଛି । ସେ ଭଉଣୀକୁ ଡାକି ଗମ୍ଭୀର ସ୍ୱରରେ କହିଲା—ନିତାଇକି ଏଥର ବାହାରିବାକୁ କହ । ଲେଖାପଢ଼ା ତ ଢେର୍ ହେଲା ।

ଗୌରଚରଣର ଗମ୍ଭୀରସ୍ୱରର କଥାର ଅର୍ଥ—ତାହାର ଆଦେଶ । ନିତାଇର ମା' ଆସି ପୁଅକୁ କହିଲା—ତୋ ମାମୁ କହୁଚି, ଏଥର ତତେ ଦଳ ସାଙ୍ଗରେ ମିଶି ଯିବାକୁ ହବ ।

ନିତାଇ ମା' ଆଡ଼କୁ ଟିକିଏ ଚାହିଁରହି କହିଲା—ଛି ! ଛି ! ଛି ! ଗର୍ଭଧାରିଣୀ ଜନନୀ ହୋଇ ଏଇ କଥା ତୁ କହୁଚୁ ମୋତେ ।

ନିତାଇର ମା' ହତଭମ୍ବ ହୋଇ ରହିଗଲା ।

ନିତାଇର ମାମୁ ଆଖି ଲାଲ କରି ଆସି ସମ୍ମୁଖରେ ଠିଆ ହୋଇ କହିଲା—କଣ କହୁଚୁ ମାଆକୁ ? ସେ କଣ ହଉଚି ?

ନିତାଇ ସେତେବେଳକୁ ପୁରୁଣା ଖାତାଟାରେ ରାମାୟଣ ଦେଖି ହସ୍ତାକ୍ଷର ଲେଖୁଥିଲା । ସେ ନିର୍ଭୟରେ କହିଲା—ଲେଖୁଚି ।

—ଲେଖୁଚୁ ? ଗୌର ଆସି ଖାତାଟା ଓ ବହିଟାକୁ ଟାଣିକରି ଫୋପାଡ଼ି ଦେଲା ତଳେ । ନିତାଇ ବି ସଙ୍ଗେ ସଙ୍ଗେ ଉଠି ଠିଆହେଲା; ଧୀରେ ଧୀରେ ମାମୁକୁ ଅତିକ୍ରମ କରି ସେ ଖାତା ଓ ବହି ଗୋଟାଇ ନେଇ ତାଙ୍କ ସାହି ପରିତ୍ୟାଗ କରି ବାହାରି ପଡ଼ିଲା । ଗ୍ରାମରେ ଖୋଜି ସେହି ଦିନହିଁ ସେ ଘନଶ୍ୟାମ ଗୋସାଇଁଙ୍କ ଘରେ ମାସିକ ବେତନରେ

ଚାକିରିରେ ବାହାଲ ହେଲା ।

ଗୋସାଇଁଜୀ ବୈଷ୍ଣବ ଲୋକ, ଘରେ ସନ୍ତାନହୀନା ସ୍ଥୂଳକାୟା ଗୃହିଣୀ । ମାର୍ଜାର ପରି ଉଭୟେ ଦୁଗ୍ଧପ୍ରିୟ । ଘରେ ଦୁଇଟି ଗାଈ ଅଛନ୍ତି । ଗାଈ ଦୁଇଟି ଏତେଦିନ ହେଲା ରାତିରେ ସ୍ୱେଚ୍ଛାମତେ ବିଚରଣ କରି ପ୍ରଭାତରେ ଘରେ ଆସି ଦୁଧ ଦେଉଥିଲେ । କିନ୍ତୁ ଇଦାନୀଂ କଳିକାଳ ଅକସ୍ମାତ୍ ସେପରି ପରିପୂର୍ଣ୍ଣ କଳାଙ୍କ ଲାଭ କରିଅଛି ବୋଲି ଗ୍ରାମର ଲୋକଙ୍କର ଗୋବ୍ରାହ୍ମଣଙ୍କ ଉପରେ ଭକ୍ତି ଏକାବେଳକେ ବିଲୁପ୍ତ ହୋଇଅଛି । ଯେଣୁ ହେତୁ ତାହାଙ୍କର ଗାଈ ଦୁଇଟିକି ଗତ ଦୁଇ ମାସରେ ପନ୍ଦର ଥର ଲୋକମାନେ କାଞ୍ଜି-ହାଉସକୁ ଦେଇଛନ୍ତି । ବାଧ୍ୟ ହୋଇ ଗୋସାଇଁଜୀ ଗାଭୀ-ପରିଚର୍ଯ୍ୟା ଲାଗି ଲୋକ ଖୋଜୁଥିଲେ । ନିତାଇକୁ ପାଇ ବାହାଲ କଲେ । ନିତାଇଚରଣ ସଙ୍ଗରେ ସର୍ତ୍ତ ହେଲା, ସେ ଗାଭୀର ପରିଚର୍ଯ୍ୟା କରିବ, ବାସନ ମାଜିବ, ପ୍ରୟୋଜନ ମତେ ଏଠିକି ସେଠିକି ଯିବ, ରାତିରେ ଘରେ ପ୍ରହରୀ ଦେବ । ଗୋସାଇଁଜୀଙ୍କ ସୁଧ କାରବାରରେ ମୂଳ ଏକଶତ ମହଣ ଧାନ ବର୍ତ୍ତମାନ ସାତଶତ ମହଣରେ ପରିଣତ ହୋଇଅଛି । ଘରର ଅଗଣାରେ ମଧ୍ୟ ଗୋଟିଏ ଧାନର ସ୍ତୂପ ବାରମାସ ଗଦାମରି ହୋଇକରି ରହିଥାଏ । ଖାତକମାନେ ରୋଜ କିଛି କିଛି ଧାନ ସୁଝି ଦେଇଯାଆନ୍ତି । ଗୋସାଇଁଜୀ ସ୍ଫୀତୋଦର ଧାନଗଦା ଓ ନିଜର ବିଶୀର୍ଣ୍ଣ ଦେହ ଆଡ଼କୁ ଚାହିଁ ନିୟତ ଚିନ୍ତାରେ ପୀଡ଼ିତ ହେଉଥିଲେ । ବଳିଷ୍ଠ ଯୁବକ ନିତାଇକୁ ପାଇ ସେ ଆଶ୍ୱସ୍ତ ହେଲେ । ନିତାଇ ଗୋସାଇଁଜୀଙ୍କର ଘରେ ବସବାସ ଆରମ୍ଭ କଲା ।

ଦିନ କେଇଟା ପରେ—ସେଦିନ ହୋଇଥାଏ ଘନ ଅନ୍ଧକାର ରାତି । ଗଭୀର ରାତିରେ ଗୋସାଇଁ ଡାକିଲେ—ନିତାଇ !

ବାହାରେ ଖୁଟ୍‌ଖାଟ୍ ଶବ୍ଦରେ ନିତାଇର ନିଦ ଭାଙ୍ଗିଯାଇଥିଲା । ସେ ଚେଇଁ ରହିଥିଲା; ଫିସ୍ ଫିସ୍ କରି କହିଲା—ଆଜ୍ଞା, ମୁଁ ଶୁଣିଛି ।

—ଗୋଳମାଳ କରନା, ଉଠିଆ । ଗୋସାଇଁଜୀ ଅଗ୍ରସର ହେଲେ । ନିତାଇ ଶୀର୍ଣ୍ଣକାୟ ଗୋସାଇଁଜୀଙ୍କର ଅକୁତୋଭୟତା ଦେଖି ଶ୍ରଦ୍ଧାନ୍ୱିତ ହୋଇପଡ଼ିଲା । ଗୋସାଇଁ ଆସି ନିଃଶବ୍ଦରେ ବାହାର ଦୁଆର ଖୋଲି ବାହାରି ପଡ଼ିଲେ । ବାହାରେ ଚାରି ବସ୍ତା ଧାନ ମୁଣ୍ଡାଇ ଚାରି ଜଣ ଲୋକ; ଧାନବସ୍ତାର ଓଜନ ଓ ଉତ୍ତେଜନାରେ ସେମାନେ ଧଇଁସଇଁ ହେଉଛନ୍ତି ଏବଂ ଥରଥର ଥରୁଛନ୍ତି । ଦରଜା ଖୋଲିବାମାତ୍ରେ ନିଃଶବ୍ଦରେ ଲୋକ ଚାରିଜଣ ପଶିଯାଇ ଅଗଣାର ଧାନଗଦାରେ ବସ୍ତାଚାରିଟା ଅଜାଡ଼ି ଦେଲେ । ରାତିର ଅନ୍ଧକାର ମଧ୍ୟରେ ବି ନିତାଇ ଧାନର ସୁନାପରି ରଙ୍ଗ ପ୍ରତ୍ୟକ୍ଷ ଦେଖିଲା; ଲୋକଗୁଡ଼ିକ କିଏସେ ଚିହ୍ନିଲା । ତାହାର ଆତ୍ମୀୟ କେହି ନ ହେଲେ ବି ପ୍ରତ୍ୟେକଟି ହିଁ ଖ୍ୟାତନାମା

ଧାନଗ୍ରେର ।

ସକାଳ ହେଲାମାତେ ଯୋଡ଼ହାତ ହୋଇ ଗୋସାଇଁଜୀଙ୍କୁ ନିତାଇ କହିଲା—ପ୍ରଭୁ, ମୁଁ ଚାକିରି କରି ପାରିବିନି !

—ପାରିବୁନି !

—ନାହିଁ ଆଜ୍ଞା ।

—ପଇସାଟିଏ ଦରମା ମୁଁ ଦେବିନି କହିଦେଉଛି । ଆଉ ଏ କଥା ପ୍ରକାଶ ପାଇଗଲେ ତୋର ଜୀବନ ରହିବନି ।

ନିତାଇ କଥାର ଉତ୍ତର ଦେଲାନାହିଁ । ତାହାର ଲୁଗାପଟା ଓ ବସ୍ତାନି ନେଇ ସେ ବାହାରି ପଡ଼ିଲା । ଆସି ପହଞ୍ଚିଲା ଗ୍ରାମର ଷ୍ଟେସନରେ ।

ଷ୍ଟେସନ୍‌ର ପଏଣ୍ଟସ୍‌ମ୍ୟାନ ରାଜା ବାସ୍ତବ ତାହାର ସାଙ୍ଗ ! ରାଜାଲାଲ୍ ଟିକିଏ ଅଦ୍ଭୁତ ଧରଣର ଲୋକ । ବିଗତ ମହାଯୁଦ୍ଧବେଳେ ତାର ଥିଲା ତରୁଣ ବୟସ । ସେ ଘଟଣାଚକ୍ରରେ କୁଲି ହିସାବରେ ଯାଇ ପହଞ୍ଚିଥିଲା ମେସୋପଟାମିଆଁରେ । ସେଠୁଆସି ସେ କାମ କରୁଛି ଏହି ଲାଇନ୍ ରେଲ୍‌ୱେରେ । ପ୍ରାଣଖୋଲା ଦିଲ୍‌ଦରିଆ ଲୋକ, ଅନର୍ଗଳ ଭୁଲ୍ ହିନ୍ଦୀ କହେ, ଘଣ୍ଟାକ କଣ୍ଠାଭଳି ଉଡ଼ଟି କରେ, ଛଅ ସାତ ଦଫା ଚାହା ଖାଏ, ପ୍ରଚୁର ମଦ ପିଏ, ଭୀଷଣ ଚିତ୍କାର କରେ, ସ୍ତ୍ରୀପୁତ୍ରଙ୍କୁ ମାଡ଼ଧର କରେ । ରାଜା ସାଙ୍ଗରେ ନିତାଇର ପରିଚୟ ଅନେକ ଦିନର; ଅର୍ଥାତ୍ ରାଜା ଏଠାକୁ ଆସିବା ପରେ ପରେ ପରିଚୟ । ସେ ପ୍ରାୟ ତିନି ବର୍ଷ ଆଗର ଘଟଣା ।

ନିତାଇ ସେଦିନ ବି ଅର୍ଥାତ୍ ପ୍ରଥମ ପରିଚୟର ଦିନ ଷ୍ଟେସନକୁ ବୁଲିବାକୁ ଆସିଥିଲା । ରାଜାର ପୁଅଟା ଟ୍ରେନ୍ ଆସିବାର ଘଣ୍ଟା ବାଜିବା ମାତ୍ରେ ପାଟିକରି କହିବାକୁ ଆରମ୍ଭ କରିଥିଲା—ହଟ୍ ଯାଓ । ହଟ୍ ଯାଓ ! ଲାଇନ୍ ପାଖରୁ ହଟ୍ ଯାଓ !

ନିତାଇକୁ ଖୁସି ଭଲ ଲାଗିଥିଲା, ସେ ପଚାରିଥିଲା—କାହା ରେ ! କାହା ପୁଅ ରେ ତୁ ?

—ମୁଁ ରାଜାର ପୁଅ ।

—ରାଜାର ପୁଅ ? କ୍ୟା ବାତ୍ ! ତାହେଲେ ତ ତୁ 'ଯୁବରାଜ' !

ରାଜା ସେଇ ପାଖରେଇ ଥିଲା; ସେ ନିତାଇ କଥା ଶୁଣି ହସି ହସି ବେଦମ୍ । ସାଙ୍ଗେ ସାଙ୍ଗେ ସେ ନିତାଇ ସଙ୍ଗେ ପରିଚୟ କରି ଦେଇଥିଲା । ଟ୍ରେନ୍ ଚାଲିଯିବା ମାତ୍ରେ ରାଜା ନିତାଇକୁ ଧରି ଏକାବେଳକେ ତାହାର କ୍ୱାଟରକୁ ଆଣି ହାଜର କରିଦେଇଥିଲା ।

ସ୍ତ୍ରୀକୁ କହିଲା—ମୋର ସାଙ୍ଗ ନୋକ ! ଉମ୍ଦା ଆଦମୀ ! ଫଟକେ କୋ କହତା ହୈ—
ରାଜା କା ବେଟା ଯୋବରାଜ । କହି ହି-ହି କରି ହସିବାକୁ ଲାଗିଲା ।

ନିତାଇ ସୋତ୍ସାହେ କବିୟାଲଙ୍କ ନକଲ କରି ଗାଲରେ ହାତ ଦେଇ, ମୁହଁ ପାଖରେ ଅନ୍ୟ ହାତଟି ରଖି, ଟିକଏ ନଇଁପଡ଼ି ରାମାୟଣ ସ୍ମରଣ କରି ଗୀତ ଧରିଥିଲା—

"ରାଜାର ବେଟା ଯୋବରାଜା, ଢେଳାର ବେଟା ମହାଢେଳା
ଖାଏ ସେ ଖାସ୍ତା ଖଜା ଗଜା ବିଦିତ ସେ ସାରା ଭୂମଣ୍ଡଳେ !"

ରାଜା ଡେଇଁପଡ଼ି ଘର ଭିତରୁ ତାହାର ପୈତୃକ ଢୋଲଟି ଓ ତାର ନିଜର କଂସା-ଘଣ୍ଟିଟି ବାହାର କରିଆଣି ନିଜେ ଢୋଲଟି ନେଇ ଘଣ୍ଟିଟି ପୁଅ ହାତରେ ଦେଇଥିଲା । ସେଇ ଘଣ୍ଟିଟା ରାଜାର ବାପ ତାକୁ ମହେଶପୁର ମେଳାରୁ କିଣି ଦେଇଥିଲା । ସେଦିନ ଦ୍ୱିପହରରେ ରାଜାର ଘରେ କବିଗାନ ଜମିଉଠିଲା । ନିତାଇ ଖାଲି ରାଜାର ପୁଅକୁ 'ଯୋବରାଜ' କହି କ୍ଷାନ୍ତ ହୋଇନାହିଁ, ରାଜାର ଘରଲୋକ ଆଡ଼କୁ ବୁଲିପଡ଼ି ଗାଇଥିଲା—

"ରାଜାର ଘର ଘରଣୀମଣି, ସିଏ ମହାମାନ୍ୟା ରାଣୀ
ଖାନ୍ତି ଯେ ବଡ଼ ବଡ଼ ଫେଣୀ କହନ୍ତି ସଚରାଚରେ ।"

ଠିକ୍ ଏତିକିବେଳେ ଆସି ପହଞ୍ଚିଲା ଆଉ ଜଣେ । ପନ୍ଦର ଷୋହଳ ବର୍ଷର ଗୋଟିଏ କିଶୋରୀ । ଝିଅଟିର ରଙ୍ଗ କଳା; କିନ୍ତୁ ତେଙ୍ଗା ଦେହଭଙ୍ଗିରେ ଭୁଇଁଚମ୍ପାର ସବୁଜ ସରଳ ଡଙ୍କ ପରି ଗୋଟିଏ ଅପରୂପ ଶ୍ରୀ । ଝିଅଟିର ମୁଣ୍ଡଉପରେ ଲୁଗାର ବିଡ଼ା ଉପରେ ଝକଝକ୍ ହୋଇ ମଜା ହୋଇଥିବା ଗୋଟିଏ ଦଡ଼ ଢାଲ, ହାତରେ ଗୋଟିଏ ବଡ଼ ଗିଲସ, ପିନ୍ଧିଛି ଦେଶୀ ତନ୍ତବୁଣା ମୋଟା ସୂତାର ଅଣଓସାରିଆ ଲୁଗା । ଲୁଗାଟିର ଭିଡ଼ା ଅଣ୍ଟା-ବାନ୍ଧୁଣୀ ଭିତରୁ ତାହାର କଳା ମଟମଟ ଲମ୍ବ ଦେହଟି ସ୍ୱାଭାବିକ ଭଙ୍ଗିଗୁଡ଼ିକ ପ୍ରକଟ କରିବାରୁ ତାକୁ ଯେପରି ଗୋଟିଏ ପୋଡ଼ାମାଟିର କଣ୍ଢେଇପରି ରୂପ ଦିଏ । ଝିଅଟି ରାଜାର ଶ୍ୟାଳିକା; ପାଖ ଗାଆଁର ବୋହୂ । ସେ ଏହି ବର୍ଦ୍ଧିଷ୍ଣୁ ଗ୍ରାମଟିରେ ପ୍ରତ୍ୟହ ଦୁଧ ଯୋଗାଇବାକୁ ଆସେ । ରାଜାର ଷ୍ଟେସନରେ ଗାଡ଼ି ପହଞ୍ଚେ ଘଡ଼ିର କଣ୍ଟା ଅନୁଯାୟୀ ଓ ଏଇ ଝିଅଟି ଆସେ—ପଶ୍ଚିମ ସମୀପବର୍ତ୍ତୀ ଦ୍ୱିପ୍ରହରର ସୂର୍ଯ୍ୟର ଅଗ୍ରଗାମିନୀ ଛାୟା ପରି । ଝିଅଟିର ସରଳ ଭୀରୁ ଦୃଷ୍ଟିରେ ବିସ୍ମୟଟି ଯେପରି କଳାଗୁମର ପାଣିର ସ୍ୱଚ୍ଛତା ପରି ସହଜାତ । ସେଦିନ ସବିସ୍ମୟରେ କିଛିକାଳ ଏହି ଦୃଶ୍ୟ ଦେଖି ଅକସ୍ମାତ୍ ଏଇ ସରଳ ଝିଅଟି ହସିବାକୁ ଆରମ୍ଭ କରିଥିଲା—ଅସଙ୍କୋଚ ଖିଲଖିଲ ହସ ।

ରାଜାର ସ୍ତ୍ରୀ କିନ୍ତୁ ରୁକ୍ଷ ସ୍ୱଭାବର ଝିଅ । ସେ ଭଉଣୀକି ଧମକେଇ କହିଥିଲା—ହସନା

ଝେଁ ଝେଁ କର । ଅଲଜୁଲା କୋହଠିକାର ।

ମୁହୂର୍ତ୍ତିକେ ଝିଅଟିର ହସ ବନ୍ଦ ହୋଇଯାଇଥିଲା । କିନ୍ତୁ ସେ ରାଗ କରିନାହିଁ ବା ଦୁଃଖିତ ହୋଇନାହିଁ ! ସ୍ୱଚ୍ଛନ୍ଦରେ ଶାସନ ମାନିନେବାଭଳି ବେତସଲତାସୁଲଭ ଗୋଟିଏ ନମନୀୟତା ତାହାର ସ୍ୱଭାବଗତ ଗୁଣ । ଦେହଟି ଖାଲି ଲତାପରି ନୁହେଁ, ମନଟା ବି ସେପରି ତାର ଲମ୍ବା ଦେହର ଅନୁରୂପ !

ନଟାଇ ବି ଚୁପ୍ ହୋଇଗଲା । ନୂଆ ଗାନ ଗାଇବାର ସମସ୍ତ ବିତିଗଲା; ତଥାପି ନଟାଇର ଆଉ ଗୀତ ଝରିଲା ନାହିଁ ଦେଖି ରାଜା ବାଜଣା ବନ୍ଦ କରିଦେଲା ଏବଂ ଝିଅଟିକି କହିଲା—ଦେଖତା! କ୍ୟା ଠାକୁରଣୀ ? ହମାର ମିତା । ଓସ୍ତାଦ୍ ଆଦମୀ । ହମାର ନାମ ହେ ରାଜା, ତୋ ଫଟ୍‌କେ କୋ ନାମ ହୁଆ ଯୋବରାଜା, ତୁମର ଅପା କୋ ନାମ ହୁଆ ରାଣୀ ! ଏତିକି କହି ଠୋ ଠୋ ହସିବାକୁ ଲାଗିଲା ।

ଏଥର କି ସେ ଠୋ ଠୋ ହସର ଛୁଆଁ ଲାଗରେ ରାଣୀ ବି ହସିବାକୁ ଆରମ୍ଭ କରିଥିଲା । ତାହା ସଙ୍ଗେ ସଙ୍ଗେ ଠାକୁରଣୀର ମଧ୍ୟ ବୁଣି ସେଇ ହସ ଆରମ୍ଭ ହୋଇ ଯାଇଥିଲା । ହସି ହସି ମଥାରୁ ଅବଗୁଣ୍ଠନ ଖସିପଡ଼ିଲା, ଆଖିରୁ ଟପଟପ କରି ପାଣି ଝରିପଡ଼ିଲା; ତଥାପି ତାର ସେ ହସ ବନ୍ଦ ହେଲନାହିଁ ।

ହସ ବନ୍ଦ କରି ରାଜା କହିଥିଲା—ଓସ୍ତାଦ୍ ! ଇ କାଳକୋଇଲି ହମାର ଠାକୁରଣୀ ହୈ । ଇସ୍‌କା କ୍ୟା ନାମ ଦେଗା ଭାଇ ?

ନଟାଇ ମୁଗ୍ଧ-ଦୃଷ୍ଟିରେ ଝିଅଟିକୁ ଚାହିଁଥିଲା । ତାହାର ସର୍ବାଙ୍ଗରେ କଅଁଳ ପତ୍ର ପରି ଯେଉଁ କୋମଳ ଘନଶ୍ୟାମ ଶ୍ରୀଟି ରହିଛି, ତାହା ଦେଖି ତାକୁ ନେଇ କିଛି ରହସ୍ୟ କରିବାକୁ ନଟାଇର ପ୍ରବୃତ୍ତି ହେଲାନାହିଁ । ସେ କହିଥିଲା—ଠାକୁରଣୀ ଭାଇ ଠାକୁରଣୀ, ତାର ଅଉ ଦୋହରା ନାଁ ହୁଏନା । ମୋର ଠାକୁରଣୀ ବି ଠାକୁରଣୀ, ରାଜାର ଠାକୁରଣୀ ବି ଠାକୁରଣୀ । ଠାକୁରଣୀ ଆମ ସମସ୍ତଙ୍କର ଠାକୁରଣୀ । ନା କଣ ମ ଠାକୁରଣୀ ?

ରାଜା ନଟାଇର ଯୁକ୍ତିତର୍କ ଦେଖି ଅବାକ୍ ହୋଇଯାଇଥିଲା । ଗମ୍ଭୀର ଭାବରେ ମୁଣ୍ଡ ହଲାଇ ସେ ସ୍ୱୀକାର କରିଥିଲା—ହାଁ, ହାଁ, ଠିକ୍, ଠିକ୍, ଇ ବାତ୍ ତୋ ଠିକ୍ ହୈ ! ଠାକୁରଣୀ ଠାକୁରଣୀ !

ତାହାପରେ ରାଜା କାଢ଼ିଥିଲା ମଦ ବୋତଲ—ଆଓ ଭାଇ ଓସ୍ତାଦ୍ !

ନଟାଇ ହାତ ଯୋଡ଼ି କହିଥିଲା—ମାଫ୍ କର ଭାଇ ରାଜନ୍ । ସେ ଜିନିଷ ମୁ ଛୁଏଁ ନା ।

—ତବ୍ ? ତବ୍ ତୁମ୍ କ ଖାଏଗା ଭାଇ ?

ଠାକୁରାଣୀ ଚିତ୍କାରିଲେ— ଦୁଧ ପିଇବ, ଦୁଧ ? କହୁକହୁରେ ତାର ପୁଣି ସେହି ଗିଳିଗିଳି ହସ ।

ନଟାଇ ହସିଥିଲା—ସେଟା ଆଉପାରେ । ଭୂମଣ୍ଡଳରେ ଏପରି ଜିନିଷ କଣ ଅଛି ? ନେବୁଲ୍ଲି ଭ ।

ଠାକୁରାଣୀ ସତେକି ମଡ଼ ବଡ଼ ଚୋଟରୁ ସାପ ଗିଳାଯିବେ ଫୁରଫୁର ଚିଲଠେ ଦୁଧ ଡାକି ନଟାଇ ଆଜଳେ ଲୋଭ ଦେଇ ତାହାର ଅଭ୍ୟସ୍ତ ଦ୍ରୁତଗମନରେ ପ୍ରାୟ ପଳାଇ ଯାଇଥିଲା ।

ଏସବୁ ପୁରୁଣା କଥା ।

ରଜା ଏବେ ତାର ଅନେକ ବନ୍ଧୁ, ଗୁଣମୁଗ୍ଧ ଭକ୍ତ ।

ମୋଷ୍ଟ ଥିଲା ଜଗେ ଗୋସାଇଁଙ୍କଠୁ ବୃକଟରୁ ଲମ୍ଫ ଦେଇ ନଟାଇ ଆସି ପହଞ୍ଚିଲା ଷ୍ଟେସନରେ । ଶୁଣି ଖୁସିହୋଇ ରଜା କହିଲା—ଠିକ୍ କମ୍ପା ଓସ୍ତାଦ୍ । ବହୁତ୍ ଠିକ୍ କମ୍ପା ହୁଇ ।

—ସତେ ଗୁରୁ ତମର ଏଠି ଟିକିଏ ଜାଗା ଦବାକୁ ହବ ।

—ଅଲବତ୍ ଦେଗା । ଜରୁର୍ ଦେଗା ।

—ଏଇଟି ରହିବି, ଆଉ ଷ୍ଟେସନରେ ମୋଟ ବୋହିବ । ମୋର ତ ଗୋଟିଏ ବୋଲି ପେଟ, ହେଇଥିରେ ଚଳିଯିବ ।

ରେଲୱେ କନ୍‌ଷ୍ଟ୍ରକ୍‌ସନ୍ ସମୟରେ ଏହି ଷ୍ଟେସନଟି ଏ ଲାଇନର ଗୋଟିଏ ପ୍ରଧାନ କର୍ମକ୍ଷେତ୍ର ଥିଲା । ସେତେବେଳେ ଦରକାର ଅନୁଯାୟୀ ଅନେକ ଘରବାଡ଼ି ତିଆରି ହୋଇଥିଲା, ସେସବୁ ଏବେ ପଡ଼ିରହିଛି । ରଜା ତାହାର ଭିତରୁ ଗୋଟିକରେ ଓସ୍ତାଦ୍‌ର ବାସସ୍ଥାନ ନିର୍ଦ୍ଦିଷ୍ଟ କରିଦେଲା । ନଟାଇ ବର୍ତ୍ତମାନ କୁଲିଗିରି କରେ, ଭଦ୍ର-ଲୋକଙ୍କ ମୋଟ ଚଢ଼ାଇ ଦିଏ, ଓହ୍ଲାଇ ନିଏ, ଗ୍ରାମାନ୍ତରକୁ ବି ମୋଟ ନେଇ ପହଞ୍ଚାଇ ଦିଏ । ତାହାର ବେଶ୍ ଦିପଇସା ଉପାର୍ଜନ ହୁଏ । ଷ୍ଟେସନରେ ମାଲ ଚଢ଼ାଇବା ଓହ୍ଲାଇବାର ମଜୁରି ଦି ପଇସା, ଏହି ଗ୍ରାମ ଭିତରକୁ ଗିବାକୁ ହେଲେ ଚାରି ପଇସା, ଗ୍ରାମାନ୍ତର ହେଲେ ରେଟ୍ ଦୂରତ୍ୱ ଅନୁଯାୟୀ । ଅନ୍ୟ କୁଲିଙ୍କ ଅପେକ୍ଷା ନଟାଇର ରୋଜଗାର ବେଶୀ; କାରଣ ତାହାର ସହାୟ ସ୍ୱୟଂ ରଜା ।

ଷ୍ଟେସନ ଷ୍ଟଲଟି ସେମାନଙ୍କର ଗୋଟିଏ ଆଡ଼୍ଡା । ଷ୍ଟଲର ଭେଣ୍ଡର 'ବେନେ ମାମୁ' ହସି ହସି ଅଟ୍ଟାକରି ନଟାଇକୁ କହେ—ରଜ-ବୟସ୍ୟ ।

ମାମୁର ଦୋକାନରେ ସଜୀବ-ବିଜ୍ଞାପନ ପରି ବାତବ୍ୟାଧିରେ ଅଚଳ, ଅଥ ପ୍ରଗଳଭ ବିପ୍ରପଦ କହେ—ବୟସ୍ୟ ଗୋଟାଏ କିଣ ରେ ଟୋକା ? ବୟସ୍ୟ କିଣ ? ସଭାକବି, ରାଜାର ସଭାକବି ।

ନିତାଇ ବିପ୍ରପଦର ପଦଧୂଳି ନେଇ 'ପ୍ରୁଣ୍ଡ' କରି ଶବ୍ଦ କରି ମୁହଁରେ ଦିଏ *; ସଭାକବି କଥାଟା ଶୁଣି ଭାରି ଖୁସି ହୋଇଯାଏ । ବିପ୍ରପଦକୁ ତାର ଭାରି ପସନ୍ଦ । ଏତେ ଯନ୍ତ୍ରଣାଦାୟକ ରୋଗରେ ବି ଏଭଳି ଖୁସିବାସିଆ ଲୋକ ଦେଖିବାକୁ ମିଳେ ନାହିଁ । ବାତବ୍ୟାଧିଗ୍ରସ୍ତ ବିପ୍ରପଦ ସକାଳ ପହରୁ ଉଠି କୌଣସି ପ୍ରକାରେ ଗ୍ରେଟେଇ ଗ୍ରେଟେଇ ଷ୍ଟେସନକୁ ଆସି ମାମୁ ଦୋକାନରେ ଆଡ୍ଡା ଜମାଏ, ବେଞ୍ଚ ଉପରେ ବସି ଅନର୍ଗଳ ଗପୁଥାଏ, ଲୋକମାନଙ୍କୁ ଗୁହା ଖାଇବାକୁ ଉତ୍ସାହିତ କରି ମଝିରେ ମଝିରେ ପାଟିଟାଏ କରେ—ଗୁ ଗରମ ! ଗୁ ଗରମ ! ଦେହଟା ତାର ଯେତିକି ଅଚଳ, ଜିହ୍ୱା ସେତିକି ସକ୍ରିୟ । ଉତ୍କଟ ରସିକ ବ୍ୟକ୍ତି, 'ବସୁଧୈବ କୁଟୁମ୍ବକମ୍' ମିଜାଜର ମଣିଷଟା । ମାମୁ ଦୋକାନରେ ସକାଳ ପହରୁ ଆସି ବିପ୍ରପଦ ଗୁହା ବଡ଼ା ଖାଇ ଖାଇ ଦିନ ବାରଟାବେଳେ ଘରକୁ ଫେରେ ଖାଇବା ସକାଶେ । ଖାଇ, କିଛି ସମୟ ଶୋଇ ଦିନ ତିନିଟା ବେଳକୁ ପୁଣି ଗ୍ରେଟେଇ ଗ୍ରେଟେଇ ଷ୍ଟେସନକୁ ଆସି ବସେ । ଯାଏ ରାତି ଦଶଟା ଟ୍ରେନ୍‌ଟି ପାରି କରି ସାରିଲେ । ବିପ୍ରପଦ ସାଙ୍ଗରେ ନିତାଇର ବେଶ୍ ଜମେ । ସେ ପଦଧୂଳି ନେଲେ, ବିପ୍ରପଦ ସ୍ୱରଚିତ ସଂସ୍କୃତ ଶ୍ଲୋକ ନେଇ ଆଶୀର୍ବାଦ କରେ—

"ଭବ କପି, ମହାକପି ଦଗ୍‌ଧାନନ ସଲାଙ୍ଗୁଳ —"

ହାତଯୋଡ଼ି ନିତାଇ କହେ—ପ୍ରଭୁ, କପି ମାନେ ମୁଁ ଜାଣେ ।

ବିପ୍ରପଦ ହସି ଭୁଲ ସ୍ୱୀକାର କରି କହେ—ଅହୋ ! କପି ନୁହେଁ, କପି ନୁହେଁ; କବି, କବି । ମୋର ଭୁଲ ହୋଇଗଲା । ଆଚ୍ଛା ତୁ ତ କବି ନିଶ୍ଚୟ, କହିଲୁ ଦେଖି—ଶକୁନି ଖେଳିଲା ପଶା, ରାଜ୍ୟ ପାଇଲା ଦୁର୍ଯ୍ୟୋଧନ, ବାଜି ରଖିଲା ଯୁଧିଷ୍ଠିର; କିନ୍ତୁ ଭୀମର ଭେଣ୍ଡିଆ ପୁଅ ଘଟୋତ୍କଚ ମଲା କୋଉ ପାପରେ ?

ନିତାଇ ସଙ୍ଗେ ସଙ୍ଗେ ଉଠି ଠିଆହୋଇ କବି-ଗାଉଣା ଆରମ୍ଭ କରିଦିଏ । ବାଁ ହାତ ଗାଲରେ ଚାପି ମୁହଁ ଆଗରେ ଡାହାଣ ହାତ ଘୋଡ଼ାଇ ରଖି ଟିକିଏ ଝୁଙ୍କିପଡ଼ି ସ୍ୱର ଧରି ଆରମ୍ଭ କରେ—ହାୟ—ହାୟ ରେ—ଘଟୋତ୍କଚ ମଲା କୋଉ ପାପେ ?

* ବଙ୍ଗଳାରେ ପ୍ରଚଳିତ ସର୍ବୋଚ୍ଚ ସମ୍ମାନ ପ୍ରଦର୍ଶନର ଭଙ୍ଗୀ ।

ରାଜା ଭାବେ, ଢୋଲକଟା ଯେଉଁଆସିବ ନା କଣ ? କିନ୍ତୁ ସେତିକି ଆଉ ହୋଇ ପାରେନା । ଏତିକବେଳକୁ ବାରଟା ବେଳର ଟ୍ରେନ୍ ଆସିବାର ଘଣ୍ଟା ବାଜିଯାଏ ।

ଦୂର-ଦୂରାନ୍ତରର ଅଧିକାଂଶ ଯାତ୍ରୀ ପାଏ ନତାଇ । ଷ୍ଟେସନର ଜମାଦାର ରାଜାର ସୁପାରିଶକ୍ରମେ ଯାତ୍ରୀମାନେ ନତାଇକୁ ହିଁ ନେଇଥାନ୍ତି । ନତାଇର ବ୍ୟବହାର ମଧ୍ୟ ସେମାନଙ୍କର ପସନ୍ଦ ହୁଏ ।

ମଜୁରି କଥା ପଚାରିଲେ ନତାଇ ସବିନୟରେ କହେ—ପ୍ରଭୁ, ଆକାଶ ଆଡ଼େ ଦୃଷ୍ଟି ଦିଅନ୍ତୁ ଥରେ । ଗ୍ରୀଷ୍ମକାଳ ହୋଇଥିଲେ କହେ—ଦିନମଣିର କିରଣଟା ଥରେ ବିବେଚନା କରିବା ହେଉ । ବର୍ଷାଦିନେ କହେ—ଘନକୃଷ୍ଣ ମେଘର ଆଡ଼ମ୍ବରଟା ଥରେ ଦେଖନ୍ତୁ ମାଲିକେ ! ଶୀତଦିନେ କହେ—ଶୈତ୍ୟ କଥାଟା ଥରେ ଭାବନ୍ତୁ ବାବୁ !

ମାମୁ ଦୋକାନରେ ବସି ବିପ୍ରପଦ ନତାଇକୁ ସମର୍ଥନ କରେ; କହେ—ଆଜ୍ଞା ହଁ । ଆପଣମାନଙ୍କର ତ ସବୁ ଶାଲ-ଦୋଶାଲ ଅଛି—ଯ୍ୟାର ଯେ କୋଉ ଶଳା ଇ ନାହିଁ । ଯ୍ୟା କଷ୍ଟଟା ବୁଝି ଦେଇନ୍ତୁ ଥରେ !

ଦ୍ୱିପ୍ରହରରେ ବାହାରକୁ ଯିବାକୁ ହେଲେ ନତାଇ ରାଜାକୁ କହିଯାଏ—ରାଜନ୍, ଠାକୁରାଣୀ ଆସିଲେ ଦୁଧ ନେଇ ରଖିଥିବ ।

ଏଠି ରହିଲାପରେ ବାରଟାବେଳର ଗାଡ଼ି ଚାଲିଗଲେ ନତାଇ ଟିକିଏ ଆଗେଇଯାଏ । ପଏଣ୍ଟ ପାଖରେ ଲାଇନ କଡ଼ରେ ଯେଉଁ କୃଷ୍ଣଚୂଡ଼ା ଗଛଟି ରହିଛି ତାହାର ଛାଇତଳେ ଯାଇ ଠିଆହୁଏ । ଦ୍ୱିପ୍ରହରରେ ସେତେବେଳେ ଖରା ପଡ଼ି ଲୁହା ଲାଇନ ଉପରର ଘଷା ଅଂଶଟା ସୁଦୀର୍ଘ ରେଖା ହୋଇ ଚକମକ୍ କରେ । ଯେଉଁଠି ଲାଇନଟି ବାଙ୍କ ବୁଲିଛି, ସେହିଠାରେ ନତାଇ ନିବିଷ୍ଟ ମନରେ ଦୃଷ୍ଟି ଆବଦ୍ଧ କରି ଠିଆହୁଏ । ସହସା ସେଠାରେ ଶୁଭ୍ର ଗୋଟିଏ ଚଳନ୍ତ ରେଖା ପରି ରେଖା ଦେଖାଯାଏ; ରେଖାଟି ଉପରେ ଗୋଟିଏ ସ୍ୱର୍ଣ୍ଣବିନ୍ଦୁ । ଉପରେ ସ୍ୱର୍ଣ୍ଣ ରଙ୍ଗର ବିନ୍ଦୁ ସହ ଶୁଭ୍ର ଚଳନ୍ତ ରେଖାଟି ଆଗେଇ ଆସୁ ଆସୁ କ୍ରମଶଃ ପରିଣତ ହୁଏ ଗୋଟିଏ ମଣିଷରେ । ଖାରଦେଇ କିଛି ତନ୍ତର ମୋଟା ସୂତାର ସେହି ଅଣଓସାରିଆ ଲୁଗାଟାକୁ ଆଣ୍ଠୁକରି ଉଡ଼ି ପିନ୍ଧିଥିବା ସେହି ଗୋଟିଏ କଳା ଦୀର୍ଘାଙ୍ଗୀ ଝିଅ; ଏବଂ ତାହା ମଥାରେ ଗୋଟିଏ ଚକଚକ୍ ମଜା ସୁନା ରଙ୍ଗର ପିତଳ ଡାଲ । ଡାଲଟି ସେ ଧରି ନଥାଏ । ହାତକେ ମାପିବା ଗିଲସ, ଅନ୍ୟ ହାତଟି ଝୁଲୁଥିବ । ସେ ଦ୍ରୁତପାଦରେ ଅବଲୀଳାକ୍ରମେ ଚାଲିଆସୁଥାଏ । ଝିଅଟି ଚାଲେ ଦ୍ରୁତଭଙ୍ଗୀରେ; ଆଉ କଥାରେ ଥାଏ ଦ୍ରୁତ-ଭଙ୍ଗୀ । ଏହି ଝିଅଟି ସେହି ଠାକୁରାଣୀ ।

ନତାଇ ନିଶାରେ ଆସକ୍ତ ନୁହେଁ; କିନ୍ତୁ ଦୁଧ ତାର ପ୍ରିୟ ବସ୍ତୁ । ତାହା ପ୍ରତି ଆସକ୍ତି ବି ତାର କ୍ରମଶଃ ବଢ଼ୁଅଛି । ଠାକୁରାଣୀ ପାଖରୁ ସେ ନିତି ପାଏ ଲେଖାଏଁ ଦୁଧ

ଲଗୁଆ ନେଇଥାଏ । ଦୁଧ ଆସିଲେଇ ସେ ଚାହାଲାଗି ପାଣି ବସାଇଦିଏ । ମାମୁ ଦୋକାନରେ ଚାହା ଖାଇଲେ ଦାମ୍ ଗଣିବାକୁ ହୁଏ ଦିପଇସା ପ୍ରତି କପ୍ । ବିପ୍ରପଦ ପରି ବିନା ପଇସାରେ ଚାହା ଖାଇବାର ଅଧିକାର ତାହାର ନାହିଁ । ତା ଛଡ଼ା ଭଲ ଲଗେନା; କେମିତି **ଗ୍ରେଟ ଗ୍ରେଟ** ମନେ ହୁଏ ।

ଷ୍ଟେସନରେ ନିତି ନାନା ସ୍ଥାନର ଲୋକଙ୍କର ଯା-ଆସ । ପାଖଆଖର ଖବର ଷ୍ଟେସନରେ ବସିକରି ମିଳେ । ଖବର ଭିତରେ କବି-ଗାଉଣାର ଖବର ଥିଲେ ନିତାଇ ଉଲ୍ଲସିତ ହୋଇପଡ଼େ । ସେଦିନ ସନ୍ଧ୍ୟା ସନ୍ଧ୍ୟା ନାଲିଧଡ଼ିଆ ସଫା ଧୋତି ଓ ହାତକଟା ଜାମା ପିନ୍ଧି, ମୁଣ୍ଡରେ ପଗଡ଼ି ବାନ୍ଧି ଦେଶ ହୁଏ ଏବଂ ଗୁଣୁ ଗୁଣୁ କରି କବିଗାନ ଗାଇ ଗାଇ ରାଜାକୁ ଆସି ତାଗିଦା ଦିଏ । ମିଲିଟାଙ୍କ ରାଜା ସାଢ଼େ ଆଠଟା ବେଳର ଟ୍ରେନ୍ ପାରକରିଦେଇ କହେ— ଫାଇଭ୍ ମିନିଟ୍ ଓସ୍ତାଦ୍ ।

ପାଞ୍ଚ ମିନିଟ ବି ତାର ଲଗେନା, ତିନି ମିନିଟ ଭିତରେଇ ରେଲୱେ କମ୍ପାନି ଦେଇଥିବା ନେଳିଆ କୁର୍ତ୍ତାଟା ପିନ୍ଧି ଷ୍ଟେସନର ଏକମୁହାଁ ବାଟ ଓ ଠେଙ୍ଗା ଧରି ବାହାରି ପଡ଼େ । ଭୋର ହେବା ଆଗରୁ ପୁଣି ଫେରିଆସେ । ଖାଲି କବିଗାଉଣା ନୁହେଁ, ଯାତ୍ରା ସୁଆଙ୍ଗ, ମେଳା—ଏସବୁ ନିତାଇକୁ ଭଲ ଲଗେ । ଆହା, ଆଲୋକୋଜ୍ଜ୍ୱଳ ଉତ୍ସବମୁଖର ରାତି ଭିତରେ ଇ ଯଦି ପୂରା ଜୀବନଟା ତାର କଟିଯାନ୍ତା, ତାହେଲେ କେତେ ଭଲ ହୁଅନ୍ତା !

ମନର ଏହି ବାସନାଟିକି ସେ ଦିଧାଡ଼ି ଗୀତରେ ବାନ୍ଧିରଖିଛି । ନିର୍ଜନ ପ୍ରାନ୍ତର ପାଇଲେ ଗାଇକରି ସେ ନିଜକୁଇ ଶୁଣାଏ; ଆଉ ଶୁଣାଏ କେଉଁ ରସିକ ଭାଇଙ୍କି । ସେ ରସିକ ଭାଇ ତାର ରାଜନ ।

"ସେଇ ମେଳକୁ କେବେ ଯିବି
ଠିକଣା କଣ ହାୟ ରେ
ଯୋଉ ମେଳଣେ ଗୀତ ସରେନା
ରାତି ଅନ୍ଧାର ନାହିଁ ରେ
ହୋ ରସମସ୍ତ ଭାଇ ରେ ।"

ରାଜା ଶୁଣିକରି ବାହା ବାହା କରି କୁଣ୍ଢେଇ ପକେଇ କହେ—ଓସ୍ତାଦ୍, ତୁମ ଭାଇ ଗାନା ତେହ୍ୱାର୍ କରୋ । ଆଚ୍ଛା ଗାନା ଆତା ତୁମାରା !

ଗୀତ ତାହାର ଅନେକ ରହିଛି । କିନ୍ତୁ କୋଉଟା ହେଲେ ସମ୍ପୂର୍ଣ୍ଣ ହୋଇ-

ପାରେନା ।

ହଠାତ୍ ଚଣ୍ଡୀମାଆଙ୍କ ମେଳାରେ ଏଇ ନଟାଇ ସତସତିକା କବିୟାଲ ହୋଇ ପଡ଼ିଲା ।

## ଗୁରୁ

କବି-ଗାଉଣାର ପାଲି ଶେଷରେ ଚଣ୍ଡୀମାଆଙ୍କ ପ୍ରସାଦୀ ସିନ୍ଦୂରବୋଳା ଶୁଖିଲା ବେଲପତ୍ର-ମାଳଟି ଗଳାରେ ଝୁଲାଇ ନଟାଇ ମେଳାରୁ ଘରକୁ ଫେରୁଥିଲା ରାଜଦଣ୍ଡ ମାଲ୍ୟକଣ୍ଠେ ଆଗକାଳର ଦିଗ୍‌ବିଜୟୀ କବିଙ୍କ ପରି । ଯେପରି ଗୋଟାଏ ଖବର ନିଶାରେ ମାତାଲ ହୋଇ ବାଟ ଚାଲୁଥାଏ । ମନେ ମନେ ସେ ଖୁବ୍ ଅନୁଭବ କରୁଥାଏ ଯେ, ସେ ଜଣେ ବିଶିଷ୍ଟ ବ୍ୟକ୍ତି, ସେ ଜଣେ କବି ।

ବାଟଯାକ ତାହାର ଆତ୍ମୀୟସ୍ୱଜନ, ଯେଉଁମାନେ ଏପର୍ଯ୍ୟନ୍ତ ତାହା ସଙ୍ଗେ କୌଣସି ସମ୍ପର୍କ ବି ରଖୁନଥିଲେ, ଆଜି ସେମାନେ ତାକୁ ଘେରି କଳରବ କରି କରି ସଙ୍ଗରେ ଆସୁଥିଲେ । ସେମାନଙ୍କ କଳକୋଳାହଳ କିନ୍ତୁ ବି ତା କାନକୁ ପହଞ୍ଚୁ ନଥିଲା ।

ରାଜା ଆସୁଥିଲା ତା ଦେହକୁ ଲାଗି । ଓସ୍ତାଦ୍‌ର ଗୌରବରେ ଛାତି ତାର ଫୁଲି-ଉଠିଅଛି; ସେ ବାଟ ଚାଲୁଥିଲା ସଭାକବିର ଗୌରବଦୃପ୍ତ ରାଜା ପରି । ଅନର୍ଗଳ ସେ ଲୋକମାନଙ୍କୁ ସାବଧାନ କରୁଥିଲା—ହଟ୍ ଯାଓ, ହଟ୍ ଯାଓ, ଏତନା ନଗିଚ ମେ କେଁୟା ଆତା ହେ ? ହଟ୍ ଯାଓ । ଉତ୍ସାହର ପ୍ରାବଲ୍ୟରେ ଆଜି ତାହାର ଭୁଲ୍ ହିନ୍ଦୀ କହିବାର ମାତ୍ରାଟା ବଢ଼ିଯାଇଛି । ରାଜାର ସ୍ତ୍ରୀ ଓ ଠାକୁରାଣୀ ଟିକିଏ ପଛରେ ଆସୁଥିଲେ । ନଟାଇର ଆତ୍ମୀୟମାନଙ୍କ ସହିତ ରାଜାର ସ୍ତ୍ରୀ ବକ୍‌ବକ କରି ବକିଯାଉଥିଲା—ତମେସବୁ ତ ମା' ଏହାକୁ ତଡ଼ିଦେଇଥିଲ । ଏଇ ତ ଟେସନ, ତମମାନଙ୍କ ଘରୁ ଦୁଆରୁଠଉଁ ଦେଖାଯାଏ, କାହିଁ, କୋଉ ଦିନ ନଟାଇର ଖବର ନେଇଛ ?

ଠାକୁରାଣୀ ଝିଅଟି ଅନ୍ଧାର ଭିତରେ ଭୀରୁ ଦୃଷ୍ଟିରେ, ଯେ ଯେତେବେଳେ କଥା କହୁଥାଏ, ତାହାରି ମୁହଁକୁ ଅନାଉଥାଏ । ପାଖ ଗ୍ରାମରେ ତାର ଶ୍ୱଶୁର ଘର, ମେଳା ଉପଲକ୍ଷରେ ସେ ଆଜି ଅପାଘରକୁ ଆସିଅଛି; ରାତିରେ ସେଇଠାରେ ରହିବ, ଭୋରରୁ ଉଠି ଚାଲିଯିବ । ତାହାର ବଡ଼ ଇଚ୍ଛା ହେଉଥାଏ ଓସ୍ତାଦ୍‌କୁ କେତୋଟି କଥା

କହିବାକୁ ?—ତମେ ଏତେ କଥା କେମିତି ଶିଖିଲ ? ଅପାଘରେ ଗାଆଣଗିରି କରୁଥିଲ, ଆମେ ହସୁଥିଲୁ । ବାବାରେ, ଏତେ ଲୋକଙ୍କ ଛାମୁରେ—ସେଇ କେତେବଡ଼ ଗାଆଣ ସାଙ୍ଗରେ !—ବାବା ! କଳ୍ପନାମାନେ ହିଁ ଅନ୍ଧାରର ଆବରଣ ମଧ୍ୟରେ ସମସ୍ତଙ୍କ ଅଜ୍ଞାତରେ ମଝିରେ ମଝିରେ ତାହାର ଦୃଷ୍ଟି ବିସ୍ମୟରେ ବଡ଼ ହୋଇଯାଉଥିଲା ।

ଚଣ୍ଡୀତଳାରୁ ଉତ୍ସାହ ଭିତର ଦେଇକରି ଷ୍ଟେସନର ରାସ୍ତା । ନିତାଇର କେତେ ଜଣ ଆତ୍ମୀୟ ଆଜି ତାକୁ ଆହ୍ୱାନ କଲେ—ଘରକୁ ଆ ।

ନିତାଇର ମାଆ ଆଉ ଏଠି ରହେନା, ସେ ତାର କନ୍ୟାର ଆଶ୍ରୟ ନେଇ ଗ୍ରାମାନ୍ତରେ ଜୋଇଁଘରେ ଥାଏ । ଜୋଇଁ ଏ ଅଞ୍ଚଳର ବିଖ୍ୟାତ ଦଙ୍ଗାବାଜ ଲଠିଆଲ । ରାତିରେ ଡକେଇତି କରେ, ଗୋପନରେ ମଦ ରାନ୍ଧି ବିକ୍ରୟ କରେ, ଭଙ୍ଗା ଘରେ ବସି ରନ୍ଧା ମଦ ଖାଏ ଓ ସେରଦେଶିଆ ମାଛ କିଣେ । ନିତାଇର ମାଆ ଖାଲି ଝିଅଲାଗି ନୁହେଁ, ସେହି ରନ୍ଧା ମଦ ଓ ମାଛର ପ୍ରଲୋଭନରେ ହିଁ ସେଠାରେ ଏକ୍ଷଣି ବାସ କରୁଅଛି । ନିତାଇ ଥରେ ନିଜର ଭଙ୍ଗା ଘରଟା ଆଡ଼କୁ ଚାହିଁ ଟିକିଏ ହସିଲା, କହିଲା—ନା, ମୋ ବସାକୁଇ ଯାଉଛି ।

ଠିକ୍ ଏହି ମୁହୂର୍ତ୍ତରେହିଁ ଗୋଟାଏ ରୁଢ଼କଣ୍ଠର କେତେକ ଟାଣ ଟାଣ ବାକ୍ୟ ଅଧ ଅନ୍ଧକାରରେ, କେଉଁ ନିଷ୍ଠୁର ହସ୍ତରୁ ଫୋପଡ଼ା ହୋଇଥିବା କେତେକ ପଥର ଖଣ୍ଡ ପରି ନିତାଇକୁ ଆସି ଆଘାତ କଲା—ଏଇ ସୁଅର୍—ସିଦ୍ଧୁ କୁଆଡ଼େ ? ରହ ।

ସେ ତାହାର ମାମୁର କଣ୍ଠସ୍ୱର । ମାମୁ ଏଠାକାର କୁଳାଧିପତି । ସେମାନଙ୍କ ସ୍ୱଜାତିଙ୍କର ନୈଶାଭିଯାନର ଦଳପତି । ପ୍ରବଳ ପରାକ୍ରମୀ ।

ନିତାଇ ଚମକି ପଡ଼ିଲା ।

ସାହିର ଗଳିମୁଣ୍ଡଠାରୁ ମାମୁ ଓହ୍ଲାଇ ଆସି ତାହାର ସାମନାରେ ଠିଆହେଲା—ପ୍ରହ୍ଲାଦ ଆଗରେ ହିରଣ୍ୟକଶିପୁ ଭଳି ଏବଂ ଝପ୍‌କରି ତାର ତଣ୍ଟିଟା ଚିପିଧରି କହିଲା—ତୋ ବାପଦାଦାଙ୍କୁ ଗାଳି ଖୋଇଲୁ ଖୋଇଲୁ, ମୋ ବାପାଦାଦାଙ୍କୁ ଗାଳି ଖୋଇଲୁ କାହିଁକି ସଭାଟା ମଝିରେ ? ସୁଅର କା ବଚ୍ଚା, ସୁଅର୍ ।

ମୁହୂର୍ତ୍ତକରେ ସମସ୍ତେ ହତଭମ୍ବ ହୋଇଗଲେ । ରାଜନ୍ ପର୍ଯ୍ୟନ୍ତ । ନିତାଇର ମାମୁର ହାତ ସଣ୍ଡାସିଠାରୁ ଶକ୍ତ । ଲୁହାର ତାଲ ସେହି ହାତର ମୋଡ଼ା ଖାଇ ମଡ଼୍ କରି ଭାଙ୍ଗି ଯାଏ । ନିତାଇର ଶ୍ୱାସ ରୁଦ୍ଧହୋଇ ଆସୁଥିଲା । କିନ୍ତୁ ସେ କବିଗାନ କଲେ କଣ ହେବ, ସେହି ମାମୁରଇ ଭଗିନେୟ, ସେହି ବଂଶର ହିଁ ସନ୍ତାନ । ଦେହର ଶକ୍ତି ତାହାର ବି କିଛି କମ୍ ନୁହେଁ । ତଥିଉପରେ ପ୍ରଥମ ଜୁଆନ୍ ବୟସ । ସେ ଦୁଇ ହାତ ଦେଇ ମାମୁର ହାତଟା ଟାଣିଧରିଲା । ପର ମୁହୂର୍ତ୍ତରେ ରାଜନ୍ ଆଗେଇ ଆସିଲା—ଛେଡ଼ୋ !

ମାମୁର କିଛି ହତ୍ୟା କରିବାର ସଙ୍କଳ୍ପ ନ ଥିଲା; ଇଚ୍ଛା ଥିଲା ଖାଲି ଶାସନ କରିବା । ତେଣୁ ନିତାଇର ବେକ ଛାଡ଼ିଦେଇ ସେ କହିଲା—ଯା । ଆଉ ଏ ସାହିର ରାସ୍ତା ମାଡ଼ିବୁନି । ମହାଦେବ କବିୟାଲ ସେହି ଗୋଟାଏ କଥା ଠିକ୍ କହିଛି—ଝାଉଗଦାର ଅଇଣ୍ଠା ପତର ସରଗେ ଯିବାର ଆଶା ଗୋ !—କହି ସେ ଯେମିତି ଅତର୍କିତରେ ଆସିଥିଲା, ସେହିପରି ଚକିତରେ ଛାଡ଼ିଦେଇ ଚାଲିଗଲା ।

ସମବେତ ଲୋକେ ଚୁପ୍ ହୋଇ ରହିଥିଲେ—ସ୍ତବ୍ଧ ହୋଇ କରି ହିଁ ରହିଲେ । ରାଜନ ଖାଲି ଚିତ୍କାର କରିବାକୁ ଚେଷ୍ଟାକଲା—ଇ କ୍ୟା ହୈ ? ଇ କ୍ୟା ବାତ୍ ? ଆଃ ? କ୍ୟା ଖେଲ କା ଘର ହୈ ?

ସାହି ଭିତରୁପଟୁ ଅଳ୍ପ ଗୋଟାଏ ହୁଙ୍କାର ଆସିଲା—ଯାଃ—ଯାଃ—ପାଟିଟା କରନା ରେ ସ୍ୟାହାପ କଲି ! —

ନିତାଇ ରାଜନ୍‌ର ହାତ ଜାବୁଡ଼ି ଧରିଲା । କହିଲା—ରାଜନ୍, ଚୁପ୍ କର । ଚାଲ, ସେ ମୋର ପାପ ହଇ ! ଚାଲ । କହି ହସିଦେଲା, କହିଲା—ଆଜିଠାରୁ ଅକୂଳରେ ଭାସିଲି ମୁଁ । ସେହି ଅକୂଳରେ ତୁମେ ମୋର ଭେଳା !

ରାଜନ୍ ତାର ହାତଦୁଇଟି ଜାବୁଡ଼ି ଧରି ଗଦ୍‌ଗଦ କଣ୍ଠରେ କହିଲା—ତୁମ୍ ସଚ୍ଚା ଆଦମୀ ଓସ୍ତାଦ୍ ।

ନିତାଇ ପୁଣି ଟିକିଏ ହସିଲା । ପଛଆଡ଼େ ଫୁକୁ ଫୁକୁ କରି କାନ୍ଦୁଥିଲା ଠାକୁରଝି । ନିତାଇର ସ୍ତ୍ରୀ କହିଲା—ମଲା ! କାନ୍ଦୁଚୁ କାହିଁକି ଲୋ !

ଭିଡ଼ ସେତେବେଳକୁ କମିଯାଇଛି । ସଙ୍ଗର ଲୋକବାକ ଯେଝା ଘରକୁ ପଳେଇ-ଗଲେଣି, ନିତାଇ ଓ ରାଜାର ପରିବାରବର୍ଗ ଖାଲି ଷ୍ଟେସନ ବାଟରେ ଚାଲିଲେ । କ୍ୱାଟରକୁ ଆସି ରଜା କହିଲା—କୁଛ୍ ଖା ଲେଓ ଭାଇ ଓସ୍ତାଦ୍ ।

ନିତାଇ କହିଲା—ଗୀତ ଶୁଣିବ ଭାଇ ରାଜନ୍ ! ଭଲ ଗୀତ ପଦେ ମନକୁ ଆସିଛି । ଶୁଣିବ ?

"ରାଜନ କହିଲା—ଠ୍ୟରୋ ! ଢୋଲ୍ ଠୋ—

ନିତାଇ ହାତ ଧରି ପକାଇଲା—ନା, ଖାଲି ଗୀତ ।

କହି ଦେଇ ତାର ସୁମିଷ୍ଟ କଣ୍ଠସ୍ୱର ସାମାନ୍ୟ ଧିମା କରି ଗାଇଲା—

"ମୁଁ ଭଲପାଇ ଏଇ ଜାଣିଛି ସୁଖର ସାର ଯେ ଆଖିଜଳେ ରେ ।
ତମେ ହସ ମୁଁ କାନ୍ଦେ ବଇଁଶୀ ବାଜୁ କଦମ୍ବମୂଳେ ରେ ॥"

ରାଜନ କହିଲା—ବାଃ, ବାଃ, ବାଃ ! ଉସ୍‌କା ବାଦ୍ ?

ନିତାଇର ଆଖିରୁ ପାଣି ଗଡ଼ୁଥାଏ । ସେ ଲୁହ ପୋଛୁ ପୋଛୁ କହିଲା—ଆଉ ନାହିଁ ।

ତା'ପରେ ସେ ସଙ୍ଗେ ସଙ୍ଗେ ବିଛଣାରେ ଗଡ଼ିପଡ଼ିଲା । ମନ ଭିତରେ ଅନେକ ଭାବନା । ମାମୁହାତରୁ ଲାଞ୍ଛନା ପାଇବାଟା ତା ପକ୍ଷରେ କିଛି ବଡ଼କଥା ନୁହେଁ; ମାମୁଠାରୁ ଅନେକ ଲାଞ୍ଛନା ସେ ଭୋଗ କରିଛି । ସେଇଟା ତାହାର ଅଙ୍ଗଭୂଷଣ । ସେକଥା ଚିନ୍ତାକରି ସେ ଭାବୁଥିଲା କବିଗାଉଣା କଥା ।

ବିଶେଷ ଭାବରେ ଏ ଅଞ୍ଚଳର ପ୍ରସିଦ୍ଧ କବିୟାଲ ତାରଣ ମଣ୍ଡଳ କଥା । ତାରଣ କବି ଯେଉଁ ସଭାରେ ଗୀତ ଗାଇଛି, ସେ ସଭାରେ କେତେ ଲୋକ—ହଜାର ହଜାର; ଥାଳ ବୁଲିଯିବ ! ସେ ଯେତେବେଳେ ପ୍ରଥମ କରି ତାରଣ କବିର ଗୀତ ଶୁଣିଥିଲା, ସେତେବେଳକାର ଛବିଟି ଏବେ ବି ତାହାର ମନରେ ଜଳଜଳ ଦିଶୁଅଛି ।

ଏହି ଚଣ୍ଡୀମାତାଙ୍କ ମେଳାରେଇ, ସେ କି ଭିଡ଼, କି ଗଣ୍ଡଗୋଳ । ସେତେବେଳେ ମେଳାର କି କି ଜାକଜମକ ! ଗୁରି ପାଞ୍ଚଟା ଚପ୍ରାସିଇ ସେକାଳେ ମେଳାର ଶାନ୍ତି-ଶୃଙ୍ଖଳା ରକ୍ଷା କରିବାକୁ ବାହାର ହେଉଥିଲେ । ସେମାନଙ୍କ ସଙ୍ଗେ ପୁଣି ଥିବେ ବାବୁଘର ଦରୁଓ୍ୱାନ୍ ଆଉ ଦୁଇ ଗୁରିଜଣ ବାବୁ । ତେବେ ସୁଦ୍ଧା ସେତେବେଳେ କି ଗୋଲମାଳ ! ନିତାଇର ସ୍ପଷ୍ଟ ମନେ ପଡ଼ିଗଲା, କଳରବମୁଖର ଜନତା ମୁହୂର୍ତ୍ତିକ ଭିତରେ ସ୍ତବ୍ଧ ହୋଇଗଲା, ଆଲୋକୋଜ୍ଜ୍ୱଳ ସଭା ଭିତରେ ସେତେବେଳେ ତାରଣ କବି ଆସି ଠିଆହୋଇଛି ।

ସେଇ ଡେଙ୍ଗା ମଣିଷଟି, ଘାଚଲି ବାଳ, ପାଚିଲି ନିଶ, କପାଳରେ ସିନ୍ଦୂର ବିନ୍ଦୁ, ଗ୍ରୀବାରେ ଧାଡ଼ି ଧାଡ଼ି ମେଡ଼ାଲ୍, ଲାଲ୍ ଆଖି । ତାରଣ କବିର ଆବିର୍ଭାବ ହେଲା କି, ସମସ୍ତେ ଚୁପ୍ ହୋଇଯାଇଥିଲେ । ସଭାର ଗୋଟିଏ ପାଖରେ ଗାଆଁର ବାବୁମାନେ ବେଞ୍ଚ ପକେଇ କରି ବସିଥିଲେ, ସେମାନେ ବି ଚୁପ୍ ହୋଇଗଲେ । ଆଉ ଓଃ, ସେ କି ଗୀତ !

ତା ପରଠାରୁ ଯେତେବେଳେ ଯୋଉଠି ତାରଣ କବିର ଗାଉଣା ହେଇଛି, ସେଇଠିକି ସେ ଯାଇଛି । ଥରେ ଭିଡ଼ଭିତରେ ହାତ ବଢ଼ାଇ ସେ ତାରଣ କବିର ଗୋଡ଼ଧୂଳି ଟିକିଏ ବି ନେଇଥିଲା । ସେଇ ଦିନଠାରୁ ତାର ସଉକ୍ କବିୟାଲ ହବ । ଇଚ୍ଛା ଥିଲା ତାରଣ କବି ଦଳରେ ପାଳିଆଗିରି କରି ସେ କବିଗାଉଣା ଶିଖିବ; କିନ୍ତୁ ତାରଣ ମରିଗଲା । ମଦ ଖାଇ କରି କାଳେ ତାରଣ ମରିଅଛି । ତାରଣ କବିର ସେଇ ଗୋଟାଏ ଦୋଷ ଥିଲା—ଖୁବ୍ ମଦ ପିଉଥିଲା । ସଭାରେଇ ତାର ବୋତଲ ଗିଲାସ ଥୁଆ ହୋଇଥାଏ, ସମସ୍ତଙ୍କ ଆଗଟାରେଇ ସେ ମଝିରେ ମଝିରେ ପାଣି ନାଁରେ ମଦ ପିଉଥିଲା । ସେଇ ତାରଣ କବି ଯେଉଁଦିନ ଗୀତ ଗାଇଥିଲା—

"ତମର ଗୋଇଠା ମୋ' ଛାତିରେ-ସେ ପରମ ଆଶିଷ ଶୁଣ ଦଶାନନ
ତମର ଚରଣଧୂଳି ଅଙ୍ଗେ ମୋର ଅଗୁରୁ ଚନ୍ଦନ
ବିଭୀଷଣର ରାକ୍ଷସ-ଜନମର ହେଲା ଶାପ-ବିମୋଚନ
ଖଲାସ୍, ଖଲାସ୍, ଖଲାସ୍, ଆଜି ଖଲାସ୍ ହେଲି ହେ ।"

ସେଦିନର ଯୋଡ଼ି ପାଲିରେ ଚାରଣ ହୋଇଥିଲା ବିଭୀଷଣ ଏବଂ ପ୍ରତିପକ୍ଷ ବିଷ୍ଣୁ ସିଂ ହୋଇଥିଲା ରାବଣ । ସେଇ କଥାଟା ଇ ଆଜି ବାରମ୍ବାର କରି ମନେପଡ଼ୁଥିଲା । ସେ ଆଜି ଖଲାସ୍ । ଖଲାସ୍ ।

ବେଳେ ବେଳେ ତାହାର ମନେହୁଏ, ଚାରଣ କବି ତାହାର କପାଳଦୋଷରେ ମରିଗଲା; ସେ ଗୁରୁ ପାଇଲା ନାହିଁ । ଏମିତି ଭଲ ଗୁରୁ ନପାଇଲେ କିଏ ଆଉ କବି ହୋଇ ହୁଏ । ଶାସ୍ତ୍ରର କଣ ଅନ୍ତ ଅଛି ? ପଢ଼ାଶୁଣା କରି ସେସବୁ ଶିଖିବାକୁ ହେଲେ ଏ ଜୀବନରେ କବିଯୂଳ ହେବା ତା'ପକ୍ଷେ ମୁଷ୍କିଲ ! ରାମାୟଣ, ମହାଭାରତ··· । ସହସା ତାହାର ମନେପଡ଼ିଲା, ମହାଦେବ ଆଜି ରାମାୟଣରୁ ଯେଉଁ ପ୍ରଶ୍ନଟା ନେଇ ତାହାକୁ ଅପଦସ୍ଥ କରିଅଛି, ତାହା କିନ୍ତୁ ଠିକ୍ ନୁହେଁ । ସଙ୍ଗେ ସଙ୍ଗେ ସେ ଉଠିବସିଲା । ଆଲୁଅ ଜଳାଇଲା ।

ଗୋଟିଏ ଗ୍ରେଟ କାଠ ଟୁଲ୍ ଉପରେ ସେ ସଯତ୍ନେ ରଙ୍ଗିନ୍ କନାରେ ବସ୍ତାନି ବାନ୍ଧି ତାର ପୋଥିଗୁଡ଼ିକ ରଖିଥାଏ । ବସ୍ତାନି ଖୋଲି ସେ ରାମାୟଣ ବାହାର କଲା । ବସ୍ତାନି ଭିତରେ ଗଦାଏ ବହି । ପାଠଶାଳାଠାରୁ ଆରମ୍ଭ କରି ଆଜିଯାଏ ସଂଗୃହୀତ ସବୁ ବହି ତାର ରହିଛି । ବାଟଘାଟରେ ଯେଉଁ ଛିଣ୍ଡା କାଗଜ ଓ ବହିପୃଷ୍ଠା ଉଡ଼ୁଥାଏ, ସେସବୁ ସଂଗ୍ରହ କରି ନଡାଇ ରଖିଅଛି । କାଗଜ ଦେଖିଲେଇ ସେ ଗୋଟାଇ ନେଇ ପଢ଼ିବାକୁ ଚେଷ୍ଟାକରେ । ଯାହା ଭଲ ଲାଗେ, ସେଇଟାକୁ ସେ ଯତ୍ନକରି ସାଇତିଦିଏ । ବହିର ସଂଗ୍ରହ ବି ତାର କିଛି କମ୍ ନୁହେଁ—କୃତିବାସୀ ରାମାୟଣ, କାଶୀଦାସଙ୍କ ମହାଭାରତ *, କୃଷ୍ଣଙ୍କର ଶତନାମ, ଶନିଙ୍କ ପାଞ୍ଚାଲୀ **, ମନସାଙ୍କ ଭସାଣ ***,

* ବଙ୍ଗଳାର ବିଖ୍ୟାତ ରାମାୟଣ ଓ ମହାଭାରତ ।

** ଶନିପୂଜାରେ ବ୍ୟବହୃତ ହୁଏ । ଶନିପୂଜା ବଙ୍ଗଳାର ଏକ ଅନୁଷ୍ଠାନ । ଏଥିରେ କେହି କାହାକୁ ନିମନ୍ତ୍ରଣ କରେ ନାହିଁ; କିନ୍ତୁ ଯେ ଶୁଣିଲା ଶନିପୂଜା ହେଉଅଛି, ତାକୁ ଯିବାକୁଇ ହେବ । ଶନି ରାଗୀ ଦେବତା ବୋଲି ଏହି ବିଧି ପ୍ରଚଳିତ ।

*** ମନସା ଜଣେ ରାଗୀ ଦେବୀ; ଟିକିଏ ତ୍ରୁଟିର ଗନ୍ଧ ପାଇଲେ ଭୀଷଣ ରାଗିଯାନ୍ତି । ସାପଙ୍କର ଦେବୀ ସେ ।

ଗଙ୍ଗାମାହାତ୍ମ୍ୟ, ସ୍ଥାନୀୟ ଥିଏଟର କ୍ଲବ୍ ଫୋପାଡ଼ି ଦେଇଥିବା ନାଟକ କେଇଟା; ଏହାଛଡ଼ା ତାହାର ପାଠଶାଳାର ବହିତକ, ସେହି ପ୍ରଥମ ଭାଗ ( ବର୍ଣ୍ଣପରିଚୟ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗରକୃତ ) ଠାରୁ ଆରମ୍ଭ କରି ପ୍ରତ୍ୟେକ ବହି ରହିଛି । ତା ଛଡ଼ା ଅଛି ଦିଖଣ୍ଡ ଖାତା, ଭଙ୍ଗା ସିଲଟ ଖଣ୍ଡ, ଗୋଟାଏ ଲେଡ଼ପେନ୍‌ସିଲ, ଛୋଟିଆ ଖଣ୍ଡିଏ ନାଲିନେଳି ପେନ୍‌ସିଲ୍ । ଆଉ କିଛି ଛିଣ୍ଡା ପୃଷ୍ଠା, ଖାଲି କାଗଜ ।

ସେହି ରାତିରେହିଁ ସେ ନିବିଷ୍ଟ ମନରେ ରାମାୟଣର ପୃଷ୍ଠା ଓଲଟାଇବାକୁ ଆରମ୍ଭ କଲା । ଠିକ୍; ମହାଦେବ ତାକୁ ଧପ୍‌ପା ମାରି ହାର ମନାଇଛି । ଭୁଲଟା ତାର ନୁହେ, ମୁହଁତୋଡ଼ରେ ମହାଦେବ ହିଁ ଭୁଲକୁ ସତ୍ୟ କରିଅଛି । ହସିକରି ସେ ମହାଦେବର ପ୍ରଶ୍ନର ଉତ୍ତରର ଜାଗାଟା ବନ୍ଦ କରିଦେଇ ରାବଣ ଓ ବିଭୀଷଣର ବିତଣ୍ଡାର ଅଧ୍ୟାୟଟା ଖୋଲିଲା । ପଢ଼ିସାରି ବହି ବନ୍ଦ କରି ସେ ପୁଣି ଶୋଇପଡ଼ିଲା । କିନ୍ତୁ ନିଦ ଆଉ ଆସିଲାନି ଆଦୌ । ମୁଣ୍ଡର ଶିରା ଦିଟା ଦପ୍‌ଦପ୍ କରି ଡେଇଁଛି କାନ ପାଖରେ । ଏଇଲା ବି ଢୋଲ ଓ ଘଣ୍ଟାର ଶବ୍ଦ ଶୁଣାଯାଉଛି । ଧୀରେ ଧୀରେ ଶବ୍ଦଯାକ ମୃଦୁରୁ ମୃଦୁତର ହୋଇ ଆପେ ନିସ୍ତବ୍ଧ ହୋଇଗଲା ।

ନିଦ ଭାଙ୍ଗିଲା ରାଜାର ଡାକରେ ।

ମିଲିଟାରି ରାଜା ରାତି ଉଜାଗର ହୋଇ ମଧ୍ୟ ଠିକ୍ ସକାଳ ଛଅଟାରେ ଉଠିଅଛି । ସାତଟା ବେଳକୁ ଏ ଲାଇନ୍‌ର ପ୍ରଥମ ଟ୍ରେନ୍ ଏ ଷ୍ଟେସନ ଅତିକ୍ରମ କରିବ । ଯୁଦ୍ଧଫେରନ୍ତା ରାଜା ଚା ଖାଏ । ଚାହାପାଣିଟା ବସେଇଲାପରେ ଷ୍ଟେସନରେ ସିଗ୍‌ନାଲ ଦେଇ ଓ ଘଣ୍ଟି ବଜାଇ ଆସି ଓସ୍ତାଦକୁ ଡାକିଲା—ଓସ୍ତାଦ୍ ! ଓସ୍ତାଦ୍ !

ଓସ୍ତାଦ୍ ନଥିଲେ ଚାହା ଖାଇବାରେ ସୁଖ ନାହିଁ । ମାଇପଟା ଏଯାକେ ଶୋଇଛି । ଠାକୁରାଣୀ କିନ୍ତୁ ଠିକ୍ ଅଛି; ସେ ରାଜା ଆଗରୁଇ ଉଠି ବାହାରିପଡ଼ିଛି । ଠାକୁରାଣୀର ଶାଶୁଟା ଭାରି କଳିହୁଡ଼ୀ ଓ ମୁଖରା; ଏପରି ଝିଅଟାକୁ ବି ବଡ଼ ଗଞ୍ଜଣା ଦିଏ । ରାଜା ମନେ ମନେ ବର୍ତ୍ତମାନ ଅବଶୋଷ କରେ—ମାଇପିଟାକୁ ସେ କାହିଁକି ବାହା ହେଲା ! ଠାକୁରାଣୀକୁ ବାହା ହୋଇଥିଲେ ଭଲ ହୋଇଥାନ୍ତା । ଛମ୍‌ଛମ୍ ଦ୍ରୁତଗାମିନୀ, ଦ୍ରୁତହାସିଣୀ, ଦ୍ରୁତଭାଷିଣୀ ମିଷ୍ଟ ସ୍ୱଭାବରେ ଠାକୁରାଣୀ ତାର ମୁଖରା ଅପାଠାରୁ ଅନେକ ଭଲ ।

ନତାଇର ଜବାବ ନ ପାଇ ରାଜା ପୁଣି ଡାକିଲା—ହୋ ଓସ୍ତାଦ୍ !

ଏଥରକ ନତାଇ ଜଡ଼ିତ ସ୍ୱରରେ ଜବାବ୍ ହେଲା—ଉଁହୁ ।

—ଚା ହୋ ଗୟା ଭୟା !

—ଉଁହୁ ।

—ଆରେ ଟ୍ରେନ୍ ଆଡା ହୈ ଭୟ୍ୟା !

—ଉଁହୁ ।

ରାଜା ନିରୁପାୟ ହୋଇ ଚାଲିଗଲା; ଆଉ ଡାକିଲା ନାହିଁ । କାଲି ରାତିରେ ଓସ୍ତାଦ୍‌ର ବଡ଼ ଖଟଣି ଯାଇଛି; ଆଜି ବିଚାରର ଟିକିଏ ଶୋଇବା ଦରକାର ।

ନଅଟା ସରିକି ନିତାଇ ଉଠିଲା ! ହସ ହସ ମୁଖରେ ହିଁ ଉଠିଲା । ବୋଧହୁଏ ଗତ ରାତିର କଥା ସ୍ୱପ୍ନରେ ଦେଖି, ଟିକିଏ ମୃଦୁହାସ୍ୟ ମୁହଁରେ ମାରି ଉଠି ବସିଲା । ଏବଂ ପ୍ରଥମ କଥାଟି ମନେ ପଡ଼ିଲା ଯେ କଲିକତାର ସେହି ଚାକିରିଆ ବାବୁଟି ଆଜି ତାହାକୁ ଦେଖିଲେଇ କହିବେ—ଆରେ ତୁ ଗୋଟାଏ କବି ରେ, ଆଁ ! ତାହାପରେ ଇଂରାଜୀରେ କଣ ଗୋଟାଏ ।

ଭୂତନାଥବାବୁ ତାରିଫ୍ କରିବେ—ବାହବା ରେ ନିତାଇ, ବାହବା !

କ୍ରମେ କ୍ରମେ ଗାଆଁଟା ସାରା ଲୋକଙ୍କର ବିସ୍ମିତ ଦୃଷ୍ଟିପୂର୍ଣ୍ଣ ମୁଖଯାକ ତାହାର ମନଶ୍ଚକ୍ଷୁରେ ଭାସିଉଠିଲା । ବିପ୍ରପଦ ବ୍ରାହ୍ମଣ ତ ଏକବାରେ ଗୋଳମାଳ ଲଗେଇଦବ । ଷ୍ଟେସନ୍‌ରେ ଯାଇ ବସିଲେ ହେଲା । ଏଇ ସାଢ଼େ ନଅଟାରେ ଟ୍ରେନ୍‌ରେ ହିଁ ବିପ୍ରପଦ ଜରିଆରେ ତାହାର କବିଖ୍ୟାତି ଏକଦମ୍ କାଟୋଆଯାକେ ଆଜି ହିଁ ପହଞ୍ଚିଯିବ । ବାସି ଦୁଧ, ଚାହା ଚିନି ଘରେ ରହିଛି; ତଥାପି ସେ ଆଜି ଘରେ ଚାହା ବସାଇଲା ନାହିଁ । ଚା-ମଗଟି ହାତରେ ଧରି ଶିଥିଳ ମନ୍ଥର ପଦକ୍ଷେପରେ ଷ୍ଟେସନ ସ୍ଥଳରେ ଆସି ଉପସ୍ଥିତ ହେଲା, ମୁଖରେ ସେହି ମୃଦୁ ହସ ।

ବିପ୍ରପଦ ହୋହା କରି କହିଲା—ଏଇ ! ଏଇ ! ଚୁପ୍, ସଭିଏ ଚୁପ୍ ! ତା ପରେ ତାହାକୁ ସମ୍ବର୍ଦ୍ଧନା କରି କହିଲା—ସାବାସ୍ ରେ ପୁଅ ସାବାସ୍ ! ଜୟ ରାମଚନ୍ଦ୍ର ! କାଲି କୁଆଡ଼େ ସତସତିକା ଲଙ୍କାକାଣ୍ଡଟାଏ କରିଦେଇଛୁ ଶୁଣିଲି । ବାହା ବାହାରେ ମୋ କପିବର !

ଆଶ୍ଚର୍ଯ୍ୟ କଥା, ବିପ୍ରପଦର ପୁରୁଣା ଥଟ୍ଟାରେ ନିତାଇ ଆଜି ଅତ୍ୟନ୍ତ ଆହତ ଅନୁଭବ କଲା । କ୍ଷଣକେ ସେ ଗମ୍ଭୀର ହୋଇଗଲା ।

ବିପ୍ରପଦର ସିଆଡ଼କୁ ଖିଆଲ ନାହିଁ । ସେ ଉତ୍ତର ନପାଇ ପୁଣି କହିଲା—ଦୁହାଁଟା କଣ ଧରିଥିଲୁ କହିଲୁ ଦେଖି ? ଉଁଫ୍ ! ଉଁଫ୍ ! ଖଙ୍କର ଖଙ୍କର ଉଁଫ୍ ! ଚୁପ୍‌ରେ ବେଟା ମହାଦେବା ଚୁପ୍ ଚୁପ୍ ଚୁପ୍ ! ନା କଣ ? କହି ସେ ଲମ୍ବେଇ କରି ହସିଲାଗିଲା ।

ନିତାଇ ଏଥର ହାତ ଯୋଡ଼ି ଗମ୍ଭୀର ଭାବରେ କହିଲା—ଆଜ୍ଞା ପ୍ରଭୁ, ମୂରୁଖ ଲୋକ,

ଶ୍ରେଷ୍ଠ ଜାତି; ମାଙ୍କଡ଼, ଓଲୁ, ହନୁମାନ, ଜାମ୍ବୁବାନ ଯାହା କହିବେ ସେଇଟା ସତ । କହିଦେଇ ସେ ତାର ସଗଟି ବଢ଼ାଇ ଭେଣ୍ଡର ବେନେ ମାମୁଙ୍କୁ କହିଲା—ହେଇଟି ଦୋକାନୀବାବୁ, ଘୁ ଦିଅନ୍ତୁ ତ ! ସାଙ୍ଗେ ସାଙ୍ଗେ ସେ ପଇସା ଦେବାପାଇଁ ଖୋସଣି ଫିଟାଇବାକୁ ଆରମ୍ଭ କଲା ।

ଦୋକାନୀ ବେନେ ମାମୁ ସଗରେ ଘିହା ଦେଇ କହିଲା—ମାଉଳ ନ କହି ଦୋକାନୀ କହୁଛୁ, ବନ୍ଧୁ କାଟି ଦେଉଛୁ ନା କଣ ନତାଇ ?

ନତାଇ କଥାଟାର ଉତ୍ତର ଦେଲା ନାହିଁ । ବେନେ ମାମୁ କହିଲା—ନାଃ, କାଲି ନତେଇ ଆମର ଖାସା ଗୀତ ଗାଇଛୁ ! ଯାହା କହନ୍ତୁ ନା କାହିଁକି ।

ବିପ୍ରପଦ ଜଳଦି ଗୋଟାଏ ଘଷି ନେଇ ତହିଁରେ କଣା କରି ତାହା ଦିହରେ ଦଉଡ଼ି ଗଲଉ ଗଲଉ କହିଲା—ସେଥିପାଇଁ କପିବରଙ୍କୁ ଗୋଟାଏ ମେଡ଼େଲ ଦେବ ।

କିନ୍ତୁ ତାହାକୁ ଅବସର ନଦେଇ ନତାଇ ଘିହାପାତିଟି ହାତରେ ଧରି ଉଠି ବାହାରିଗଲା ।

ତେଣେ ସାଢ଼େ ନଅଟାର ଟ୍ରେନ୍‌ଟା ପ୍ଲାଟଫର୍ମରେ ଆସି ଠିଆହୋଇଛୁ । ବିପ୍ରପଦ ଓ ବେନେ ମାମୁ ମନେକଲେ ନତାଇ ବୋଧହୁଏ ମୋଟ ଖୋଜି ଗଲା; କିନ୍ତୁ ପ୍ଲାଟଫର୍ମରୁ ରାଜା ଡାକୁଥିଲା—ଓସ୍ତାଦ୍ ! ଓସ୍ତାଦ୍ !

ଜବାବ୍ ନପାଇ ରାଜା ନିଜେ ଦଉଡ଼ି ଆସିଲା । ବେନେ ମାମୁ କହିଲା—ଏଇକ୍ଷିଣା ଏଠୁ ବାହାରିଗଲା । ପ୍ଲାଟ୍‌ଫର୍ମରେ ନାହିଁ ?

ଇଆଡ଼େ ସିଆଡ଼େ ଗୁହିଁ ରାଜାର ନଜରରେ ପଡ଼ିଲା । ଗଛବୃକ୍ଷର ଆଢ଼ୁଆଳ ଭିତରେ ନତାଇ ଚାଲିଯାଉଛୁ ବସା ଆଡ଼କୁ । ସେ ଧାଇଁଯାଇ ତାକୁ ଧରିଲା ।

—ଗାଓଁ କା ଏକଠୋ ମଜୁଷ୍ମ ହୈ ଭୟା, ଏକ ଠୋ ବ୍ୟାଗ୍ ଔର୍ ଗ୍ରେଟାସା-ଏକ ଠୋ ବିସ୍ତର୍ ।

ନତାଇ ମୁଣ୍ଡ ହଲାଇ କହିଲା—ନା ।

—ଆରେ ବଡ଼େ ବାବୁ କା ଜୋଇଁ, କଡ଼ା ବକସିଯ୍ ମିଲେଗା । ଦୋଆନା ତୋ ଜରୁର୍ ।

—ନା ।

—କ୍ୟା, ତବିୟତ୍ କୁଛ୍ ଖରାପ ହୈ ?

—ନା ।

—ତବ୍ ? ରାଜା ବିସ୍ମିତ ହୋଇଗଲା ।

ନତାଇ ଗମ୍ଭୀର ଭାବେ ବିଷଣ୍ଣ ମୃଦୁ ହସି କହିଲା—କୁଲିଗିରି ଆଉ କରିବିନି ରାଜନ !

ରାଜା ଏଥର ବିସ୍ମୟରେ ହତବାକ୍ ହୋଇଗଲା ।

## ପାଞ୍ଚ

ନତାଇ ବସାକୁ ଆସି ହଠାତ୍ ରାମାୟଣଟା ଖୋଲି ବସିଲା । ଗୋଟାଏ ଦୀର୍ଘନିଃଶ୍ୱାସ ପକାଇ ଗମ୍ଭୀର ମନଯୋଗ ସହିତ ବହିଖଣ୍ଡିକ ଖୋଲିଲା । ବିପ୍ରପଦ କଥାରେ ସେ ମର୍ମାନ୍ତିକ ଆଘାତ ପାଇଅଛି । ସେ ଥରକୁ ଥର ଭାବିବାକୁ ଚେଷ୍ଟା କରୁଛି—ବ୍ରାହ୍ମଣ-ବଂଶର ମୂର୍ଖଟା କଣ ବୁଝିବ ! କିନ୍ତୁ କୋଉଥିରେ ହେଲେ ତା ମନଟା ଶାନ୍ତ ହୋଇନାହିଁ; ତେଣୁ ସେ ରାମାୟଣ ଖଣ୍ଡିକ ଟାଣିନେଇ ବସିଲା । ବହିଖଣ୍ଡି ଖୋଲି ସେ ବାହାର କଲା ଦସ୍ୟୁ ରତ୍ନାକରର କାହାଣୀ । କେତେ ଥର ଏ କାହାଣୀ ସେ ପଢ଼ିଛି; କିନ୍ତୁ ଆଜି ଏ କାହାଣୀ ନୂଆ ରୂପ ନୂଆ ଅର୍ଥ ନେଇ ତାହାର ମନରେ କମ୍ପନ ତୋଳିଲା । ବହୁବାର ପଢ଼ିଥିବା ଆଗରୁହିଁ ଜଣା କାହାଣୀଟା ତାର ମନରେ ଜାଗିଉଠିଅଛି, ସଙ୍ଗେ ସଙ୍ଗେ ତାହାର ଆଖିରେ ପାଣି ମଧ୍ୟ ଆସିଯାଇଛି । ଆଖି ପୋଛି ସେ ତାପରେ ପଢ଼ିବାକୁ ଆରମ୍ଭ କଲା—

"ବ୍ରହ୍ମାଠାରୁ ରାମନାମ ପାଇ ରତ୍ନାକର
ଷାଠିଏ ବରଷ ନାମ ଜପିଲା ଆବର ॥"

ବାହାରୁ ରାଜା ତାକୁ ଡାକିଲା—ଓସ୍ତାଦ୍ !

ଉଦାସିଆ ଭାବରେହିଁ ମୁହୂର୍ତ୍ତେକ ନତାଇ ତାକୁ ଆହ୍ୱାନ କଲା—ଆସ ରାଜନ୍, ଆସ ।

ରାଜା ଆସି ବସିବାମାତ୍ରେ ତାକୁ ପଚାରିଲା— କ୍ୟା ହୁଆ ଭାଇ ତୁହ୍ମାର ? କାମ୍ କୌଁୟା ନହିଁ କରେଗା ?

ନତାଇ ହସିକରି କହିଲା—ଶୁଣ, ଆଗ ଏଇ ଗପଟା ଶୁଣ ।

ରାଜା କହିଲା—ଧ୍ୟାତ୍‌ତେରି—ଓହି ଲିଖାପଢ଼ୀ ତୁମାରା ମାଥା ବିଗାଡ଼ ଦିୟା ।

ନତାଇ ସେତେବେଳକୁ ପଢ଼ିବାକୁ ଆରମ୍ଭ କରିଦେଇଛି । ରାଜା ଅଗତ୍ୟା ଖଣ୍ଡିଏ ବିଡ଼ି ଲଗାଇ ଶୁଣିବାକୁ ବସିପଡ଼ିଲା ।

"ବର ଦେଇ ବ୍ରହ୍ମା ଗଲେ ଆପଣା ଭବନ
ଆଦିକାଣ୍ଡ ଭଣେ କୃତ୍ତିବାସ ବିଚକ୍ଷଣ ॥"

ପଢ଼ା ସାରି ନିତାଇ ରାଜା ମୁହଁକୁ ଚାହିଁଲା । ରାଜା ସେତେବେଳକୁ ତରଳିଗଲାଣି ସେ ହାତ ଯୋଡ଼ି କପାଳରେ ଲଗାଇ ପ୍ରଣାମ କରି କହିଲା—ସୀତାରାମ୍ ! ସୀତାରାମ ତାପରେ ନିତାଇର ପ୍ରଶଂସା ଆରମ୍ଭ ହେଲା—ଆଚ୍ଛା ପଢ଼ତା ହେ ତୁମ୍ ଓସ୍ତାଦ୍ ବହୁତ୍ ଆଚ୍ଛା !

ନିତାଇ ଏଥର ଗମ୍ଭୀର ହୋଇ କହିଲା—ରାଜନ ଏଥିକି ଟିକେଇ ବିବେଚନା କରି ଦେଖ ।

ରାଜା ସବିସ୍ମୟରେ ପଚାରିଲା—କ୍ୟା ?

ଝିରଜା ବାଟେ ରେଲଲାଇନର ରେଖା ଦେଇ ଦୂରକୁ ଦୃଷ୍ଟି ନିବଦ୍ଧ କରି ନିତାଇ କହିଲା—ଧର, ରତ୍ନାକର, ସେ କବି ହେଲେ; ତାପରେ କଣ ସେ ଡକେଇତି କଲେ ନା ମଣିଷ ମାରିଲେ ?

ରାଜା କହିଉଠିଲା—ଆରେ ବାପ୍ ରେ ବାପ୍ ! ଐସା କଭି ହୋ ସକତା ହେ ଓସ୍ତାଦ୍ !

—ତା ହେଲେ ? କାଲି ରାତିର କଥାଟା ଥରେ ସ୍ମରଣ କରି ଦେଖ । ଗୁରିଆଡ଼େ ତ ରଟିଗଲା କବିୟାଲ ବୋଲି !

—ଅଲବତ୍, ଜରୁର !

—ତା ହେଲେ ? ଆଉ କଣ ମୋର ମସ୍ତକରେ ମୋଟ ବୋହିବା ଉଚିତ ହବ ? ବାଲ୍ମୀକି ମୁନିଙ୍କ କଥା ଛାଡ଼ ! କାହା ସଙ୍ଗେ କାହାର ତୁଳନା ! ଭଗବାନଙ୍କ ଅଂଶ, ଦେବତା ସେମାନେ; କିନ୍ତୁ ମୁଁ ବି ତ କବି । ହୁଏ ପଛେ ଶ୍ରେଷ୍ଠ ।

ଏତେବେଳେ ଯାଇ ରାଜା ସବୁ କଥା ବୁଝିପାରିଲା ଏବଂ ଏକାନ୍ତ ଶ୍ରଦ୍ଧାନ୍ୱିତ ବିସ୍ମୟରେ ନିତାଇ ମୁହଁକୁ ନିର୍ବାକ୍ ହୋଇ ଗୁହିଁରହିଲା ।

ନିତାଇ କହିଲା—କହ ରାଜନ୍, ଆଉ କଣ ମୋର କୁଲିଗିରିଟା କରିବା ଶୋଭନ ହବ ? ଲୋକମାନେ ଛି ଛି କରିବେନି କି ! କହିବେନି—କବି ମୋଟ ବୁହେ !

—ହାଁ, ଇ ବାତ୍ତ ତୋ ଠିକ୍ ହେ ! କିନ୍ତୁ ପର ମୁହୂର୍ତ୍ତରେଇ ଚିନ୍ତିତ ହୋଇ ରାଜା କହିଲା—ଲେକିନ୍ ଏକଠୋ ବାତ୍ତ ଓସ୍ତାଦ୍ !

—କହ । ରାଜା ମୁହଁକୁ ଗୁହିଁ ନିତାଇ ପଚାରିଲା ।

—ଲେକିନ୍ ରୋଜଗାର ତ ଗୁହିଏ ଭାଇ; ଖାନେ ତୋ ହୋଗା ଭୟା !

ବାରମ୍ବାର ମୁଣ୍ଡ ହଲାଇ ନତାଇ କହିଲା—ସେଗୁଡ଼ାକ ମୁଁ ଜାଣେନା ରାଜନ ! ଯଦି ଓଳି ନହେଲେ ଓଳାଏ ଖାଇ ରହିବ । ସେଡକ ବି ଯୋଗାଡ଼ ଯଦି ନ ମିଳିବ, ସେଦିନ ଉପାସରେ ରହିଯିବ ପଛକେ । ଅତଃପର ଅତ୍ୟନ୍ତ ଗମ୍ଭୀର ହୋଇ କଣ୍ଠସ୍ୱରରେ ବିପୁଳ ଗୁରୁତ୍ୱ ଆରୋପ କରି ସେ କହିଲା—ତା ବୋଲି ଭଗବାନ ଯେତେବେଳେ ମତେ କବି କରିଛନ୍ତି, ସେତେବେଳେ··· ! ନତାଇ ବାରମ୍ବାର ଅସ୍ୱୀକାରର ଭଙ୍ଗିମାରେ ମୁଣ୍ଡ ହଲାଇଲା, ଅର୍ଥାତ୍ ନା—ନା—ନା ।

କେତେବେଳେ ସେ ଆଉ ମୁଣ୍ଡରେ ମୋଟ ବୋହିବ ନାହିଁ ।

ରାଜା ବି ଗମ୍ଭୀରଭାବେ ଚିନ୍ତା କରୁଥିଲା । ସେ ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ ଏଥରକ ପରିଷ୍କାର ଭାଷାରେ କହିଲା—ନା ଓସ୍ତାଦ୍, ଗ୍ରେଟ୍ ଜାମ ଅବ୍ ତୁମ ନହିଁ କରୋଗେ । ଉହୁଁ—ନହିଁ ।

ରାଜା ଉପରେ ନତାଇର ପ୍ରୀତିଭାବର ଆଉ ସୀମା ରହିଲାନି । ଗଭୀର ଆବେଗ ସହିତ ସେ କହିଲା—ତମେ ମୋର ସତମତିକା ମିତ୍ର ରାଜନ୍ ।

—ଧନ୍ୟ ହୋଗୟା ଓସ୍ତାଦ୍ । ତୁମାରି ମିତ୍ର ବନ୍‌କର ହମ୍ ଧନ୍ୟ ହୋ ଗୟା । ରାଜନର ବି ଅନ୍ତ ରହିଲାନି ଆବେଗର ।

ଗୋଟିଏ ଦୀର୍ଘନିଃଶ୍ୱାସ ପକାଇ ନତାଇ ଏଣିକି କହିଲା—ଆଜି ବଡ଼ ଦୁଃଖ ପାଇଛୁ ରାଜନ୍ !

—ଦୁଖ୍ ? କୌନ ଦୁଖ୍ ଦିଆ ଭାଇ ?

—ସେଇ ତମର ବିପ୍ରପଦ ବାହ୍ମଣ । ମତେ କହିଲା କଣ ନା—କପିବର ମାନେ ହନୁମାନ ! ମୁଁ ହନୁ ମାଙ୍କଡ଼ ରାଜନ ?

ରାଜା ତତ୍‌କ୍ଷଣେ ସିଧା ହୋଇ ବସିଲା । ତାର ·ମିଲିଟାରି ମିଜାଜ୍ ମୁଣ୍ଡ ଗରମ କରି ଉପରକୁ ଉଠିଛି, ସେ ରୂକ୍ଷ ସ୍ୱରରେ ପଚାରିଲା ନତାଇକୁ—ଜବାବ କେଁୟା ନହିଁ ଦିଆ ତୁମ୍ ?

—ଜବାବ ଜିହ୍ୱାର ଅଗ୍ରଭାଗକୁ ଆସିଯାଇଥିଲା ରାଜନ୍, କିନ୍ତୁ ସମ୍ଭାଳି ନେଲି । ବ୍ରାହ୍ମଣବଂଶର ମୂର୍ଖ ବଳିବର୍ଦ୍ଦ ଅପେକ୍ଷା କପି ଅନେକ ଭଲ ରାଜନ୍ !

—ଜରୁର୍ । ଅଲବତ୍ । ଲେକିନ୍ ଯହ ବଳିବର୍ଦ୍ଦ କ୍ୟା ହୈ ଭାଇ ?

ନତାଇ କହିଲା—ବଳଦକୁ କହନ୍ତି ଭାଇ !

ତା ପରେ ନିଜେଇ ରଚନା କରି ବୋଲିଲା—

"ସଂସାରେ ଯେ ସହିପାରେ ମହାଯତି ସେଇ
କ୍ଷମା ସମ ଧର୍ମ ଜାଣ, ଆଉ ଧର୍ମ ନାହିଁ ।"

କବ୍‌ତାଟା ବୋଲ୍‌ସାର ନତାଇ କହିଲା—ଭୁଟ୍‌ଲ ସ୍ୱଜନ, କ୍ଷମା କରୁଛୁ ମୁଁ । ଏକେ ତ ବ୍ରାହ୍ମଣ, ତା ଉପରେ ରୋଗୀ ମଣିଷ, ତଥି ଉପରେ ମୂର୍ଖ; ତାକୁ ମୁଁ କ୍ଷମା କରୁଛୁ ।

ସ୍ୱଜନ ମୁଗ୍‌ଧ ହୋଇଗଲା । ଟିକଏ ବେଳ ଚୁପ୍‌କରି ରହିବା ପରେ ସେ ବେଶ୍‌ ସରଳ ମାତୃଭାଷାରେଇ କହିଲା—ଭଲ କରୁଛ ଓସ୍ତାଦ ! ତାହା ପରେ ସେ ପୁଣି କହିଲା—ତା ହେଲେ କଣ କରିବ ଓସ୍ତାଦ୍‌ ? ଗୋଟାଏ କିଛି ତ କରିବା ନହାତ ଦରକାର୍‌ । ପେଟ ଭଳିଆ ଅଝଟିଆ ତ ଆଉ ସଂସାରରେ କିଛି ନାହିଁ ।

—ମୁଁ ଗୋଟାଏ ଦୋକାନ ଦେବି ସ୍ୱଜନ୍‌ !

—ଦୁକାନ ?

—ହଁ, ଦୋକାନ । ବଡ଼ ଦୋକାନ; ନକେ ବଡ଼ ବାନ୍ଧିବ, ଆଉ ଷ୍ଟେସନର ବରଗଛ ମୂଳେ ବସି ବିକିବ । ବାକ୍‌ସେ ଦ'ବାକ୍‌ସର ସିଗ୍ରେଟ୍‌ ବି ରଖିବ ।

ସ୍ୱଜନ୍‌ ଉତ୍ସାହିତ ହୋଇପଡ଼ିଲା—ବହୁତ୍‌ ଆଚ୍ଛା ହୋଗା ଓସ୍ତାଦ୍‌ !

ନତାଇ କିନ୍ତୁ ଏଥର ଟିକଏ ମ୍ଲାନଭାବରେଇ କହିଲା—ବଣିକ ମାତୁଳ ଟିକଏ ଅବଶ୍ୟ ରୁଷ୍ଟ ହେବ ମୋ ଉପରେ । କିନ୍ତୁ—

—କ୍ୟା କିନ୍ତୁ ? ଉ ଗୁସ୍‌ସା କରେଁ ତୋ କ୍ୟା ହୋଗା ? ଜାସ୍ତୀ ଭାତ ଖାଏଗା ଅପନେ ଘର ମେଁ ।

—ନା ସ୍ୱଜନ୍‌ ! କାହାର ଛତ୍ର କରିବାକୁ ମୋର ଇଚ୍ଛା ନାହିଁ । ତା ଛଡ଼ା ମୋ ହାତରୁ ପାନ, ଗୁହା, ପାଣି ଏସବୁ ତ କେହି ଖାଇବ ନାହିଁ । କହୁଁ କହୁଁ ସେ ଉତ୍ଫୁଲ୍ଲ ହୋଇ ପଡ଼ିଲା—ଆଚ୍ଛା ସ୍ୱଜନ୍‌, ବାଉଁଶ କିଣି ଯଦି ମୋଡ଼ା ବନାଇ ବେଶ୍‌ ସଉକିଆ ଜିନିଷ କରେ ତାହେଲେ କେମିତି ହବ ?

—ଉ ସବ୍‌ସେ ଆଚ୍ଛା !

—କିନ୍ତୁ ବିପ୍ରପଦ କଣ କହିବ ଜାଣ ? ଡମ-ବୃତ୍ତି ଆଡ଼କୁ ଆଙ୍ଗୁଠି ଦେଖାଇ କହିବ—ଡମଟା !

ଦାନ୍ତରେ ଦାନ୍ତ ଘଷି ସ୍ୱଜନ୍‌ କହିଲା—ଦିନେ କଷିକରି କାନ ଦଟା ମୋଡ଼ିଦେବି ବ୍ରାହ୍ମଣଟାର ।

—ନା, ନା, ନା । ଯାହା ହଉ ସେ ବ୍ରାହ୍ମଣ ! ସ୍ୱଜନ୍‌, "ବ୍ରାହ୍ମଣ ସାମାନ୍ୟ ନୁହେଁ, ବ୍ରାହ୍ମଣର କ୍ରୋଧ ହେଲେ ହୋଇବ ପ୍ରଳୟ ।" ଶାସ୍ତ୍ରର ବଚନ ଭାଇ । ତା ଛଡ଼ା—

ସ୍ୱଜା ବାଧା ଦେଇ କହିଲା—ଧ୍ୟାତ୍‌ ! ବ୍ରାହ୍ମଣ ! ସାତଶୋ ବ୍ରାହ୍ମଣ ଏକଠୋ ବଗର ନଲୀଗୋଡ଼ ଭାଙ୍ଗନେ ନାହିଁ ସକତା ହେ ! ବ୍ରାହ୍ମଣ ?

ନତାଇ ହସିକରି କହିଲା—ନା-ନା-ନା । କହୁ ଯେ ଡମ ! ଡମ ହେଲେ, ଲାଜକଥା ବା କଣ ? ଡମ ବା ଶ୍ରେଷ୍ଠ କାହିଁକି ହେବ ? ଡମ ବି ମଣିଷ, ବ୍ରାହ୍ମଣ ବି ସେଇ ମଣିଷ !

ବାସ୍—ବାସ୍—ବାସ୍ ! କ୍ୟା ହର୍ଜ । ବୋଲ୍‌ନେ ଦୋ ଡୋମ୍ । ରାଜନ୍‌ର ବି କିଛି ଆପତ୍ତି ରହିଲାନି ଆଉ ।—ବହୁତ୍ ଅଚ୍ଛା କାମ୍, ଦୁକାନ ଲଗାଓ, ଅଉର ଏକ୍ ଠୋ ସାଦୀ କରୋ ଓସ୍ତାଦ୍ ! ସଂସାର ବନାଓ ।

ତାଚ୍ଛଲ୍ୟ ସହ ଓଠ ବଙ୍କେଇ ନତାଇ କହିଲା—ଧେତ୍ !

—ଧେତ୍ କୈଁୟା ଭାଇ ? ଉ ହାମ ନେହିଁ ଶୁନେଗା ।

—ଅଚ୍ଛା ଆଗ ଗୋଟାଏ ଗପ କହୁଚି ଶୁଣ !

ଗପରେ ରାଜନ୍‌ର ପରମ ଅନୁରାଗ । ସେ ବଢ଼ି ଲଗାଇ ବେଶ୍ ବାଗେଇ ବସିଲା । ନତାଇ ଆରମ୍ଭ କଲା ଲାଙ୍ଗୁଡ଼କଟା ଶିଆଳର ଗପ । ଗପଟି ଶେଷ କରି ନତାଇ କହିଲା—ତମେ ଲାଙ୍ଗୁଡ଼ କାଟିଛ ବୋଲି ମୁଁ ଲାଙ୍ଗୁଡ଼ କଟାଇବିନି ରାଜନ !

ରାଜା ପ୍ରଥମରୁ ଅବଶ୍ୟ କିଛିଟା ହସିଲା; କିନ୍ତୁ ତାପରେ କହିଲା—ଇ ବାତ୍ ତୁମ୍‌ରା ଠିକ୍ ହୈ ନହିଁ । ସଂସାର ମେ ଆକେ ସାଦୀ ନହିଁ ପକଡ଼େଗା ତୋ କ୍ୟା କରେଗା ?

ନତାଇ ଏଥରକ କହିଲା—ତମେ ପାଗଳ ହେଲ ରାଜନ୍ ! ବାହା ହେଇକରି ଶେଷକୁ ବିପଦରେ ପଡ଼ିବି ? ଆମ ଜାତିର ଝିଅ କଣ କେବେ ବାହାଘରର ମର୍ମ ବୁଝେ ? ଖାଲି କଟର୍-କଟର୍ କରିବ ଦିନ ନାହିଁ ରାତି ନାହିଁ । ତା ଛଡ଼ା ଯେମିତି ମନେକଲେ ···କଥାଟା ଶେଷ କରିବା ପୂର୍ବରୁ ଇ ନତାଇ ଫିକ୍ କରି ହସିଦେଲା ।

ଭୃରୁ ନଚାଇ ରାଜା ପଚାରିଲା—ଇ କ୍ୟା ବାତ୍ ଓସ୍ତାଦ୍ ? ଫିକ୍ କରକେ ହଁସତା କୈଁୟା ?

—ହସିବିନି ? ମନେକଲେ, ଯେମିତି ମନ ଲାଖି କନିଆଁ ବା କୁଆଡ଼ୁ ମିଳିବ ହେ !

—ବେଶ୍ ମୃଦୁ ହସି ନତାଇ କହିଲା—ଆମେସବୁ ହେଲୁ କବୟାଳ ଲୋକ । ଆମର ଆଖି ତ ଆଉ ଯେଉଁଠି ପାରେ ସେଠି ଲାଖିବ ନାହିଁ ରାଜନ୍ !

ରାଜା ଏଥର ହସି ହସି ଗଡ଼ିଗଲା । ରାଜାର ଠୋ-ଠୋ ହସ ଉଠୁଚି ଓ ବସୁଚି । ରାଜାର ସେ ହସଟା କିନ୍ତୁ ହଠାତ୍ ପୁଣି ବନ୍ଦ ହୋଇଗଲା । ଗମ୍ଭୀର ହୋଇ ସେ ବାରମ୍ବାର ମୁଣ୍ଡ ହଲାଇ ଜାଣି ସେଇ ସତ୍ୟକୁ ସ୍ୱୀକାର୍ କରିନେଇ କହିଲା—ଠିକ୍ ବାତ୍ ଓସ୍ତାଦ୍, ଠିକ୍ ବାତ୍ ବୋଲା ହୈ ଭାଇ । ଲଢ଼ାଇ ମେ ଗୋସ୍ସା, ଦେଖୋ, ଆ-ହା-ହା ଏକଦମ୍ ଫୁଲ୍ କେ ମାଫିକ୍ ଜନାନା । ଇରାନୀ ଦେଖା ହୈ, ଓସ୍ତାଦ୍, ଇରାନୀ ? ଐସା, ଲେକିନ୍ ଉସ୍‌ସେ ଡାଙ୍ଗା ।

ରାଜାର କଥାତକ ସରିଗଲା, କିନ୍ତୁ ସ୍ମୃତିର ଛବି ସରିଲା ନାହିଁ । ସେ ଉଦାସ ଦୃଷ୍ଟିରେ ଝରକା ଭିତର ଦେଇ ଚାହିଁରହିଲା ବିସ୍ତୀର୍ଣ୍ଣ କୃଷିକ୍ଷେତ୍ର ଆଡ଼କୁ । ଯେପରି ବିସ୍ଫୋରର ସେହି ରୂପସୀମାନଙ୍କର ଶୋଭା—ସେହି ଉଦୁଉଦିଆ କୃଷିକ୍ଷେତ୍ର ଉପରେ ଭାସି ଉଠିଅଛି । ନିତାଇ ବି ଚାହିଁଥିଲା ଝରକା ଭିତର ଦେଇ, ରେଲଲାଇନ୍‌ର ସମାନ୍ତରାଳ ଶାଣିତ ଦୀପ୍ତ ଦୀର୍ଘ ରେଖା ଦୁଇଟି ଯୋଉଠି ବାଙ୍କ ପାଖରେ ଗୋଟିଏ ବିନ୍ଦୁରେ ଏକ ହୋଇ ମିଳିଯାଇଛି, ସେହି ବିନ୍ଦୁଟି ଆଡ଼କୁ । ସହସା କେତେବେଳେ ସେହି ବିନ୍ଦୁଟି ଉପରେ ଜାଗିଉଠିଲା ଚଳନ୍ତ କାଶତଣ୍ଡୀ ଫୁଲପରି ଗୋଟିଏ ରେଖା—ରେଖାଟି ମଥାରେ ଗୋଟିଏ ସ୍ୱର୍ଣ୍ଣବିନ୍ଦୁ ଯେପରି ଝକମକ କରି ଜଳିଉଠୁଛି କ୍ଷଣେ କ୍ଷଣେ, ଚକିତରେ ଯେପରି ଗୋଟିଏ ଛଟା ଛୁଟିଆସୁଅଛି ।

ସେମାନଙ୍କର ଏହି ନିସ୍ତବ୍ଧତା ଭଙ୍ଗ କଲା ରାଜାର ସ୍ତ୍ରୀର ଉଚ୍ଚକଣ୍ଠ । ରାଜାର ସ୍ତ୍ରୀ ଚିତ୍କାର କରୁଅଛି । ରାଜା ଏଠାରେ ବସି ଗପ ମାରୁଛି; ସେ ତେଣୁ ନିଜର ଭାଗ୍ୟକୁ ଉପଲକ୍ଷ କରି, ରାଜାକୁ ଲକ୍ଷ୍ୟକରି ବଚ୍ଛା ବଚ୍ଛା ଶାଣିତ ବାକ୍ୟବାଣ ନିକ୍ଷେପ କରୁଅଛି ।

—ଛିରେ, ଛିରେ ମୋର ପୋଡ଼ା କପାଳ ! ସକାଳୁ ଦିପହରଯାକେ ମଣିପଟାର ଘର ବଲି ମନେପଡ଼େ ନାହିଁ । ମୋ ନିଆଁ ଲଗା କପାଳଲିଖନକୁ ଠେଲିମାରି ଭାଙ୍ଗି ଚୂନା କରିବି ମୁଁ ।

ରାଜାର ମୁହଁଟା ଭୀଷଣ ହୋଇଉଠିଲା । ସେ ଉଠିପଡ଼ିଲା । ନିତାଇ ଶଙ୍କିତ ହୋଇ କହିଲା—କୁଆଡ଼େ ଯାଉଛ ?

—ଆତା ହେ । ଅଭି ଆତା ହେ । ସେ ଚାଲିଗଲା ।

—ରାଜନ୍ ! ରାଜନ୍ ! ନିତାଇ ପଛେ ପଛେ ଆସି ଦୁଆରେ ଠିଆହୋଇ ରହିଲା । କିଛିବେଳ ଉତ୍ତାରୁ ରାଜା ଫେରିଲା ସେଇମିତି ଠୋ-ଠୋ କରି ହସି ହସି । ହସି ହସି ସେ ତଳେ ଶୋଇପଡ଼ିଲା । ନିତାଇ ପଚାରିଲା—କଣ ହେଲା ।

ରାଜାର ହସରେ କ୍ଷଣକର ଛେଦ ବି ପଡ଼ୁନାହିଁ ଏବଂ ଏପରି ଲମ୍ବା ହସ ଭିତରେ କଥା ବି କୁହାଯାଇପାରେନା । ତଥାପି ବହୁ କଷ୍ଟରେ ରାଜା କହିଲା—ଭାଗା ହୈ । ମୈଦାନ ମେଁ— । ସଙ୍ଗେ ସଙ୍ଗେ ସେହି ଉତ୍କଟ ଉଚ୍ଚହାସ୍ୟ ।

ନିତାଇ ବୁଝିଲା । ଗାଳିଗୁଲଜ-ମୁଖରା ରାଜାର ସ୍ତ୍ରୀ ରୁଦ୍ରମୂର୍ତ୍ତିରେ ରାଜାକୁ ଆସୁଥିବାର ଦେଖିକରି ବିପରୀତ ଆଡ଼ର ଦରଜା ଦେଇ ବାହାରି ଧାଇଁପଳାଇଛି । ରାଜା ହଠ

ଠିଆହୋଇ, ଫେରି ଝୁଲିବାର ଅଭିନୟ କରି କହିଲା—ଏଇସା କରକେ ଦେଖତା; ହମ୍ ଏକ ପାଉଣ୍ଡ ଗିୟା ତୋ ଫିନ୍ ଦୌଡ଼ ଲଗୟା । ଅର୍ଥାତ୍ ରାଜାକୁ ପାଉଣ୍ଡେ ଅଗ୍ରସର ହେବାର ଦେଖିକରି ସେ ଦଉଡ଼ ଲଗାଇଛି, ଆଉରି କିଛି ଦୂର ଯାଇ ଫେରି କରି ଅନାଇଛି । ସଙ୍ଗେ ସଙ୍ଗେ ରାଜା ଆଉ ପାଉଣ୍ଡେ ବଢ଼ାଇଛି, ଦଉଡ଼ିକରି ଯିବାର ଭଙ୍ଗି କରିଅଛି । ବସ୍, ରାଜାର ସ୍ତ୍ରୀ ବି ଦେ ଦଉଡ଼ । ରାଜାର ବଧାକୁ ତାର ପ୍ରାଣେ ଭୟ । କହୁ କହୁ ରାଜା ପୁଣି ହସି ହସି ଲୋଟିଗଲା ।

ଏହି ମୁହୂର୍ତ୍ତଟିରେ ଘର ଭିତରେ ଆସି ପ୍ରବେଶ କଲା ସେଇ ଠାକୁରାଣୀ । ପିନ୍ଧିଛି ସେହି ଖାରରେ ଧୂଆ ଧୋବ ମୋଟା ସୂତାର ଅଣଓସାରିଆ ଲୁଗା, ମୁଣ୍ଡରେ ପରିଷ୍କାର ମଜା ପିତଳ ଥାଳ । ଦିପହରର ଖରାରେ ସେଇଟି ସୁନାପରି ଝକମକ କରୁଅଛି ।

ନତାଇ ସାଦରରେ ଆହ୍ୱାନ କଲା—ଆସ ଠାକୁରାଣୀ, ଆସ !

ଠାକୁରାଣୀ ରାଜାକୁ ଏପରିଭାବରେ ହସୁଥିବାର ଦେଖି ବିପୁଳ କୌତୁକ ଅନୁଭବ କଲା । ସକୌତୁକ ସେ ରାଜା ଆଡ଼କୁ ଆଙ୍ଗୁଠି ଦେଖାଇ ନତାଇକୁ ପଚାରିଲା ତାର ସ୍ୱଭାବଗତ ବଚନଭଙ୍ଗିରେ—ଏଇ, ଏଇ, ଭେଣେଇ ଏମିତି ହସୁଚି କାହିଁକି ମ ?

—ପଚାରୁନା ଭେଣେଇକି । ନତାଇ ହସିଲା ।

—ଏଇ ! ଆରେ ! ମାଆ ଲୋ କି ହସ ! ଏମିତି ହସୁଚୁ କାହିଁକି ରେ ଭେଣେଇ । ସଙ୍ଗେ ସଙ୍ଗେ ହସର ଛୁଆଁ ରୋଗ ତା ଦେହରେ ଲାଗିଗଲା । ସିଏ ବି ହସିବାକୁ ଆରମ୍ଭ କଲା—ହି-ହି-ହି ! ଅତ୍ୟନ୍ତ ମୃଦୁ ଧାତବ-ଝଙ୍କାର ପରି ହସ ।

ରାଜାର ହସ ହଠାତ୍ ବନ୍ଦ ହୋଇଗଲା । ତା ଆଡ଼କୁ ଆଙ୍ଗୁଠି ଦେଖାଇ ହସିବା ଫଳରେ ସେ ଖୁବ୍ ରାଗିଯାଇଛି । ତାର ମନେହେଲା ଟୋକୀଟା ତାକୁ ବ୍ୟଙ୍ଗ କରୁଛି ପରି । ଭୀଷଣ ରାଗିଯାଇ ରାଜା ଧମକ ଦେଇ କହିଲା—ଆଓ !

ଧମକ ଖାଇଲାରୁ ଝିଅଟାର ହସ ବଦଳିଗଲା ।

ରାଜା କହିଲା—ଆଲକାଝା ପରି ରଙ୍ଗ, ଧଳା ଦାନ୍ତ ନେଫେଡ଼ି କରି ହସୁଛି କେମିତି ଦେଖ । ଲାଜ ନାହିଁ କି ତୋର ?

ଏଥରକ ଝିଅଟା ଯେମିତି ମାଡ଼ ଖାଇ ସ୍ତବ୍ଧ ହୋଇଗଲା । କିଛିକ୍ଷଣ ସ୍ତବ୍ଧ ରହି ଅତି ବେଶୀ ବ୍ୟସ୍ତତା ପ୍ରକାଶ କରି ସେ କହିଲା—ନିଅ ବାବୁ, ଦୁଧ ନିଅ ! ମୋର ଡେରି ହୋଇଯାଉଛି । ଗିରସ୍ତ ବକିବ ।

ରାଜା କହିଲା—ତତେ ବି ଦିନେ ଠେଙ୍ଗେଣି ଦବାକୁ ହବ ଜଣାଯାଉଛି । ଅପା ବାଗିଆ ବଲେ ବଲେ— । ପୁଣି ସେ ହସିବାକୁ ଆରମ୍ଭ କଲା ।

ଠାକୁରାଣୀ କିନ୍ତୁ ଏଥରକ ହସିଲାନି । ସେ ନୀରବରେ ନତମୁଖରେ ଥାଳରୁ ମାପ-

ଗିଲାସରେ ଦୁଧ ଢାଳି ଗିଲାସଟି ପରିପୂର୍ଣ୍ଣ କରି ଧରି ପୁଣି ତାଗିଦା ମାରିଲା—କାହିଁ କରେଇ କାହିଁ, ଦେଖାଅ ।

ନିତାଇ ବ୍ୟସ୍ତ ହୋଇ ଦୁଧ କରେଇଟା ଥୋଇ ଦେଇ କହିଲା—ରାଗିଲ କି ଠାକୁରାଣୀ ? ନା-ନା, ରାଗ କରିବନି ।

ଠାକୁରାଣୀ କିଛି ଜବାବ୍ ଦେଲେନି, ମାପି ଦୁଧ ଢାଳି ଦେଇ ସେ ନୀରବରେଇ ଚାଲି ଗଲା । ପଛରୁ ରାଜା ଏଥର ଅଟ୍ଟା କରି କହିଲା—ଓଃ ! ଠାକୁରାଣୀ ମୋର ଡାକଗାଡ଼ି ବାହାରିଗଲା । ବାବା ରେ, ବାବା ରେ, ଗାଡ଼ି ଚାଲିଲା । ପୁଁ —ଭସ୍—ଭସ୍—ଭସ୍—ଭସ୍ । ବାବା ରେ !

ଠାକୁରାଣୀ କିନ୍ତୁ ଥରେ ଫେରି ଚାହିଁଲେନି ।

ନିତାଇ କହିଲା—ନା ରାଜନ୍ ! ଏପ୍ରକାର କଥା କହିବାଟା ତମର ଉଚିତ ହେଲା ନାହିଁ ।

କିନ୍ତୁ ରାଜା ସେ କଥା ସ୍ୱୀକାର କଲାନାହିଁ । କାହିଁକି ଅନୁଚିତ ? ସେ ଫୁତ୍କାର ଦେଇ ଆପଣାର ଅନ୍ୟାୟଟା ଉଡ଼େଇ ଦେଲା—ଧେତ୍ !

ସାଙ୍ଗେ ସାଙ୍ଗେ ସେ ଉଠିପଡ଼ିଲା । ଦେଢ଼ଟା ବେଳର ଗାଡ଼ିର ଘଣ୍ଟା ଟା ଦବାକୁ ହବ । ଏଇ ସମୟଟି ନିର୍ଣ୍ଣୟ କରିବାଲାଗି ଠାକୁରାଣୀ ତାର ସିଗ୍ନ୍ୟାଲ୍ । ଠାକୁରାଣୀ ଦୁଧ ଦେଇ ଗ୍ରାମକୁ ଗଲେଇ ସେ ଷ୍ଟେସନ ଆଡ଼କୁ ବାହାରି ପଡ଼ିବ; ଅଧବାଟରୁ ଶୁଣିବାକୁ ପାଏ ଷ୍ଟେସନମାଷ୍ଟର ଡାକୁଛି—ରାଜା !

ରାଜା ନିତି ଜବାବ୍ ଦିଏ; ଆଜି ବି ଦେଲା—ହାଜିର ହେ ହଜୁର୍ ।

ଠାକୁରାଣୀ ଓ ରାଜନ ଦୁହେଁଯାକ ଚାଲିଗଲେ । ନିତାଇ ଟିକିଏ ବିଷଣ୍ଣ ମନରେଇ ବସିରହିଲା । ନା-ନା, ଏମିତି କରି ଏଇ ମିଠା ସ୍ୱଭାବରେ ଝିଅଟାକୁ ରାଜନର ଏମିତିକା କଟୁ କଥା କହିବାଟା ଉଚିତ ହେଲାନି । ସଂସାରରେ ସୁଖ ହଉଛି ପ୍ରେମରେ, ମିଠା କଥାରେ । କାଲି ରାତିରେ ଗାଇଥିବା ଗୀତଟି ପୁଣି ଥରେ ତାର ମନେ ପଡ଼ିଗଲା—

"ମୁଁ ଭଲପାଇ ଏଇ ଜାଣିଛି
ସୁଖର ସାର ସେ ନୟନଜଳେ ରେ ।"

ଗୋଟାଏ ଦୀର୍ଘନିଃଶ୍ୱାସ ପକାଇ ସେ ଉଠି ଠିଆହେଲା । ଠାକୁରଝୀ ଦୁଧ ଦେଇଯାଇଛୁ, ଚୁହା ଖାଇବାକୁ ପଡ଼ିବ । ସେ ଚୁଲି ଲଗାଇବାକୁ ବସିଲା । ଦୋକାନୀ ବେନେ ମାତୁଳର ମାପଚୁପ ଚୁହାରେ ତାର ନିଶା ହୁଏନା; ତା ଛଡ଼ା ଦେହଟା ବି ଭଲ ନାହିଁ ଆଜି । ଗତ ରାତିର ପରିଶ୍ରମ, ଉତ୍ତେଜନା, ଅନିଦ୍ରାରେ ଆଜି ଯେପରି ଅବସାଦରେ ଦେହଟା ଭାଙ୍ଗି ପଡ଼ୁଛି । ମୁଣ୍ଡ ଝିମ୍‌ଝିମ୍ କରୁଛି । କାନ ଭିତରେ ଏଇଲା ବି ଢୋଲ ଘଣ୍ଟାର ଶବ୍ଦ ପ୍ରତିଧ୍ୱନିତ ହେଉଅଛି । ଆଉ ଟିକିଏ ଚୁହା ନହେଲେ ନଚଳେ !

ଚୁଲିଟା ଲଗେଇ କେଟିଲିର ବଦଳରେ ଗୋଟିଏ ମାଟିହାଣ୍ଡିରେ ସେ ପାଣି ବସାଇ ଦେଇ ନୀରବରେ ବସିରହିଲା । ତା ମନଟା ପୁଣି ଉଦାସିଆ ହୋଇଗଲା । ନାଃ, ରାଜନର ଏମିତିକା କଟୁ କଥା କହିବାଟା ଭଲ ହୋଇନାହିଁ । ଠାକୁରଝୀ ଝିଅଟି ଖୁବ୍ ଭଲ । ଆଜି ସେ ଅନେକ କଥା ଅନର୍ଗଳ କହିଯାଇଥାନ୍ତା । କହିବାର ଥିଲା ଯେ ! ଗତ ରାତିର କବିଗାଉଣା ଶୁଣିକରି ଠାକୁରଝୀ ସ୍ୱବଶ ସ୍ୱରେ କେତେ କଥା କହିଥାନ୍ତା । ଝିଅଟି ଅତ୍ୟନ୍ତ ଦୁଃଖ ପାଇଛି; ତେଣୁ ସେ କଥାଗୁଡ଼ାକ ନ କହିକରି ଚାଲିଗଲା । "ଆଲକାତରା ପରି ରଙ୍ଗ— ।" ଛିଃ, ଏମିତି କଥା କଣ କିଏ କହେ ? କାଳି ? ସେ ଝିଅ କାଳି ? ରାଜନର ଆଖି ନାହିଁ । ତା ଛଡ଼ା କଳା କଣ ମନ୍ଦ ! କୃଷ୍ଣ କଳା, କୋକିଳ କଳା, ବାଳ କଳା—ଆହା ହା ! ଆହା-ହା, ବଡ଼ ସୁନ୍ଦର ବଡ଼ ବଢ଼ିଆ ଗୋଟିଏ ପଦ ମନକୁ ଆସିଯାଇଛି ରେ ! ହାଯ଼ୁ, ହାଯ଼ୁ, ହାଯ଼ୁ !

"କଳା ଯେବେ ମନ୍ଦ ତେବେ କେଶ ପାଚିଲେ କାନ୍ଦ କିଆଁ ?
କିଆଁ କାନ୍ଦ ?"

## ଛଅ

ବଡ଼ ବଢ଼ିଆ ପଦଟି ହୋଇଛି । ନିତାଇର ନିଜର ନିଶା ଲାଗିଗଲା ।—

"କଳା ଯଦି ମନ୍ଦ ତେବେ କେଶ ପାଚିଲେ କାନ୍ଦ କିଆଁ ?"

ବାହାବା, ବାହାବା, ବାହାବା ! କିଆଁ କାନ୍ଦ ?

ତେଣେ ଚାହାପାଣି ଗବଗବ କରି ଫୁଟିଲାଣି । ବ୍ୟସ୍ତ ହୋଇ ନିତାଇ ଫୁଟନ୍ତା ପାଣିର ହାଣ୍ଡିଟା ଓହ୍ଲାଇ ଚାହା ପକାଇ ଗୋଟାଏ କଲେଇକରା ଲୁହା ଥାଳି ଘୋଡ଼ାଇଦେଲା । 'ଫୁଟନ୍ତା ପାଣିରେ ପ୍ରତ୍ୟେକ ଲୋକ ଲାଗି ଚାମୁଚେ ଚାହା ଦେଇ ପାଞ୍ଚ ମିନିଟ୍ ଅପେକ୍ଷା କରନ୍ତୁ ?' ବେନେ ମାମୁର ଷ୍ଟଲ୍‌ରେ ନିତାଇ ଚାହା ପ୍ରସ୍ତୁତ କରିବାର ବିଜ୍ଞାପନ ପଢ଼ିଅଛି । କିନ୍ତୁ ତା ପରେ କଣ ?

ଚାହା ଦେଇ ସେ ପୁଣି ମନକୁ ମନ ପଦଟା ଆଉଡ଼େଇବାକୁ ଆରମ୍ଭ କଲା । ଦ୍ୱିତୀୟ ଧାଡ଼ିଟା ଆଉ ମନୋମତ ହେଉନାହିଁ । ସେ ଝରକା ବାଟେ ବାହାରର ଯାବତୀୟ କଳା ବସ୍ତୁ ଆଡ଼କୁ ଚାହିଁ ରହିଲା; ତଥାପି ପସନ୍ଦ ହେଲାପରି ଦ୍ୱିତୀୟ ପଦ ମିଳିଲା ନାହିଁ । ଅନ୍ୟ ଦିନ ସେ ଗରମ ପାଣିରେ ଚାହା ଦେଇ ମନେ ମନେ ଏକରୁ ଷାଠିଏଯାକେ ପାଞ୍ଚ ଥର ଗଣିଯାଏ, ତା ପରେ ଦୁଧ ଚିନି ଦିଏ । ଆଜି ଆଉ ସେତିକି ହୋଇପାରିଲାନି । ଖାଲି ପଦଟା ଗୁଣୁ ଗୁଣୁ କରି ଆଉଡ଼ାଇ ମନେ ମନେ ଦ୍ୱିତୀୟ ପାଦ ଖୋଜି ଲାଗିଲା ସେ । କଲେଇକରା ଲୁହା ମଗରେ ଚାହା ନେଇ ବାକିଟା ରାଜା ଲାଗି ଢାଙ୍କି ରଖି ସେ ଆସି ବସିଲା କୃଷ୍ଣଚୂଡ଼ା ଗଛଟି ମୂଳେ । ଏଇଟି ତାର ବଡ଼ ପ୍ରିୟ ସ୍ଥାନ । ଘନ କଳା ସରୁ ସରୁ ପତ୍ରର ଛତା ପରି ଗଛଟି; ନିତାଇ କହେ "ଚିକ୍କଣଚିକ୍କଣ ପତ୍ର ।" ତହିଁକି ଯେତେବେଳେ ଚୈତ୍ରର ଶେଷଠାରୁ ମେଞ୍ଚା ମେଞ୍ଚା କରି ଲାଲ ଫୁଲରେ ସେ ଭରିଉଠେ, ସେତେବେଳେ ନିତାଇ ପ୍ରାୟ ଅହରହ ଏହି ଗଛଟି ମୂଳରେ ବସିଥାଏ । ଫୁଲ ଲୋଭରେ ପିଲେ ଆସନ୍ତି, ନିତାଇ ସେମାନଙ୍କୁ ଝଡ଼ିଥିବା ଫୁଲ ଦେଇ ବିଦା କରେ, ଗଛରେ ଚଢ଼ି ଫୁଲ ତୋଳିବାକୁ ଦିଏନା ।

ଷ୍ଟେସନରୁ ରାଜାର ଡାକହାକ ଶୁଣାଯାଉଛି । ଏଇ ଟ୍ରେନ୍‌ଟା ସାଙ୍ଗରେ ମାଲଗାଡ଼ି ଥାଏ, ଏଠିକାର ମାଲ୍ ଥିଲେ ଗାଡ଼ି କାଟି ଦେଇଯାଏ, ସେଇ ଗାଡ଼ି ସଣ୍ଟିଂ ହେଉଛି । ନିତାଇ ବି ଆଗେ ନିଯୁମିତ ଅନ୍ୟ କୁଲିଙ୍କ ସାଙ୍ଗରେ ମାଲଗାଡ଼ି ଠେଲୁଥିଲା । ହଠାତ୍ ତାର ମନର ଗୀତକୁ ପଛରେ ପକାଇ ଜାଗିଉଠିଲା ଜୀବିକାର ଭାବନା । କୁଲିଗିରି ସେ ଆଉ କରିବନି, ସେ କବିୟାଲ; କୁଲିଗିରି ନ କଲେ ଅନ୍ନ ଜୁଟିବ କେମିତି ଅବା ?

ଏଇ ଭାବନା ମଝିରେଇ ହଠାତ୍ ଆଖିରେ ପଡ଼ିଲା ଲଘୁ ଦ୍ରୁତ ଗମନରେ ଘନ ଘନ ପାଦ ପକାଇ ଧୋବଧାଉଳିଆ ମୋଟା ଲୁଗା ପିନ୍ଧି, ହାଲୁକା କାଶତଣ୍ଡୀ ଫୁଲ ପରି ଚୁଲିଚ ଠାକୁରଝୀ, ମୁଣ୍ଡରେ ସୁନାମୁକୁଟ ପରି ଚକ୍‌ମକ ପିତଳର ଡାଲି । ଠାକୁରଝୀର କଥା ବି ଯେମିତି ଦ୍ରୁତ, ଚାଲେ ବି ସେ ସେମିତି କ୍ଷିପ୍ରଗତିରେ । ସେ ଡେଙ୍ଗୀ ନୁହେଁ, ଅଥଚ ସରସ କଞ୍ଚା ବାଉଁଶର ଲଟି ପରି ଅଙ୍ଗପ୍ରତ୍ୟଙ୍ଗଗୁଡ଼ିକରେ ବେଶ୍ ଗୋଟିଏ

ଆଖିମଡାଣିଆଁ ଲମ୍ବା ଖୁବ ରହିଛି । ଏହି ଲମ୍ବ ଭଙ୍ଗିଟି ନିତାଇକୁ ସବୁଠାରୁ ଭଲ ଲଗେ । ଆଉ ଭଲ ଲଗେ ତାର କଳା କୋମଳ ଶ୍ରୀ । ଯେତେ ଥର ସେ ଠାକୁରଝିଙ୍କ ଦେଖେ, ସେତେଥର ଏଇ କଥାଗୁଡ଼ିକ ତାର ମନ ଭିତରେ ତରଙ୍ଗ ଉଠାଏ ।

ଠାକୁରଝି ଆଜି ଅତ୍ୟନ୍ତ ଦ୍ରୁତବେଗରେ ଚାଲୁଅଛି । ନିତାଇ ମନେ ମନେ ଟିକିଏ ହସିଲା—ତାକୁ ଦେଖିକରି ଠାକୁରଝି ଏପରି ଦୁମ-ଦୁମ କରି ଚାଲୁଅଛି । ଶକ୍ତି ଥିଲେ ଠାକୁରଝି ନିଶ୍ଚୟ ପୃଥିବୀ କମ୍ପାଇ ବାଟ ଚାଲୁଥାନ୍ତା । କିନ୍ତୁ ରାଜନର ଏପରି କଡ଼ା କଥାଟା କହିବା ଭଲ ହୋଇନାହିଁ । ଆଲକାତରା ଭଳିଆ ରଙ୍ଗ ହେଲେ ବି ଠାକୁରଝି ତ ମନ୍ଦ ନୁହେଁ ଦେଖିବାକୁ; ମନ୍ଦ କାହିଁକି, ବେଶ୍ ଭଲ । କଳା ରଙ୍ଗରେ କଣ ଯାଏ-ଆସେ ?

"କଳା ଯଦି ମନ୍ଦ ତେବେ କେଶ ପାଚଲେ କାନ୍ଦ କିଆଁ ?"

ନିତାଇ ଡାକିଲା—ଠାକୁରଝି, ଠାକୁରଝି ଲୋ ।

ଠାକୁରଝି ଖାତିର କଲାନି, ସେ ସେଇପରି ଦୁମ୍-ଦୁମ୍ କରି ଚାଲିବାକୁ ଲାଗିଲା ।

—ମୋ ରାଣ ! ନିତାଇ ପାଟିକରି କହିଲା ।

ଠାକୁରଝି ଅମକି ଛିଡ଼ାହେଲା ।

ମିଠା ସରୁ କଣ୍ଠରେ ଦ୍ରୁତ ଭଙ୍ଗିରେ ଝଅଟି କହିଲା—ନା, ମୋର ଡେରି ହେଇଯିବ ।

—ଗୋଟାଏ କଥା । ଶୁଣ, ଶୁଣ ।

—ନା । ସେଇଠୁ କୁହ !

—ମୋ ରାଣ ।

ଅତ୍ୟନ୍ତ ଦ୍ରୁତ ଗତିରେ ଠାକୁରଝି ଏଥରକ ଆଗେଇ ଆସି ନିତାଇର ସାମନାରେ ଠିଆହୋଇ କହିଲା—ତମ ରାଣ ଯଦି ମୁଁ ନ ମାନେ ?

—ନ ମାନିଲେ ମନରେ ଦୁଃଖ ପାଇବି, ଆଉ କଣ ହବ ଠାକୁରଝି ! ନିତାଇ ଛଳନା କରି କହୁ ନଥିଲା; କଥାରେ ବେଶ୍ ଆନ୍ତରିକତା ଥିଲା ।

ଅପେକ୍ଷାକୃତ ଶାନ୍ତ ସ୍ୱରରେ ଝି ଏଥର ଝିଅଟି କହିଲା—ଦିଅ, ଏଥର କଣ କହିବାର କହ ।

ତା ମୁହଁକୁ ଚାହିଁ ମିଠା ହସ ହସି ନିତାଇ କହିଲା—ରାଗିଛ ?

ମୁହୂର୍ତ୍ତିକରେ ଠାକୁରଝିର ଭୀରୁ ଚକିତ ଦୃଷ୍ଟିଭରା ଆଖି ଦୁଇଟି ସଜଳ ହୋଇ ଉଠିଲା । କିନ୍ତୁ ସେ ଉଦ୍ଦୀପ୍ତ କଣ୍ଠରେ କହିଲା—ମୁଁ ତ କାଳି; ମୋ ଘରେ ମୁଁ ଅଛି, କିଏ ମତେ ଝୋଟିକ ପୋଷାକ ଦଉଚ ନା କଣ ?

ନିତାଇ ହସିକରି କହିଲା—ମୁଁ କିନ୍ତୁ କଳାକୁ ଭଲପାଏ ଠାକୁରଝି ! ଠାକୁରଝି ମୁହଁର କଳା ରଙ୍ଗରେ ଲାଜ ଆଭା ଦେଖାଯାଏନା, ତଥାପି ତାର ଲାଜର ଗାଢ଼ତା ବୁଝାପଡ଼େ । ନିତାଇ କିନ୍ତୁ ସେ କଥାକୁ ଖାତିର କଲାନି । ସେ ଗାଲରେ ହାତ ଦେଇ ମୃଦୁ ସ୍ୱରରେ ଗୀତ ଗାଇଲା—

"କଳା ଯଦି ମନ୍ଦ ତେବେ କେଶ ପାଚିଲେ କାନ୍ଦ କିଆଁ ?"

ଲଜ୍ଜିତା ଠାକୁରଝି ଏଥର ସବିସ୍ମୟେ ଶ୍ରଦ୍ଧାନ୍ୱିତ ଦୃଷ୍ଟିରେ ନିତାଇ ଆଡ଼କୁ ଚାହିଁଲା, କହିଲା—ନୂଆ ଗୀତ ? କହି ସେ ସଙ୍ଗେ ସଙ୍ଗେ କହିଲା—ବାଃ କିନ୍ତୁ ତମେ ଖୁବ୍ ଗାଉଣା କଲ, ହିଁ ।

—ଭଲ ଲାଗିଛି ତମକୁ ?

—ଖୁବ୍ ଭଲ ।

—ଆସ ଆସ, ଟିକେ ଚାହା ଅଛି—ପିଇବ ଆସ ।

— ନା ନା । ଠାକୁରଝିକୁ ଚାହା ଖାଇବାକୁ ଖୁବ୍ ଭଲଲାଗେ; କିନ୍ତୁ ମାଈକିନିଆ ଝିଅଙ୍କର ଭଲ ଲାଗିବା କଥାଟା କୁଆଡ଼େ କହିବା ମନା । ଛି !

ନିତାଇ ପୁଣି ଚାଣ ପକାଇଲା—ମୋ ଚାଣ । ନିତାଇ ବସା ଆଡ଼କୁ ଫେରିଲା । ରାଜନ ଲାଗି ଯୋଉ ଟିକକ ଚାହା ଗୁଣି ରଖିଥିଲା, ସେଇଟା ଚୂଲି ଉପରେ ବସାହୋଇ ରହିଥିଲା, ତାହାକୁ ଦୁଇଟା ପାତ୍ରରେ ଢାଳି ଗୋଟିଏ ଠାକୁରଝି ଆଡ଼କୁ ଆଗେଇ ଧରିଲା । ଝିଅଟି ପୁଣି ସଲଜ୍ଜଭାବରେ କହିଲା—ନା, ନା, ତମେ ଖାଅ ।

—ନା, ତା କମିତି ହବ । ତାହେଲେ ଜାଣିଚ, ତମେ ଏବେ ବି କ୍ରୋଧ କରି ରହିଛ ।

ଗିନାଟା ଟାଣିନେଇ ସକୌତୁକ ବିସ୍ମୟରେ ଠାକୁରଝି କହିଲା—କୋଧ କଣ ବା, କୋଧ ?

—ରାଗ । 'କ୍ରୋଧ' ମାନେ ହେଲା ଯାହାକୁ କହନ୍ତି ରାଗ । କରେ ରଫଲା 'ଓ' କାର, 'କ୍ରୋଧ' । 'ହିଂସା କ୍ରୋଧ ଅତି ମନ୍ଦ କେଭେଁ ନୁହେଁ ଭଲ' ବୁଝିଲ ଠାକୁରଝି ! କାହାରିକି ହିଂସା କରିବନି, ଆଉ କ୍ରୋଧ କରିବନି । କ୍ରୋଧର ନାମ ହେଉଛି ଚଣ୍ଡାଳ । ଗଭୀର ବିସ୍ମୟରେ ଝିଅଟି ନିତାଇ ଆଡ଼କୁ ଚାହିଁ ପଚାରିଲା—ଆଚ୍ଛା, ତମେ ଏତେ ସବୁ କୁଆଡ଼ୁ ଶିଖିଲ ?

ଗମ୍ଭୀରଭାବରେ ନିତାଇ ଉପରକୁ ଚାହିଁ ପରମ ତତ୍ତ୍ୱଜ୍ଞ ଭଳି ହିଁ କହିଲା—ଭଗବାନଙ୍କ ଲୀଳା ଠାକୁରଝି ! ତା ନଇଲେ କବିୟାଲ କରି ବି ସେ ମତେ 'ଡମ'-

କୁଳରେ ଜନମ ଦେଲେ କାହିଁକି କହ ?

ନୀରବ ବିସ୍ମୟରେ ମୂର୍ତ୍ତିମନ୍ତ ଶ୍ରଦ୍ଧା ପରି ଝିଅଟି କବିଯାଲ ଆଡ଼କୁ ଚାହିଁରହିଲା । ତାହାର ଆଖିରେ ଭାସୁଥିଲା—ଶତ ଶତ ଲୋକଙ୍କ ବିସ୍ମିତ ଦୃଷ୍ଟି-ସମ୍ମୁଖରେ ଏହି ଲୋକଟି ମୁହେଁ ମୁହେଁ ଚଉ ବାନ୍ଧି ଗାଇଯାଉଛି ।

ହଠାତ୍ ଗୋଟାଏ ଗଭୀର ଦୀର୍ଘନିଶ୍ୱାସ ପକାଇ ନିତାଇ କହିଲା—ସବୁ ତାଙ୍କର ଲୀଳା । ତା ନହେଲେ ସେ ମତେ ଅଷ୍ଟାକର କପିବର, ମାନେ ହନୁମାନ କହେ !

ଅକାତ ଉତ୍ତେଜନାରେ ଠାକୁରଝିର ଭ୍ରୂ ଦୁଇଟି କୁଞ୍ଚିତ ହୋଇଉଠିଲା । ସେ ପଚାରିଲା—କିଏ ? କିଏସେ ? କିଏ ?

ପୁଣି ଗୋଟାଏ ଦୀର୍ଘନିଶ୍ୱାସ ପକାଇ ନିତାଇ କହିଲା—ସେ କଥା ଆଉ ଶୁଣି କଣଟା କରିବ କୁହ ? ନିଅ, ଗୁ ଖାଅ । ଥଣ୍ଡା ହୋଇଯାଉଛି ।

ଠାକୁରଝି ତାପରେ ପଛକୁ ବୁଲିବସିଲା । ଭଣେଇ ବା ନିତାଇ ଆଡ଼କୁ ମୁହଁକରି ସେ କେବେ କିଛି ଖାଏନା । ପଛକୁ ବୁଲିବସି ଖିଆ-ପିଆରେ ସେ ମୁହଁ ଲଗେଇ ଦେଇ କହିଲା—ନା, କହିବାକୁ ପଡ଼ିବ ତମକୁ । କିଏ ସେ, କିଏ ? ଭଣେଇ କି ? ଭଣେଇ ମାନେ ରାଜନ୍ ।

—ନା-ନା, ଠାକୁରଝି ! ରାଜନ ମୋର ପରମବନ୍ଧୁ, ବଡ଼ ଭଲ ଲୋକ ।

—ଭଲ ଲୋକ ନା ଆଉ କିଛି । ଯଉଁ ଟାଣ ଟାଣ କଥା ।

—ନା, ନା । ଆଜି ତମକୁ ସେଇ କଥାଟା ପରିହାସ କରି କହୁଛି । ତୁମେ ଶାଳୀ, ପରିହାସର ସମ୍ପର୍କ ।

—ପରିହାସ କଣ ମ ?

—ଅଛା, ଥଛା । ତମ ସାଙ୍ଗରେ ତ ଅଛାର ସମ୍ବନ୍ଧ ।

ଠାକୁରଝି ଚୁପ୍‌ହୋଇ ରହିଲା; ନିତାଇର କଥାଟା ସେ ମନେ ମନେ ସ୍ୱୀକାର କରି ନେଉଥିଲା । ଠାକୁରଝିର କୋମଳ କଳା ଆକୃତି ସାଙ୍ଗକୁ ତାର ପ୍ରକୃତିର ଗୋଟାଏ ଘନିଷ୍ଠ ଯୋଗ ରହିଛି, ସଙ୍ଗୀତ ସାଙ୍ଗରେ ସଙ୍ଗତ ପରି । କିଛିକ୍ଷଣ ପରେ ସେ କହିଲା—ସେଇ ଠିକ୍ । ଭଣେଇ ଆମର ରାଗୀ ହେଉ ପଛେ, ଲୋକଟା ଭଲ ।

—ଭାରି ଭଲ ଲୋକ ।

—କିନ୍ତୁ ତମକୁ ସେ କଥାଟା କିଏ କହିଲା, କହିବାକୁ ହବ । କିଏ ସେ ପୋଡ଼ାମୁହାଁ, କିଏ ସେ ?

—ଗାଳି ଦିଅନା ଠାକୁରଝି ! ଜାତିରେ ବ୍ରାହ୍ମଣ । ସେଇ ଯିଏ ବେନେ ମାତୁଳର ଦୋକାନରେ 'ଅଷ୍ଟବନ୍ଧ' ମୁନିପରି ବସିଥାଏ ଆଉ ବକର-ବକର ବକୁଥାଏ ? ସେଇ

ବିପ୍ରପଦ ବ୍ରାହ୍ମଣ ।

—କାହିଁକି ସେ ଏମିତି କଥା କହିବ ?

—ସେ କଥା ଛାଡ଼ । ଜାତିରେ ବ୍ରାହ୍ମଣ, ମୁଁ ଶ୍ରେଷ୍ଠଜାତି—କହିଲେ କହୁ ।

—ଓହୋ ଘର ତ ମୋର ବ୍ରାହ୍ମଣ । କାହିଁ, ଏମିତି ମୁହେଁ ମୁହେଁ ବାନ୍ଧିକରି ଗୀତ ଗାଉ ତ ଦେଖି ଥରେ···ଉତ୍ତେଜନାରେ ଠାକୁରଝିଅର ମୁଣ୍ଡରୁ ଲୁଗା ଖସି-ପଡ଼ିଲା ।

ନିତାଇ ମୁଗ୍ଧ କଣ୍ଠରେ କହିଉଠିଲା—ବା-ବା-ବା ! ଭାରି ଭଲ ମାନୁଚି ତ ଠାକୁରଝି !

ଠାକୁରଝିଅର ରୁକ୍ଷ କଳା ବାଳର ହୁଗୁଳା ଜୁଡ଼ାରେ ପେଞ୍ଚାଏ ନାଲି ଟହ-ଟହ କୃଷ୍ଣଚୂଡ଼ା ଫୁଲ । ଲଜ୍ଜାରେ ଝିଅଟି ସଚକିତା ହରିଣୀ ପରି ତାର ଖସିଯାଇଥିବା ଓଢ଼ଣାଟା କ୍ଷିପ୍ର ହସ୍ତରେ, ଦ୍ରୁତ-ଭଙ୍ଗିରେ ମଥାରେ ଦେବାକୁ ଚେଷ୍ଟା କଲା । କିନ୍ତୁ ନିତାଇ ଗୋଟାଏ କାଣ୍ଡ କରି ବସିଲା । ସେ ଖପକରି ହାତଟି ଧରି ବାଧା ଦେଇ କହିଲା—ଦେଖି ଦେଖି ! ବା-ବା-ବା ।

ଝିଅଟି ଲଜ୍ଜାରେ ଅଧୋମୁଖ ଓ କାନ୍ଦ କାନ୍ଦ ହୋଇଗଲା, କହିଲା—ଛାଡ଼ ଛାଡ଼ ।

ମୁହୂର୍ତ୍ତିକରେ ନିତାଇର କାଣ୍ଡଜ୍ଞାନ ଫେରିଆସିଲା । ସେ ତାକୁ ଛାଡ଼ିଦେଲା । ଛାଡ଼ ପାଇ ସଙ୍ଗେ ସଙ୍ଗେ ଝିଅଟି ଗୁହା-ଗିନାଟା ହାତରେ ଧରି ନତମୁଖ ହୋଇ ଛୁଟି ପଳାଇଗଲା—ଗିନାଟା ଧୋଇବା ବାହାନାରେ । ନିତାଇ ଲଜ୍ଜିତ, ସ୍ତବ୍ଧ ହୋଇ ନତମୁଖରେ ବସିରହିଲା ! ଛି ! ଛି ! ଛି ! ଏ କଣ କଲା ସେ ?

ଚୁପ୍‌କରି ସେ ବସିଥିଲା, ହଠାତ୍ ଠନ୍‌କରି ଶବ୍ଦରେ ସେ ମୁହଁ ଟେକି ଦେଖିଲା—ଠାକୁରଝି ଗିନାଟା ଥୋଇଦେଇ ନିଜର ଛାଳିଟି ଉଠାଇ ନେଇ ଚାଲିଯାଉଅଛି । ସେ ମୁହଁ ବୁଲାଇ ଚାହିଁଲା । ସଲଜ୍ଜ ହସରେ ଠାକୁରଝିଅର ପିଲାକିଆ ମୁହଁଟି ଝର୍ଣ୍ଣାର ଛଟାରେ କଞ୍ଚାପତ୍ର ପରି ଝଲମଲ ହୋଇଉଠିଛି । ଆଖିରେ ଆଖି ପଡ଼ିଲା ମାତ୍ରେ ଠାକୁରଝି ହସିକରି ଚଟ୍‌କରି ମୁହଁଟା ବୁଲାଇ ନେଲା, ସେଇ ବେଗରେ ତାର ପୁଣି ମୁଣ୍ଡରୁ ଓଢ଼ଣାଟା ଖସିଗଲା । ଠାକୁରଝି ଏଥର ଛୁଟିପଳାଇଲା, ଓଢ଼ଣା ନ ଦେଇ—ତାର ରୁକ୍ଷ କଳା ବାଳରେ ଲାଲ୍ କୃଷ୍ଣଚୂଡ଼ା ପଣପୂର୍ଣ୍ଣ ଗୌରବରେ ଆକାଶର ତାରା ପରି ଜଳୁଅଛି ।

ନାଃ, ଠାକୁରଝି ରାଗିନାହିଁ । ହେଇ ତ, ଯାଉଁ ଯାଉଁ ପୁଣି ବୁଲିପଡ଼ି ଚାହିଁ ହସୁଅଛି; କିନ୍ତୁ କଳା ବାଳରେ ରଙ୍ଗ କୃଷ୍ଣଚୂଡ଼ା ବଡ଼ ଚମତ୍କାର ମାନୁଅଛି ।

ଠାକୁରଝି କ୍ରମେ କ୍ରମେ ସ୍ୱର୍ଣ୍ଣବିନ୍ଦୁ କାଶତଣ୍ଡୀ ଫୁଲପରି ଶ୍ରେଷ୍ଠ ହୋଇ ପଥ-

ବାଙ୍କରେ ମିଳାଇଗଲା । ନିତାଇ ବସି ମନକୁ ମନ ମୁଣ୍ଡ ହଲାଇବାକୁ ଆରମ୍ଭ କଲା । ଦ୍ୱିତୀୟ ପାଦଟି ବି ତାହାର ମନକୁ ଆସିଅଛି—

"କଳା କେଶେ ଦେଖିଛ କି ରଙ୍ଗ-ଫୁଲ କମିଆଁ ?"

## ସାତ

କଳା କେଶରେ ରଙ୍ଗଫୁଲର ଶୋଭା ଦେଖି ଗୀତ ରଚନା କରି କବି ହୋଇହୁଏ, କିନ୍ତୁ ସେ ଶୋଭା ଦେଖି ଦେଖି ପଥ ଚାଲିବା ଚଳେନା । ନିତାଇ ସଡସଡକା ଗୋଟାଏ ମସ୍ତବଡ଼ ଝୁଣ୍ଟା ଖାଇଲା—ବିଷମ ଝୁଣ୍ଟା । ଗୋଡ଼ର ବୁଢ଼ା ଆଙ୍ଗୁଠିର ନଖଟାର ଚାରିକଡ଼ ଫାଟି ରକ୍ତ ବାହାରି ପଡ଼ିଲା । ସେ ସେଇ ଗୀତଟା ବୋଲି ବୋଲି ଚଣ୍ଡୀତଳାକୁ ଯାଉଥିଲା । ନିର୍ଜନ ପଥ—ବାଁ ହାତଟା ଗାଲ ଉପରେ ଥୋଇ ନିତାଇ ବେଶ୍ ଉଚ୍ଚ କଣ୍ଠରେଇ ଗୀତ ବୋଲି ଚାଲିଥିଲା—ମଝିରେ-ମଝିରେ ଡାହାଣ ହାତର ତର୍ଜନୀ ନିର୍ଦ୍ଦେଶ କରି ଯେପରି "କଳା କେଶେ ରଙ୍ଗ-ଫୁଲର" ଶୋଭାଟି କାହାକୁ ଦେଖାଇ ଦେଉଥାଏ, ଯେପରି ଦ୍ରୁତ ପଦରେ ଠାକୁରଝୀ ତାର ଆଗରେ ଚାଲିଅଛି ଏବଂ ତାହାର ରୁକ୍ଷ କଳା କେଶରେ ଲାଲ କୃଷ୍ଣଚୂଡ଼ାର ପେନ୍ଥାଟି ଝଲମଲ କରୁଅଛି ।

ହଠାତ୍ ଆଙ୍ଗୁଠିରେ ଝୁଣ୍ଟି ପଡ଼ି ସେ ବସିପଡ଼ିଲା । ଦୁର୍ବଳ ଦେହରେ ଚୋଟ ଖାଇ ମୁଣ୍ଡଟା ବୁଲେଇ ଦେଇଛି । ଏଇ କେଇ ଦିନ ହେଲା ନିତାଇ ବେଳାଏ ଖାଉଛି । ଉପାର୍ଜନ ନାହିଁ, ପୂର୍ବର ସଞ୍ଚୟ ଯାହା ରହିଛି, ତାହା ଅତି ସାମାନ୍ୟ; ସେ ସଞ୍ଚୟ ପୁଣି ଦୋକାନରେ ଲଗାଣ କରିବାକୁ ହବ । ସେଥିପାଇଁ ନିତାଇ ଓଳିଏ ଖାଇବା ବନ୍ଦ କରିଛି; ବିଲକୁଲ୍ ଉପରଓଳିଆ କରି ସେ ଏବେ କୋଉ ଦିନ ରାନ୍ଧେ ପାଏସ, କୋଉ ଦିନ ଖେଚେଡ଼ି * । କଥାଟା ସେ ରାଜାକୁ କହିନି, ଠାକୁରଝୀକୁ ବି କହିନି । ସେମାନେ

---

* ବଙ୍ଗଳାର 'ଖେଚେଡ଼ି' ଏକ ସାଧାରଣ ସୁପାଚ୍ୟ ଖାଦ୍ୟ; ଯାହାକି ପୂଜାଭୋଗ ଏବଂ ରୋଗୀପଥ୍ୟ ଭାବରେ ବ୍ୟବହୃତ ହୁଏ । ଅଧେ ଚାଉଳ ଅଧେ ଡାଲି ମିଶାଇ ଏହା ଏକ ଝୋଲଝୋଲିଆ ବସ୍ତୁ ।

ଜାଣିଲେ ଭୀଷଣ ଆପତ୍ତି କରିବେ । ରାଜା ହୁଏତ ପାଞ୍ଚସାତ ଟଙ୍କା ଝଣ୍‌ କରି ପକେଇ ଦେଇ କହିବ—ଚଲାଓ ନାବ, ବନାଓ ଖାନା, ଫିର୍‌ ଦରକାର ହୋନେ ସେ ଦେଗା ।

ରାଜା ପରି ସାଙ୍ଗ ଦେଖିବାକୁ ମିଳେନା । ଏଣେ ରାଜା ସତସତିକା ରାଜା । ବିପ୍ରପଦ ଯାହା ସବୁ ନାମ ତାକୁ ଦେଇଛୁ; ତାହାର ପ୍ରତ୍ୟେକ ନାମ ବର୍ତ୍ତମାନ ନିତାଇକୁ ପୀଡ଼ା ଦିଏ; କେବଳ ଗୋଟିଏ ବାଦ୍‌ ଦେଲେ—ସେ ନାମଟି ହେଉଛି ସଖିକବି, ରାଜାର ସଖିକବି । ରାଜା ପାଖରେ ତାର କୌଣସି ଲଜ୍ଜା ନାହିଁ; କିନ୍ତୁ ରାଜାର ସ୍ତ୍ରୀଟା ରାଣୀ ନୁହେଁ, ସେ ରାକ୍ଷସୀ । ବାପ୍‌ ରେ ବାପ୍‌ । ମାଇପିଟାର ଜିଭରେ କି ବିଷ ! ସର୍ବାଙ୍ଗରେ ଯେମିତି ନିଆଁ ଲଗାଇଦିଏ । ମିଲ୍‌ଟାରି ରାଜା ପାଞ୍ଚଣମାଡ଼ରେ ମାଇପିଟାର ପିଠିଟା କ୍ଷତବିକ୍ଷତ କରିଦିଏ—ତଥାପି ତାହାର ଜିଭ ବିଷ-ଉଦ୍‌ଗାର ଛାଡ଼େନାହିଁ; ସେ ପଡ଼ି ପଡ଼ି କାନ୍ଦେ ଓ ଅବିରାମ ଗାଳି ଦେଇଚାଲେ ।

ମର୍ମଚ୍ଛେଦୀ, ଜ୍ୱାଳାମୟୀ ନିଷ୍ଠୁର ଗାଳିମନ୍ଦ । ପୃଥିବୀ ଉପରେ ବି ତାର ଆକ୍ରୋଶ, ମଝିରେ ମଝିରେ ଟ୍ରେନକୁ ବି ସେ ଅଭିସମ୍ପାତ ଦିଏ । ଟ୍ରେନ୍‌ ବେଳେ ରାଜା ଡିଉଟି ଦେବାକୁ ଗଲେ ଯଦି ତାର ରାଜାକୁ ଦରକାର ହୁଏ, ତେବେ ସେ ଷ୍ଟେସନ-ମାଷ୍ଟରଠାରୁ ଆରମ୍ଭ କରି ଗାର୍ଡ, ଟ୍ରେନ୍‌, ସମସ୍ତଙ୍କୁ ବହୁ ଗାଳିଗୁଲଜ ଦବାକୁ ଆରମ୍ଭ କରେ । ସେଇ ଗାଳିଗୁଲଜଗୁଡ଼ିକ ସ୍ମରଣ କରି ନିତାଇ ଦୁଃଖ ଭିତରେ ବି ହସିପକେଇଲା । ରାଜାର ମାଇପର ଗାଳିଗୁଲଜର ବାନ୍ଧୁଣୀଟା ବଡ଼ ଚମତ୍କାର; କବିୟାଲମାନେ ବି ଏପରି ଚମତ୍କାର ପଦ ବାନ୍ଧି ଗାଳିଗୁଲଜ ଦେଇ ପାରିବେ ନାହିଁ । କାଲି ଟ୍ରେନ୍‌ଟାକୁ ଅଭିସମ୍ପାତ ଦେଉଥିଲା—ପୋଲ ଭାଙ୍ଗି ପଡ଼ି ଯମ ଘରକୁ ଯା; ଯେଉଁ ନିଆଁ ଧାସରେ 'ହଙ୍କଡ଼' 'ହଙ୍କଡ଼' ଚାଲୁଛୁ, ସେଇ ନିଆଁ ଧାସରେ ଅଙ୍ଗ ତୋର ଖଣ୍ଡ ଖଣ୍ଡ ହୋଇ ତରଲି ଯାଉ; ଯେଉଁ ଚକରେ ଗଡ଼ି ଗଡ଼ି ଯାଉ ସେଇ ଚକ ମଡ଼ମଡ଼ କରି ଭାଙ୍ଗି ଚୂନା ହେଇଯାଉ; ଯୋଉ କାହାଲୀରେ ଚିଲପରି ଚିଲଉଥାଉ ସେଇ କାହାଲୀ-ଗଳା ତୋର ଚିରି ଚିରିଖଣ୍ଡ ହଉ; ତୁ ଓଲଟିଯା, ଭାଙ୍ଗିଯା, ନରକକୁ ଯା । ବାଃ ସାବାସ୍‌ । ମହାଦେବର ସେଇ 'ଖତଗଦାର ଅଇଣ୍ଠା ପତର' ସ୍ତ୍ରୀ ପାଖରେ ତିଷ୍ଠି ପାରିବ ନା ?

ରାଜା ଅବସର ପାଇଲେଇ ନିତାଇ ପାଖରେ ଆସି ବସେ; ତେଣୁ ତାର ଆକ୍ରୋଶଟା ନିତାଇ ଉପରେ ଟିକିଏ ବେଶୀ । ରାଜାର ଅନୁପସ୍ଥିତିରେ ନିତାଇକୁ ଶୁଣାଇ ଶୁଣାଇ କେଉଁ ଅନାମୀ ବ୍ୟକ୍ତିକୁ ଗାଳିଗୁଲଜ କରେ । ସେ ହସେ । ରାଜାର ଆର୍ଥିକ ସାହାଯ୍ୟ ଆଉ କୌଣସିମତେ ନେବା ଚଳିବ ନାହିଁ । ରାଜା ଦେବାକୁ ବି ଛାଡ଼ିବନି, ଲୁଚିଛପି କରିବନି ଏବଂ ରାଣୀ ଜାଣିପାରିବ । ସେ ଜାଣିପାରିଲେ ଆଉ ରକ୍ଷାରକ୍ଷଣ ରହିବନି । କାଲି ଗୋଟାଏ କାଣ୍ଡ ହୋଇଯାଇଛି—ଠାକୁରଝିର ଚାହା ଖାଇବାଟା ରାଣୀ ଦେଖି-

ନେଇଛୁ । ଗୁହା ଖାଉଁ ଖାଉଁ ନଟାଇର ହସକଥା ଶୁଣି ଠାକୁରଝୀ ଖିଲ୍‌ଖିଲ୍ କରି ହସି ଉଠିଥିଲା । ରାଜାର ମାଇପ ବୋଧେ କୋଉଠିକି ଯାଉଥିଲା । ସେବାଟେ ହସର ଶବ୍ଦ ଶୁଣି ସେ ଭୃଙ୍ଗି କରି ସେ ଦୁହିଁଙ୍କୁ ଏକାଠି ଦେଖି ସଙ୍ଗେ ସଙ୍ଗେ ମୁହଁ ଫେରାଇ ନେଇ ଚାଲିଯାଇଥିଲା । ବିଚରା ଠାକୁରଝୀ କ୍ଷଣକେ ଯେମିତି ଶୁଖି କଳାକାଠ ହୋଇଗଲା; ତାହା ସଙ୍ଗେ ନଟାଇ ବି । ପରେ ପରେ ଘର ବାହାରେ ରାଜାର ସ୍ତ୍ରୀର ଶ୍ଳେଷ ତୀକ୍ଷ୍ଣ କଣ୍ଠ ବାଜିଉଠିଥିଲା—

"ଆଉ ତୁ ହସନା—ହସନା ଲୋ କାଳମୁହାଁ,
ଲଜେ ମଲି ଦଉଡ଼ିଦେଲି—ତତେ ଲାଜ ମାଡ଼ୁ ନାହିଁ ?"

ଠାକୁରଝୀର ଲୁ-ଖିଆ ଆଉ ହେଲା ନାହିଁ । ଗୁ ଅଣ୍ଡା ହେଇଯାଇଥିଲା, ଅଣ୍ଡା ଗୁ ରଖିଦେଇ ସେ ତାଲେ ଅଣ୍ଟା ପାଣି ପିଇକରି ଯାଇ ଘରକୁ ଫେରିଥିଲା ।

ଝଂଝାର ଧକ୍‌କାଟା ସମ୍ଭାଳି ନେଇ ନଟାଇ କୌଣସି ପ୍ରକାରେ ଚଣ୍ଡୀତଳା ଆସି ପହଞ୍ଚିଲା । ଚଣ୍ଡୀ ମା'ଙ୍କୁ ନମସ୍କାର କରି ସେ ମହନ୍ତଙ୍କ ଆଗରେ ହାତଯୋଡ଼ି ଠିଆହେଲା ।

ମହନ୍ତ ସସ୍ନେହରେଇ କହିଲେ—ଆସ, ଜବସ୍ଥାଲ ନଟାଇଚରଣ, ଆସ ।

ନଟାଇ କୃତାର୍ଥ ହୋଇଗଲା । ସେ ମହନ୍ତଙ୍କୁ ପ୍ରଣାମ କଲା ।

—ଜୟୋଽସ୍ତୁ ! ଆଉ ସବୁ ଖବର କଣ ?

— ଆଜ୍ଞା ପ୍ରଭୁ, ମୋତେ ମେଡ଼େଲ୍ ଦେବ କହିଥିଲେ !

—ମେଡ଼େଲ୍ !

—ଆଜ୍ଞା ହଁ ।

—ଆଚ୍ଛା, ତା ହବ । ପାଇବୁ । ମହନ୍ତ ଅକସ୍ମାତ୍ ଉଦାସୀନ ହୋଇପଡ଼ିଲେ । ସହସା ଚଣ୍ଡୀ ଦେବତାଙ୍କ ମହିମା ଉପଲବ୍ଧି କରି ଗମ୍ଭୀର କଣ୍ଠରେ ଡାକିଉଠିଲେ—କାଳୀ କୈବଲ୍ୟଦାୟିନୀ ମା !

ନଟାଇ ଚୁପ୍ କରି କିଛି ବେଳ ବସିରହିଲା । ଏପରି ଭାବାବେଶରେ ମହନ୍ତଙ୍କୁ ଆଉ ସେ ବିରକ୍ତ କରିବାକୁ ସାହସ କଲା ନାହିଁ । କିଛି କାଳ ପରେ ତେବେଣି ଚଣ୍ଡୀଙ୍କ ଗାଦୀ ପାଖରୁ ଗୋଟାଏ ଶବ୍ଦ ଆସିଲା—ଠଂ ।

ମହନ୍ତ ମୁହୂର୍ତ୍ତିକରେ ଉଠିପଡ଼ିଲେ । ତେଣେ ଚଣ୍ଡୀ ମନ୍ଦିରରେ ଯାତ୍ରୀ ଆସିଛନ୍ତି ।

ବୋଧହୁଏ ଗୋଟେ ଟଙ୍କା ପ୍ରଣାମି ପଡ଼ିଛି ।

ମହନ୍ତ ଫେରିଆସିବା ମାତ୍ରକେ ନଟାଇ ସୁଯୋଗ ଦେଖି ପୁଣି ହାତ ଯୋଡ଼ି କରି କହିଲା—ବାବା ।

ଭ୍ରୂକୁଞ୍ଚିତ କରି ମହନ୍ତ କହିଲେ—କହୁଚି ତ, ପରେ ହେବ । ଆସନ୍ତା ଥରକୁ ମେଳା ବେଳେ ସମସ୍ତିଙ୍କ ଆଗରେ ମେଡ଼ାଲ୍ ଦିଆହେବ ।

ନଟାଇ ଅତି ବିନମ୍ରରେ କହିଲା—ଆଜ୍ଞା ବିଦାକୀ କିଛି ଦେବେ ନାହିଁ ?

—ବିଦାକୀ ? ଟଙ୍କା ?

—ଆଜ୍ଞା ।

ମହନ୍ତ ସକୌତୁକରେ କିଛିକାଳ ନଟାଇ ଆଡ଼କୁ ଚାହିଁରହିଲେ । ସେ ଦୃଷ୍ଟି ସାମନାରେ ନଟାଇର ଅସ୍ୱସ୍ତିର ସୀମା ରହିଲାନି । ଅକସ୍ମାତ୍ ମହନ୍ତ କଥା କହିଲେ—ଭଲ ରେ ମଇନା ଭଲ; ଭଲ ପାଠ ଶିଖିଚୁ ତୁ ! ଟଙ୍କା ! ମା'ଙ୍କ ଆସ୍ଥାନରେ ଟଙ୍କା ! ଗାଉଣା ଗାଇପାରଚୁ; ସେଇଟା ତୋର ଭାଗ୍ୟ ଜାଣିଚୁନା ।

ମହନ୍ତଙ୍କ କଥାରେ ଯେମିତି ବୃଶ୍ଚିକର ଜ୍ୱାଳା ଥିଲା । ସେ ଜ୍ୱାଳାରେ ନଟାଇ ଚମକି ପଡ଼ିଲା । ଲଜ୍ଜାର ଆଉ ସୀମା ରହିଲାନି ତାର । ସତେତ—ଗୀତ ଗାଇବାର ସୁଯୋଗ ପାଇ ସେଇ ତ ଧନ୍ୟ ହୋଇଯାଇଛି; ପୁଣି ଟଙ୍କା ମାଗୁଛି କେଉଁ ମୁହଁରେ ।

ଏହାପରେ କୌଣସି କଥା ନକହି ସେ ପ୍ରାୟ ଧାଇଁକରି ପଳାଇ ଆସିଲା । ଫେରନ୍ତା ବାଟରେ କିନ୍ତୁ ହଠାତ୍ ତାହାର ଆଖିରେ ପାଣି ଆସିଗଲା । ଅକସ୍ମାତ୍ ମହାଦେବ କବିୟାଲର ସେଇ ଗୀତଟା ବି ମନେ ପଡ଼ିଗଲା—ସେଦିନ ଗୀତର ମଜଲିସ୍‌ରେ ମହାଦେବ ବୋଲିଥିଲା—'ଖଡଗଦାର ଯେ ଅଇଣ୍ଠାପତର ସ୍ୱରଗେ ଯିବାକୁ ଆଶା ଗୋ !' ଠିକ୍ କଥା, ମହାଦେବ କବିୟାଲ—ଖଡଗଦାର ଅଇଣ୍ଠାପତର ସ୍ୱର୍ଗକୁ ଯାଏନା; ଯାଇପାରେନା । କବିୟାଲ ମହାଦେବ ଯା ହେଉ ପଛେ ଗୁଣୀ ଲୋକ, ସେ କଥାଟାଏ କହିଛି । ତାର କବିୟାଲ ହେବାର ଆଶା ଆଉ ଖଡଗଦାର ଅଇଣ୍ଠାପତର ସ୍ୱର୍ଗ ଯିବାର ଆଶା—ଏ ଦୁଇଟାଇ ସମାନ ।

ମନକୁ ମନ ସେ ବେଶ୍ ପରିଷ୍କାର କଣ୍ଠରେ ଯେମିତି ନିଜକୁ ଶୁଣେଇ ଶୁଣେଇ କହି-ଉଠିଲା—ଭାଗ୍ ! ଅର୍ଥାତ୍ ନିଜର କବିୟାଲତ୍ୱକୁ ହିଁ ଦୂରେଇ ଦେବାକୁ ଚାହିଁଲା । ଏବଂ ସଙ୍ଗେ ସଙ୍ଗେ ସ୍ଥିର କଲା ପୁଣି ଏଇ ବାରଟା ବେଳର ଗାଡ଼ିଠାରୁ ସେ "ମୋଟ ବହନ" ଆରମ୍ଭ କରିବ ।

ବିପ୍ରପଦ ଥଟ୍ଟା କରିବ, କରୁ । କବିୟାଲ ହେବା ଆଉ ତାର ହୋଇହେବନି । ସେ ମନକୁ ବେଶ୍ ଖୋଲା କରିଦେଇ ସକୌତୁକରେ ଗୀତ ଧରିଲା, ମହାଦେବର ସେଇ ଗୀତଟି—

"ଖଡଗଦ୍ୱାର ଯେ ଅଇଁଠାପତର ସ୍ୱରଗ ଯିବାକୁ ଆଶା ଗୋ !
ଫଡ଼୍ ଫଡ଼୍ କର ଉଡ଼ୁଲ ପତର ସ୍ୱରଗ ଯିବାକୁ ଆଶା ଗୋ !
ହାଇରେ କଲି—ମାଆ ଲୋ ମଲି,
ଗରୁଡ଼ ହୋଇବେ ମଶା ଗୋ—ସ୍ୱରଗ ଯିବାକୁ ଆଶା ଗୋ ॥"

କଚ୍ଛବାଟ ଆସିକର ତାର କାନରେ ଗୋଟିଏ ଶବ୍ଦ ଆସି ପଶିଲା । ଟ୍ରେନ୍ ଆସୁଚ ନା ? ହଁ, ଟ୍ରେନ୍ ତ ! ସଙ୍ଗେ ସଙ୍ଗେ ଚାଲିବାର ଗତି ସେ ଦ୍ରୁତତର କଲା । ରାଜା ଏତେବେଳକୁ ହୁଏତ ଷ୍ଟେସନକୁ ଯାଇ ହାଜର ହୋଇଛୁ । ସିଗ୍ନାଲ ପକେଇବ, ଟ୍ରେନ୍‌ର ଘଣ୍ଟା ଦବ । ଠାକୁରଝି ହୁଏତ ଡାଲିବନ୍ଧ ଘର ଆଗଟାରେ ହତଭଗ୍ନ ହୋଇ ଠିଆହୋଇ ରହିଛୁ । ସେ ତ ଆଜ ଆଉ କୌଣସିମତେ ରାଜାର ଘରକୁ ଯିବ ନାହିଁ; କାଲି ସେଇ ଛଗଟା ଭିତରେ ଯେଉଁ କୁତ୍ସିତ ଇଙ୍ଗିତ ରାଜାର ସ୍ତ୍ରୀ କରିଅଛୁ । ସେ ଧାଇଁବାକୁ ଆରମ୍ଭ କଲା ।

ଧଇଁସଇଁ ହୋଇ ସେ ଯେତେବେଳେ ଷ୍ଟେସନକୁ ଆସି ପହଞ୍ଚିଲା, ଟ୍ରେନ୍‌ଟା ସେତେ-ବେଳକୁ ବସର୍ପିଲ ଗତିରେ ସେହି ମାତ୍ର ଷ୍ଟେସନରୁ ଛାଡ଼ିଯାଉଛୁ । ନିତାଇ ହତାଶ ହୋଇ ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ ଠିଆହୋଇଗଲା । ରୋଜଗାର ହାତରୁ ଖସିଗଲା; ଠାକୁରଝି ଚାଲିଯାଇଛୁ ।

ହଠାତ୍ କାନକୁ ଆସିଲା କିଏ ତାକୁ ଡାକୁଛୁ—ନିତାଇ ।

ଷ୍ଟେସନ ଷ୍ଟଲ୍‌ରେ ଠିଆହୋଇ ବଣିକ ମାଉଳ ତାକୁ ଦେଖି ଉତ୍ସୁକ ହୋଇ ଡାକୁଛୁ—ନିତାଇ, ନିତାଇ !

ବାତରେ ଅଚଳ ବିପ୍ରପଦ ବହୁକଷ୍ଟରେ ଦେହ ସମେତ ମୁଣ୍ଡଟା ବୁଲାଇ ହସୁଅଛୁ—ସେ ବି ଡାକିଲା—କପିବର, କପିବର !

ନିତାଇ ଅତ୍ୟନ୍ତ ବିରକ୍ତ ହୋଇ ପଡ଼ିଲା । ଗୋଟାଏ କଡ଼ା ଜବାବ ଦେବା ଉଦ୍ଦେଶ୍ୟରେ ହିଁ ସେ ଷ୍ଟେସନରେ ଆସି ଉପସ୍ଥିତ ହେଲା । ବଣିକ ମାଉଳ କିନ୍ତୁ ବେଶ୍ କଚ୍ଛଟା ଖୁସିର ସ୍ୱରରେ ହିଁ କହିଲା—ନାଃ, ସତସତିକା ଗୁଣିଆ ହଉଛୁ ଆମର ନିତାଇ । ଆରେ, ତୋ ପାଖୁ ପରା ଲୋକ ପଠେଇଛୁ ମହାଦେବ କବିୟାଲ । ବାୟନା ଅଛୁ କୋଉଠି । ଗାଉଣା କରିବାକୁ ହବ ।

ଅପ୍ରତ୍ୟାଶିତ ସମ୍ବାଦ ଶୁଣି ନିତାଇ ହତବାକ୍ ହୋଇଗଲା ।

ମହାଦେବ କବିୟାଲ ତାହା ପାଖକୁ ଲୋକ ପଠାଇଛୁ ! ବାୟନା ଅଛୁ ! ହଠାତ୍ ତାର ସେ ବିସ୍ମୟ-ବିମୂଢ଼ତା ଭାଙ୍ଗିଲା ରାଜନର ପାଟିରେ । ଉଚ୍ଛ୍ୱସିତ ଆନନ୍ଦରେ ରାଜନ ପ୍ରାପ୍ତ

ଗଗନସ୍ପର୍ଶୀ ଚିତ୍କାର କରି ଡାକୁଅଛି—ଓସ୍ତା-ଦ୍ ! ଓସ୍ତା-ଦ୍ ।

ରାଜନ ସାଙ୍ଗରେ ଆଉ ଜଣେ ଲୋକ; ମହାଦେବର ପାଲିଆଦଳର ଜଣେପାଲିଆ ! ଏଇ ମେଳାର ସମ୍ମୁଖରେଇ ସେ ଗୀତ ଗାଇଯାଇଛି । ନିତାଇ ତାକୁ ଚିହ୍ନିପାରିଲା ।

—ବନ୍ଦନା, ଓସ୍ତାଦ୍ , ବନ୍ଦନା ଆସ୍ଥା ହେ ! ରାଜା ପୁଣି ଉଚ୍ଛ୍ୱସିତ ହୋଇପଡ଼ିଲା ।

ଲୋକଟି ନିତାଇକୁ ନମସ୍କାର କରି କହିଲା—ଭଲ ଅଛନ୍ତି ?

ତେବେ ଯାଇ ନିତାଇ ପ୍ରତିନମସ୍କାର କରି ମୃଦୁ କଣ୍ଠରେ କହିଲା—ଆଜ୍ଞା ହଁ । ଆପଣମାନଙ୍କର କୁଶଳ ତ ? ଓସ୍ତାଦ୍ ଭଲ ଅଛନ୍ତି ?

—ଆଜ୍ଞା ହଁ । ସେଇ ମୋତେ ଆପଣଙ୍କ ପାଖକୁ ପଠାଇଲେ । ଗୋଟିଏ ବନ୍ଦନା ଧରିବନ୍ତି ଓସ୍ତାଦ୍ ? ଆପଣଙ୍କୁ ପାଲିଆ ହବାକୁ ହବ ଦଳରେ । ମହାଦେବ କବିୟାଲଙ୍କର ଦେହ ଭଲ ନାହିଁ । ଗଳା ବସିଯାଇଛି । ଆପଣଙ୍କର ଭଲ କଣ୍ଠ । ଓସ୍ତାଦ୍ ଆପଣଙ୍କୁ ନେଇ ଗୀତ ବୋଲିବେ । ଆପଣ ନିଜେ ବି ଗାଇବେ—ଏଇ କଥା, ଆଉ କିଛି ନାହିଁ ।

ରାଜା କହିଲା—ଜରୁର, ଜରୁର୍, ଅଲବତ୍, ଅଲବତ୍ ଯାଏଗା ! ଚଲିସ୍ତେ ତୋ ବସା ମେ, ବାତ୍‌ଚିତ୍ ହୋଗା, ଚା ଖାଏଗା ।

ନିତାଇ ରାଜା କଥାକୁ ହିଁ ଅନୁସରଣ କଲା, ଆଜି ତାର ସବୁକିଛି ଗୋଳମାଳ ହୋଇ ଯାଉଛି । ମହାଦେବ କବିୟାଲ ତା ପାଖକୁ ଲୋକ ପଠାଇଛି—ବଇନା ଅଛି ! ସେ ବି କହିଲା—ହଁ—ହଁ—ନିଶ୍ଚୟ ଯିବ, ନିଶ୍ଚୟ । ଆସନ୍ତୁ, ବସାରେ ଚା ଖାଉଁ ଖାଉଁ କଥା ହବା ।

ବସାଦୁଆରେ ପହଞ୍ଚି ନିତାଇ ଆଶ୍ଚର୍ଯ୍ୟ ହୋଇଗଲା । ଗୋଟିଏ ବୁଦା ଆଢ଼ୁଆଳରେ—କୃଷ୍ଣଚୂଡ଼ା ଗଛଟିର ଚୁଇତଳେ, ସେ କିଏସେ ବସିଛି ?

ଠାକୁରଝି

ଉତ୍ସୁକ ଉଚ୍ଛ୍ୱସିତ ଦୃଷ୍ଟିରେ ବୁଲି ଚାହିଁଦେବା ମାତ୍ରେ ଠାକୁରଝି ଲାଜରେ ଯେମିତି କିପରି ହୋଇଗଲା; କିନ୍ତୁ ପରେ ପରେ ସେ ଆତ୍ମସମ୍ବରଣ କରି ବେଶ୍ ଧୀରଭାବରେ ହିଁ କହିଲା—କୁଆଡ଼େ ଯାଇଥିଲ କି ? ମୁଁ ଦୁଧ ନେଇ କରି ବସିଛି କେତେବେଳୁ ।

ନିତାଇ କହିଲା—କାଲି ଟିକେ ସହଳ କରି ଦୁଧ ଆଣିବ । ହଁ ! କାଲି ବାରଟା-ଗାଡ଼ିରେ ମୁଁ କବିଗାଉଣା କରି ଯିବି; ତା ଆଗରୁ ଯେମିତି—

ରାଜା କଥାଟାକୁ ସଂକ୍ଷିପ୍ତ କରିଦେଲା—ହାଁ, ହାଁ, ଠିକ୍ ଆଏଗୀ; ଘଡ଼ି କେ କାଣ୍ଟା କେ ମାଫିକ ଆତା ହେ ହମାରା ଠାକୁରଝି । ଆଜି ରାଜା ବି ଠାକୁରଝି ଉପରେ ଖୁସି ହୋଇଯାଇଛି । ଠାକୁରଝିର ମୁହଁଟା ବି ସେଇ ଖୁସିର ପ୍ରତିଛଟାରେ ମୁହୂର୍ତ୍ତିକେ ଉଦ୍‌ଭାସିତ ହୋଇଗଲା—ସତେ ଯେମିତି କୋଉ ଗାଡ଼ିଆର ପାଣି ! ଛଟା ବଞ୍ଚି-

ହୋଇଗଲେ ସଙ୍ଗେ ସଙ୍ଗେ ଝିକ୍‌ମିକ୍ କରିଉଠେ; ପୁଣି ମେଘ ଉଠିଲେ ଅନ୍ଧକାରମୟ ହୁଏ—ଚେହେରାରେ କିଏ ଯେପରି ସ୍ୟାହି ମିଶେଇ ଦେଇଛି !

ଠାକୁରଝି ସେହି ଖୁସିର ଛଟାମଖା ମୁହଁରେ ନିତାଇର ମୁହଁ ଆଡ଼କୁ ଚାହିଁଲା—ତମେ କବି-ଗାଉଣା କରିବାକୁ ଯିବ କବିୟାଲ ? ବାୟନା ଆସିଛି ?

କଥାଟା ଠାକୁରଝି ବି ଶୁଣିଛି ।

ନିତାଇ ଫେରିଲା ପାଞ୍ଚଦିନ ପରେ । ଟ୍ରେନ୍‌ରୁ ଯେତେବେଳେ ସେ ଓହ୍ଲାଇଲା, ସେତେବେଳେ ତାର ଚେହେରା ବଦଳିଯାଇଛି । ତାର ଗୋଡ଼ରେ ଧଳା କ୍ୟାନଭାସ ଯୋତା ହଳେ, ମଇଳା ଲୁଗା ଜାମା ଉପରେ ଧୋବଧାଉଳିଆ ନୂଆ ଖଣ୍ଡିଏ ଓଢ଼ଣୀ-ଚଦର (ଯୋଡ଼ ଚଦର) । ମୁହଁରେ ମୃଦୁମନ୍ଦ ହସ—କିନ୍ତୁ କିନୟରେ ଅତ୍ୟନ୍ତ କୋମଳ । ଟ୍ରେନ୍‌ରେ ବାଟସାରା ସେ କଳ୍ପନା କରି-କରି ଆସିଅଛି, ଷ୍ଟେସନ୍‌ମାଷ୍ଟର-ଠାରୁ ଆରମ୍ଭ କରି ସମସ୍ତେ ତାହାକୁ ଦେଖି ନିଶ୍ଚୟ ବିସ୍ମିତ ଶ୍ରଦ୍ଧାରେ ସମ୍ଭାଷଣ କରି ଉଠିବେ ।

—କିରେ ନିତାଇ ! ଆରେ ବାପ୍ ରେ—ଚାଦର, ଯୋତା । ଆରେ ବାପ୍ ରେ, ତତେ ତ ଆଉ ଚିହ୍ନି ହଉନାହିଁ ରେ ।

ଉତ୍ତରଟା ନିତାଇ ଠିକ୍ କରି ରଖିଥିଲା ।

—ଆଜ୍ଞା, ଚାଦରଟା ବାବୁମାନେ ଶିରପା ଦେଲେ । ଆଉ ଯୋତା ହଳକ କିଣିଲି ।

ଶିରପା କଥାଟା ଅବଶ୍ୟ ମିଥ୍ୟା; ଯୋତା ଚଦର ଦୁଇଟାଯାକ ନିତାଇ ନଗଦ ପଇସା ଦେଇ ଖରିଦ କରିଛି ! ଗେରୁଆ ନପିନ୍ଧିଲେ ସନ୍ନ୍ୟାସୀ ବୋଲି କେହି ସ୍ୱୀକାର କରିବ ନାହିଁ, "ଭେକ ନ ହେଲେ ଭିଖ ମିଳେନା" ଚାଦର ନହେଲେ କବିୟାଲକୁ ଯେନାଏ ନାହିଁ । ନଗ୍ନପଦ ମନୁଷ୍ୟର ପଦବୀ ମନୁଷ୍ୟ ସହଜେ ସ୍ୱୀକାର କରିବାକୁ ଚାହେଁନା । ଏଣୁକରି ନିତାଇ ଯୋତା ଓ ଚାଦର କିଣିଅଛି । ଷ୍ଟେସନରେ ଓହ୍ଲାଇ ପ୍ରତ୍ୟାଶାପୂର୍ଣ୍ଣ ଭାବରେ ମୁହଁଭରି ବିନୀତ ଅଥଚ ଆତ୍ମପ୍ରସାଦପୂର୍ଣ୍ଣ ହସ ହସି ସେ ସମସ୍ତଙ୍କ ମୁହଁକୁ ଚାହିଁଲା । କିନ୍ତୁ ତାର ମୁହଁଆଡ଼କୁ ଚାହିଁ ଦେଖି ମଧ୍ୟ କେହି ତାକୁ ଦେଖିଲେ ନାହିଁ; ସମ୍ଭାଷଣ ତ ଦୂରର କଥା, କେହି କିଛି ପଚାରିଲେ ବି ନାହିଁ । ପ୍ରଶ୍ନ କରିବାର ଯେ ଏକମାତ୍ର ମନୁଷ୍ୟ, ସେ ସେତେବେଳେ ଇଞ୍ଜିନ ପାଖରେ କର୍ତ୍ତବ୍ୟରେ ବ୍ୟସ୍ତ ଥିଲା । ମାଲଗାଡ଼ି ପଣ୍ଟି ହେବ ! ଗାଡ଼ି କାଟିକରି ରାଜା ଇଞ୍ଜିନରେ ଚଢ଼ି ହାଙ୍କୁଥିଲା—ଏଇ !

ହଟ୍ ଯାଓ, ଏଇ—ଏଇ ବୁଢ଼ା ବକ୍! ହଟୋ-ହଟୋ !

ନିତାଇର ମନଟା ଉଦାସ ହୋଇଗଲା । ମନୁଷ୍ୟ ବୈରାଗ୍ୟରେ ଯେପରି ଜନତା ଓ ଜନବସତିକୁ ଆଡ଼କରି, ବାଟ ଛାଡ଼ି ଅବାଟରେ, ସମସ୍ତଙ୍କ ଅଲକ୍ଷିତରେ ଅଗୋଚରରେ ଚାଲିଯାଏ, ସେହିପରି ଭାବରେ ହିଁ ସେ ଷ୍ଟେସନର ଲୁହାବେଢ଼ା ପାଖର ଅପରିଚ୍ଛନ୍ନ ସ୍ଥାନ ବାଟଦେଇ ଷ୍ଟେସନ ଅତିକ୍ରମ କରି ଆସି ପହଞ୍ଚିଲା ନିଜ ବସାଦୁଆରେ । ମନଟା ତାର କ୍ଷଣକେ ଉଦାସ ହୋଇଯାଇଛି; କେବଳ ମନ ନୁହେ, ଦେହସାରା ସେ ଯେପରି ଏକ ଗଭୀର ଅବସନ୍ନତା ଅନୁଭବ କରୁଅଛି ।

ହଠାତ୍ କାନରେ ଶୁଣିଲା—ଗୁଣୁଗୁଣୁ ସ୍ୱର ।

'କଳା ଯଦେ ମନ୍ଦ ତେବେ କେଶ ପାଚିଲେ କାନ୍ଦ କିଆଁ ?'—ଗୁଣୁଗୁଣୁ କରି ଅତି ମୃଦୁସ୍ୱରରେ କିଏ ଜଣେ ଗୀତ ଗାଉଛି ! ସେଇ ବୃଦ୍ଧା ଟାର ଆଢୁଆଳରେ—କୃଷ୍ଣଚୂଡ଼ା ଗଛଟିର ମୂଳେ । ମୁହୂର୍ତ୍ତିକରେ ଭଙ୍ଗାପଡ଼ା ନଈରେ ଯେପରି ଲେଉଟାଣି ଜୁଆର ବୋହି-ଆସିଲା । ଠାକୁରଝୀ ! ତାହାର ବାନ୍ଧିଥିବା ଗୀତଟାଇ ଗାଉଛି ଠାକୁରଝୀ । ରବର ସୋଲ୍ କାନ୍ଭସ୍‌ର ଯୋତା ପିନ୍ଧି ନିଃଶବ୍ଦରେ ନିତାଇ ଆସି ତାହାର ପଛରେ ଠିଆହେଲା ଓ ଅନୁରୂପ ମୃଦୁସ୍ୱରରେ ଗାଇଲା—

"କଳା କେଶେ ଦେଖିଛ କି ରଙ୍ଗ-ଫୁଲ କିମିଆଁ ?"

ଠାକୁରଝୀ ଚମକି ପଡ଼ି ଠିଆହେଲା ସଚକିତ ବନ୍ୟ କୁରଙ୍ଗୀ ପରି ।—ବାବା ରେ ! କିଏ ସେ ?

ପରମୁହୂର୍ତ୍ତରେ ହିଁ ସେ ବିସ୍ମୟରେ ନିର୍ବାକ୍ ହୋଇଗଲା ।—କବିୟାଲ !

ନିତାଇର ମୁହଁଭରି ପୁଣି ସେହି ହସଟି ଫୁଟିଉଠିଲା, ପରମ ସ୍ନେହଭରେ ସେ ଭକ୍ତ ଅନୁରାଗିଣୀଟିକୁ କହିଲା—ଆସ, ଚାହା ଖାଇବାକୁ ହବ ଟିକିଏ !

ଘରକୁ ଆସି ନିତାଇ ଚାଦରଖଣ୍ଡିକ ବେକରୁ ଖୋଲି ରଖିବାକୁ ଯାଉଥିଲା; କିନ୍ତୁ ବାଧା ଦେଇ ଠାକୁରଝୀ କହିଲା—ଖୋଲନ, ଖୋଲନ; ରୁହନ୍ତିକେ ଦେଖେଁ ଭଲକରି ।

ଭଲକରି ଦେଖି ଠାକୁରଝୀ କହିଲା—ଖାସା ଦିଶୁଛି ହେଇଚ ବାବା; ଠିକ୍ କବିୟାଲ-କବିୟାଲ ଲାଗୁଛ । ଭାରି ସୋନ୍ଦର ମାନୁଛି ।

ନିତାଇ କହିଲା—ବାବୁମାନେ ଶିରପା ଦେଲେ ଚାଦରଟଣ୍ଡିକ ।

— ମେଡ଼େଲ ? ମେଡ଼େଲ ଦେଇନାହାନ୍ତି ?

—ସେଇଟା ଆଉ ଅଉକୁ ଦେବେ । ମେଡ଼େଲ କଣ ଦୋକାନରେ ଉଆରି ମିଳେ କି, ଠାକୁରଝିଁ !

—ହଉ ହଉ, ସୁନ୍ଦର ଝିଣ୍ଟିକି ବେଶ୍ ଖାସା ହୋଇଛ । ତମେ ବୋଧହୁଏ ଖୁବ୍ ଭଲ ଗାଉଣା କରୁଛ, ନୁହଁ ?

ହାସ୍ୟୋଦ୍‌ଭାସିତ ମୁହଁରେ କହିଲା ସେ—ଖୁବ୍ ଭଲ । 'କଳା ଯଦି ମନ୍ଦ ତେବେ···' ଗୀତଟା ବି ଗାଇଦେଇଛୁ ।

ସଙ୍ଗେ ସଙ୍ଗେ କାଳି ଝିଅଟାର ମୁହଁଟା ବି କେମିତିକା ହୋଇଗଲା । ଆଖିପତା ଦିଟା ନଇଁଆସିଲା । ସେ ଦୁଇଟା ଅସମ୍ଭବ ରକମର ଓଜନିଆଁ ହୋଇପଡ଼ିଛି ! ଆନତ ଚକ୍ଷୁରେ ସେ କହିଲା—ନାଇ ମ; ଛୁ ! କେମିତିକା ଲୋକ ତମେ ?

ନିତାଇ ହସିକରି କହିଲା—ରହ, ରହ, ଭୁଲିଯାଇଥିଲି ଏକବାରେକେ ।

—କଣ ?

—ଆଖି ବୁଜ ତ ଦେଖି । ତା ନହେଲେ ହବନି ।

—କାହିଁକି ?

—ଆଃ ବୁଜଦିଅନି ଆଖି । ତାପରେ ଆଖି ଖୋଲିଲେ ନିଜେ ଦେଖିବନି କି ।

ଠାକୁରଝିଁ ଆଖି ବୁଜିଦେଲା; ତଥାପି ତାହାର ଭିତରେ ମିଟି-ମିଟି କରି ସେ ଦେଖୁଥିଲା— ନିତାଇ ପକେଟରେ ହାତ ପୂରାଇଛି ।

— ସେ କଣ, ତମେ ଦେଖୁଚ ଯେ ! ନିତାଇ ଠାକୁରଝିଁର ଗୁଡୁଚି ଧରିନେଲା ।

—ବୁଜ, ଭଲକରି ଆଖି ବୁଜ, ବେଶ୍ ଆଣ୍ଟିକରି, ହଁ ।

ପରମୁହୂର୍ତ୍ତରେଇ ଠାକୁରଝିଁ ଅନୁଭବ କଲା ତାହାର ଗଳାରେ କଣଟା ଯେମିତି ଝୁପ୍ କରି ପଡ଼ିଲା । କଣ ? ଚକିତରେ ଆଖି ଖୋଲି ଠାକୁରଝିଁ ଦେଖିଲା, ସୂତା ଭଲିଆ ସରୁ, ସୁନା ପରି ଚକ୍‌ଚକ୍ ଦିଶୁଛି ଗୋଟିଏ ସୁତା-ହାର ତାର ଗଳାରେ ସେତେବେଳ ସୁଦ୍ଧା ଟିକେ ଟିକେ ଦୋହଲୁଛି ।

ଠାକୁରଝିଁ ବିସ୍ମୟ ଓ ଆନନ୍ଦରେ ଯେପରି ବିବଶ ଓ ନିର୍ବାକ୍ ହୋଇଗଲା ।

—ସୁନାର ?

—ନା, ସୁନାର ନୁହେ, କେମିକାଲ୍ । ସୁନାର ମୁଁ କୋଉଠୁ ପାଇବି କହ ? ମୁଁ ପରା ଗରିବ ।

ଠାକୁରଝିଁର ଅନ୍ତର ତାର ସ୍ୱରରେ କହିଉଠିଲା—ତା ହଉ, ତା ହଉ, ସେ ସୁନା ଠାରୁ ଅନେକ ଦାମୀ । ହାରଟାର ଛୁଆଁ ପାଇ ତା ଛାତି ଭିତରଟା ଥରଥର· ଥରୁଅଛି

ବସନ୍ତକାଳର ଦ୍ୱିପ୍ରହରରେ ପବନରେ ଅଶ୍ୱତ୍ଥ ଗଛର ନୂଆ କଅଁଳ ପତ୍ର ପରି ।

—ଓସ୍ତାଦ୍ ! ଓସ୍ତାଦ୍ !

ରାଜା ଆସୁଅଛି ; ଟ୍ରେନଟା ଚାଲିଯାଇଛି, ତତ୍ପରି ସାରି ରାଜା ଷ୍ଟେସନ୍‌ର ପ୍ଲାଟ୍‌ଫର୍ମରୁ ଡାକି ଡାକି ଆସୁଛି ।

ଠାକୁରାଣୀ ଚମକି ପଡ଼ିଲା । ସଙ୍ଗେ ସଙ୍ଗେ ନିତାଇ ବି ଚକିତ ହୋଇ ଉଠିଲା । କ୍ଷଣକରେ ଠାକୁରାଣୀ ଗଳାର ସୁତା-ହାରଟା ଖୋଲି ପକାଇଲା । ଶଙ୍କିତଭାବେ ଫୁସ୍‌ଫୁସ୍ କରି କହିଲା—ଭଣେଇ ଆସୁଛି ।

ନିତାଇ ବି ଯେମିତି କିଂକର୍ତ୍ତବ୍ୟବିମୂଢ଼ ହୋଇଗଲା—ତା ହେଲେ ?

ପରମୁହୂର୍ତ୍ତରେଇ ସେ ଘରୁ ବାହାରିପଡ଼ିଲା, ସେତେବେଳେ ବି ତାର କାନ୍ଧରେ ଚାଦର, ଗୋଡ଼ରେ ଯୋତା । ଟିକିଏ ଆଗେଇ ଯାଇକରି ସେ ସବିନୟରେ ରାଜାକୁ ନମସ୍କାର କରି କହିଲା—ରାଜନ୍, ଆପଣଙ୍କର ନବରର ସମସ୍ତ କୁଶଳ ତ ?

ରାଜାର ଆଖି ବିସ୍ମୟରେ ଆନନ୍ଦରେ ବିସ୍ଫାରିତ ହୋଇଗଲା—ଆରେ ବାପ୍ ରେ, ବାପ୍ ରେ ! ଗଲେ ମେଁ ଚଦର୍ !

ବାଧା ଦେଇ ନିତାଇ କହିଲା—ଶିରପା ।

—ଶିରେପା !

—ହଁ । ବାବୁମାନେ ଗୀତ ଶୁଣି ଖୁସି ହେଇ ଦେଇଛନ୍ତି ।

—ହାଁ ?

—ହାଁ ।

—ଆରେ, ବାପ୍ ରେ, ବାପ୍ ରେ ! ରାଜା ନିତାଇକୁ କୁଣ୍ଢେଇ ପକାଇଲା, ତା ପରେ କହିଲା—ଆଓ ଭାଇ କବିୟାଲ୍, ଆଓ ।

—କୁଆଡ଼େ ?

—ଆରେ, ଆଓନା । ସେ ତାହାର ହାତ ଧରି ଟାଣି ଟାଣି ନେଇଗଲା ବଣିକ-ମାତୁଲର ଚାହା ଦୋକାନକୁ ।

—ମାମା ! ବନାଓ ଚାହା । ଲେ ଆଓ ମିଠାଇ ।

ବେନେ-ମାମୁ ବି ଅବାକ୍ ହୋଇଗଲା ନିତାଇର ପୋଷାକ ଦେଖି । ବାତରେ ପଙ୍ଗୁ ବିପ୍ରପଦ ଅନ୍ୟଆଡ଼େ ଚାହିଁ ବସିଥିଲା—ଅଚଳ ଦେହଟାକୁ ଭିଡ଼ି ଓଟାରି ସେ ବୁଲିପଡ଼ି ନିତାଇକୁ ଦେଖିଲା, ତାର ମଧ୍ୟ ଆଖିରେ ଦୁନିଆଁଟାଯାକର ବିସ୍ମୟ ଜମିଉଠିଛି ।

ନିତାଇ ସବିନୟରେ ବିପ୍ରପଦର ପଦଧୂଳି ନେଇ ଅନେକ ଦିନ ପରେ ଆଜି ସୁଡ଼୍ କରି ଚୁନୁମି ନେଲା । ତାହା ପରେ ସବିନୟ ହସି କହିଲା—ଚନ୍ଦରଖଣ୍ଡିକ ବାବୁମାନେ

ଶିରପା ଦେଲେ ପ୍ରଭୁ ।

ବେନେ-ମାମୁ କହିଲା—ଆମକୁ କିନ୍ତୁ ସନ୍ଦେଶ ଖୋଇବାକୁ ହବ ନିତାଇ !

—ନିଶ୍ଚୟ । ଖାଅନା ମାମୁ , ସନ୍ଦେଶ ତ ତୁମର ଦୋକାନରେ ଅଛୁ । ଦାମ ଦେବ ।

—ନେହିଁ , ହମ ଦେଙ୍ଗେ ଦାମ୍ । ବନାଓ ଠୁଙ୍ଗା । କାଠର ଡାବଲ ଗୋଟିଏ ଟାଣି ନେଇ ରାଜା ତା ଉପରେ ବସିପଡ଼ିଲା, ନିତାଇର ହାତ ଧରି ଟାଣିଆଣି ପାଖରେ ଜାଗା କରି ବସାଇଦେଇ କହିଲା—ବଇଠ୍ ଯାଓ ।

ଏତେବେଳେ ଯାଇ ବିପ୍ରପଦ କଥା କହିଲା । ସେ ଆଜି ଆଉ ଟାପରା କଲାନି, ଥଟ୍ଟା ବି କଲାନି, ସପ୍ରଶଂସ ଏବଂ ସହୃଦୟ ସ୍ୱରରେଇ କହିଲା—ଆଉ, ଗାଉଣା କେମିତି ସବୁ ହେଲା କହ ଦେଖି ନିତାଇ ?

ନିତାଇ ଉତ୍ସାହିତ ହୋଇପଡ଼ିଲା; ବିପ୍ରପଦକୁ ସେ ଆଜି ଜୟ କରିଛି । ତାହା ଅପେକ୍ଷା ବଡ଼ କିଛି ସେ କଳ୍ପନା ବା କାମନା କରିପାରେନା । ସେ ପୁଣି ଥରେ ବିପ୍ରପଦର ପଦଧୂଳି ନେଇ ହାତ ଯୋଡ଼ିକରି କହିଲା—ଆଜ୍ଞା ପ୍ରଭୁ, ଗାଉଣା ତ ହେଲା ଚମତ୍କାର । ଦୁ'ଆଡ଼େ ଦିଟା ବାଘାବାଘା ଗାହାଣ—ଯେ କହୁଚି ମୁଁ ବଡ଼, ସେ କହୁଚି ମୁଁ ବଡ଼; ପାଖକେ ସୃଷ୍ଟିଧର ତ ଅନ୍ୟପଟରେ ମହାଦେବ । ଲୋକ ଯେ, ଆଟପଟାଳ ଭାଙ୍ଗୁଛି । ଆଉ ମେଳାଟା ବି ସେମିତିକା !

ବେନେ-ମାମୁ ଠୁଙ୍ଗାରେ ମିଠେଇ ନେଇ ସମସ୍ତଙ୍କ ହାତରେ ବାଣ୍ଟି କହିଲା—ଖାଉଁ ଖାଉଁ ଗପ କର । ସମସ୍ତଙ୍କୁ ଠୁଙ୍ଗା ଦେଇସାରି ସେ ନିତାଇର ଠୁଙ୍ଗାଟା ଆଗେଇ କରି ବଢ଼ାଇଦେଲା; କିନ୍ତୁ ନିତାଇର ଯେ ଅବକାଶ ନାହିଁ—କଥା ସାଙ୍ଗକୁ ତାର ହାତ ଦୁଇଟି ବି ନାନା ଭଙ୍ଗିରେ ହଲୁଛି ଯେ ।

ବିପ୍ରପଦ ମଧ୍ୟ ଏତେବେଳସରିକି ଆସ୍ତେ ଆସ୍ତେ ସହଜ ହୋଇଉଠିଥିଲା । ସେ ଚଟ୍ କରି ବେନେ-ମାମୁ ହାତରୁ ଠୁଙ୍ଗାଟା ନେଇ ଧମକାଇ କରି କହିଲା—ଭାଗ୍ ବେଟା ବେଉସିକ କାହାଙ୍କା । କବିମାନେ ସନ୍ଦେଶ ଖାଆନ୍ତି କୋଉଠି ? କବିମାନେ ଚନ୍ଦ୍ରର ଆଲୁଅ ପିଅନ୍ତି, ଫୁଲର ମହୁ ଚାଖନ୍ତି, କୋଇଲିର କୁହୁ-ତାନର ସ୍ୱାଦ ନିଅନ୍ତି । ତା ପରେ ନିତାଇକୁ ସମ୍ବୋଧନ କରି କହିଲା—ହଁ, ତାପରେ ନିତାଇଚରଣ ? ପାଖକେ ସୃଷ୍ଟିଧର, ପାଖକେ ମହାଦେବ । ଲୋକ ଯେ ଆଟପଟାଳ ଭାଙ୍ଗୁଛି । ତା ପରେ ? କହିକରି ସେ ଦି ହାତରେ ଦୁଇଟା ଠୁଙ୍ଗା ଧରି ମିଠେଇ ଖାଇବାକୁ ଆରମ୍ଭ କଲା ।

ନିତାଇର ଉତ୍ସାହ କିନ୍ତୁ ତହିଁରେ ଦମିତ ହେଲା ନାହିଁ । ସେ ସମାନ ଉତ୍ସାହ ସହିତ କହିଲାଗିଲା—ଦିନକରି, ବୁଝିଲେ ପ୍ରଭୁ, ମହାଦେବର ନିଶାଟା ଟିକଏ ବେଶୀ ହେଇ-ଯାଇଥିଲା । ସେଦିନ ମହାଦେବ ହେଇଚି କୃଷ୍ଣ, ସୃଷ୍ଟିଧର ରାଧା । ସୃଷ୍ଟିଧର ତ ଟୁଆ

ଧରିଲା—

"କଳା ଅଙ୍ଗାରେ କଅଁ ଲଗିଛୁ ଲେ
ସଖୀ ଦେଇ ଯା ମୋ ଧନମଣି କଳା ଗୃନ୍ଦକୁ ।"

ଗାଳମନ୍ଦର ତ ଆଉ ସୀମା ରହିଲାନ । ତେଣେ ମହାଦେବ ସେତେବେଳକୁ ବାନ୍ତ କରୁଛୁ । ପାଲଆମାନେ ତା ମୁଣ୍ଡରେ ପାଣି ଛାଟୁଛନ୍ତି । ମୁଁ ସେଇ ସୁଯୋଗରେ ଆସି ଧରିପକେଇଲି ଚୂଆ—"କଳା ଯେବେ ମନ୍ଦ ତେବେ କେଶ ପାଚଲେ କାନ୍ଦ କାହିଁ ।" ବାସ୍, ବୁଝିଲେ ପ୍ରଭୁ, ବାବୁଭଇଆଙ୍କଠୁଁ ନେଇକରି ସମସ୍ତେ ସେଠି ବାହା-ବାହା ରବ କରିଉଠିଲେ । ଗୃରିଆଡ଼ କମ୍ପି ଗଲା । ସାଙ୍ଗେ ସାଙ୍ଗେ ଶିରପା ଏଇ ଗୃଦର ଖଣ୍ଡିକ ଗଲା ଉପରେ ଝପ୍ କରି ଆସି ପଡ଼ିଗଲା ।

କଥାଟା ସତ । ନିତାଇ ଚୂଆଟା ଧରିଥିଲା ଏବଂ ଲୋକମାନେ ପ୍ରକୃତରେ ସାବାସ୍ ଦେଇଛନ୍ତି; କିନ୍ତୁ ଶିରପା କଥାଟା ଠିକ୍ ନୁହେଁ ।

ତେବେ ଶିରପା ପାଇଥିଲେ କିଛି ଅନ୍ୟାୟ ହୋଇ ନଥାନ୍ତା । ନିତାଇ ମେଳାରେ ଗାଉଣା କରିଛି ଚମତ୍କାର । ତାର ସୁମିଷ୍ଟ କଣ୍ଠସ୍ୱର ଏବଂ ବିଚିତ୍ର ବିଗ୍ଭର-ଦୃଷ୍ଟି ଗୋଟିଏ ନୂତନ ସ୍ୱାଦ ସୃଷ୍ଟି କରିଥିଲା । ସତେ ତ—କଳା ଯେବେ ମନ୍ଦ ହବ, ତା ହେଲେ କଳା ବାଳ ଧଳା ହୋଇଗଲେ ମନଟା ଏମିତି ଉଦାସ ହୋଇଯାଏ କାହିଁକି ? ନିତାଇ ବାରମ୍ବାର ଏଇ ପ୍ରଶ୍ନଟିର ଜବାବ ମାଗିଥିଲା । ସୃଷ୍ଟିଧର ଖ୍ୟାତବାନ୍ କବିୟାଲ —ସେ ମଣିଷକୁ ଜାଣେ ଓ ଚହ୍ନେ—ସେ ଏ ପ୍ରଶ୍ନର ଜବାବଟା ରହସ୍ୟ କରି ଉଡ଼ାଇ ଦେବାକୁ ଚାହିଁଥିଲା, ଗାଇଥିଲା—

"କଳା ଯେବେ ମନ୍ଦ ତେବେ କେଶ ପାଚଲେ କାନ୍ଦ କାହିଁ ?
କାନ୍ଦେନା ରେ ! ରଙ୍ଗ ଦିଏ—ରଙ୍ଗ ଦିଏ
ମାଇପ ତେଣେ ପଛରୁ ଝିଙ୍କି ରଙ୍ଗମୁଖେ ଲଗାଉ ଚାହିଁ ।"

ଲୋକମାନେ ଖୁବ୍ ହସିଥିଲେ ଠିକ୍; କିନ୍ତୁ ଏହି 'ଅଦ୍ଭୁତ ପ୍ରଶ୍ନଟିର ଅନ୍ତର୍ନିହିତ ସକୌତୁକ ବିଷଣ୍ଣ ତତ୍ତ୍ୱଟି କାହାରି ମନରୁ ପୋଛି ହୋଇ ଯାଇନାହିଁ । ପାଲା ଶେଷ ହେବାପରେ ବି ବହୁତ ଲୋକ ପରସ୍ପରର ମୁହଁ ପାଖରେ ହାତ ହଲାଇ ଗାଇକରି ପ୍ରଶ୍ନ କରିଛନ୍ତି—

"କଳା ଯେବେ ମନ୍ଦ ତେବେ କେଶ ପାଚଲେ କାନ୍ଦ କାହିଁ ?"

ପରଦିନର ସଞ୍ଜରେ ନତାଇକୁ ମହାଦେବ ଇଚ୍ଛାକରି ହିଁ ସୃଷ୍ଟିଧରର ସାମନାକୁ ଆଗେଇ ଦେଇଥିଲା । ସେଦିନ ସୃଷ୍ଟିଧର ଦ୍ରୋଣ, ମହାଦେବ, ଏକଲବ୍ୟ । ତା ଆଗଦିନ ଖୁବ୍ ବାନ୍ତି କରି ମହାଦେବର ଦେହ ବି ଭଲ ନଥିଲା; ତଣ୍ଟିଟା ବି କେମିତି ବସିଯାଇଥିଲା ଏବଂ ସୃଷ୍ଟିଧର ପାଖରେ ହାରିବାର ଡର ବି ଥିଲା; ସୁତରାଂ କବି-ଗାୟନ ଆରମ୍ଭ ହେବା ପରେ ପରେ ମହାଦେବ ଉଠି ସଖି-ବନ୍ଦନା କରିଥିଲା—

"ମୋର ତ ବାଳ ପାଚିଲା, ଦାନ୍ତ ପଡ଼ିଲା ହେଲାଣି ଢେର ବୟସ ମୋର
ଶବରପୁଅ ଏକଲବ୍ୟ—ତା ବୟସ ହବ ଷୋହଳ
ମତେ କି ତା' ଘେନାଏ ସଖି, ତେଣୁ ହେ ଦ୍ରୋଣ ମୋ ବକ୍ତବ୍ୟ
ଏକଲବ୍ୟର ବାପ ହେବି ମୁଁ ନତାଇ ହେବ ଏକଲବ୍ୟ
ଶୁଣ—ମାନିବ ଭଲ ଯେ !"

ଏହାର ଉତ୍ତରରେ ସୃଷ୍ଟିଧର ଉଠି ପ୍ରଥମରୁ କପାଳରେ ଚାପୁଡ଼ା ମାରି ଗାଇଥିଲା—

"ଟଙ୍କା ପଇସା ଚାହେଁନା ମା—ତୋ ଦଣ୍ଡଟାକୁ ଫେରାଇ ନେଏ,
ହାୟ ମହିଷାସୁରର ବାଳୁଙ୍ଗାଟାକୁ ବଧର ହୁକୁମ ଫେରେଇ ନେଏ
ନିଜେ ତୁ ମାଇଲୁ ମହିଷାସୁରେ
ବାଳୁଙ୍ଗାଟାକୁ ଛାଡ଼ିଲୁ ମୋରେ
ବଧିବା ସକାଶେ ତାରେ ମୋତେ କହୁ, ଏ ଆଜ୍ଞା ତୁ ମା ଫେରେଇ ନେଏ ।"

ତାହାପରେ ମହାଦେବ ଓ ନତାଇକୁ ଘେନି ଗାଳିଗୁଲଜର ଆଉ ଆଦି-ଅନ୍ତ ରଖିନାହିଁ ସୃଷ୍ଟିଧର ! ମୂଳ ସୁର୍ ତାର ସେଇ । ନତାଇ ଯଦି ମହାଦେବର ପୁଅ ହୁଏ, ତେବେ ସେମାନେ ଅନ୍ତ୍ୟଜ ବ୍ୟାଧ ବି ନୁହଁନ୍ତି, ସେମାନେ ଅସୁର; ମହାଦେବଟି ମହିଷାସୁର ଆଉ ନତାଇ ଟୋକା ମହିଷାସୁରର ଛୁଆ !

"ହାୟ—ଅସୁରର ଶଶୁରଘରର କିଛି ଠିକଣା ନାଇ
ଦାମୁଡ଼ି ଜନମ ଗୋରୁ ପେଟରେ
ବାଘଛାଲ ଦେଖ ଗାଈ ପିଠିରେ
ହାଇରେ ବଧାଡା ଭଲମୁହାଁ ସିଏ—ଏ ଟୋକା ଠିକ୍ ସେଇ ।"

ସେ ଯେମିତି ନିଷ୍ଠୁର ଆକ୍ରୋଶରେ ହାଣି-ହାଣି ଟୁକୁରା-ଟୁକୁରା କରୁଥିବା ସ୍ଲେଟ । ମହାଦେବ ବି ଅଧୋବଦନ ହୋଇଥିଲା । ବସାତଣ୍ଟିରେ ଆଉ ତାର ଜବାବ୍ ଦେବାର

ଉପାୟ ନଥିଲି; କିନ୍ତୁ ନିତାଇ ଦବିଯାଇନାହିଁ । ସେ ଅକୁତୋଭୟ ହୋଇ ଉଟି ଗୀତ ଧରିଥିଲା—

"ଷଣ୍ଡପୁଅ ଦ୍ରୋଣ ବ୍ରାହ୍ମଣ—ତୋର କାଣ୍ଡ ଦେଖି ଅବାକ୍ ହେ ।"

ହଜୁରେ—ମୋତେ ସେ ଜାରୁପୁଅ ବୋଲି ଗାଳିଦେଲେ । କିନ୍ତୁ ତାଙ୍କର ଜନ୍ମ ଷଣ୍ଡରେ—ମାଟିର ମାଠିଆରେ ।

"ନାରିକେଳକୁ ନିନ୍ଦା କରନ୍ତି—ସେ ତ କଷାୟ ଗୁବାକ ହେ !"

— ମାନେ ଗୁଆ ! ଆଣ୍ଠୁ ଗୁଆ ।

କିନ୍ତୁ ଆଉ କଥା ଜୁଟିନାହିଁ । ଏହାପରେ ସେ ଓଲଟା ବାଟ ଧରିଥିଲା । ନିଜେଇ ହାର ମାନିନେଇ ମାଡ଼ ଖାଇଯିବାର ଲାଜକୁ ଲଘୁ କରିବାକୁ ଚେଷ୍ଟା କରିଥିଲା ! ସେ ଢଗ ମେଲିଥିଲା—

"ବ୍ରାହ୍ମଣ-ପରଧାନ ଆହେ ଦ୍ରୋଣାଚାର୍ଯ୍ୟ
ଗୁରୁ ହୋଇ ତମର ଏ କି ଅନ୍ୟାୟ କାର୍ଯ୍ୟ
ମୁଁ ଏକଲବ୍ୟ ନୁହେଁ ଭବ୍ୟସଭ୍ୟ
ମୁଁ ପଛେ ଶବରପୁଅ ବନେ ମୋର ରାଜ୍ୟ
କିନ୍ତୁ ତୁମ୍ଭ ଶିଷ୍ୟ କହେ ମୁହିଁ ସତ୍ୟ ନ୍ୟାଯ୍ୟ
ଦଶଜଣଙ୍କ ଆଗରେ—ଗୋଡ଼କୁ ନେଲି ମୁଣ୍ଡରେ—"

କହି କହି ସ ଷ୍ଟି ଧରର ଗୋଡ଼ଧୂଳି ମୁଣ୍ଡରେ ନେଇ କହିଥିଲା—ଏଥର ରଣଂ ଦେହି—ହାରଜିତ ହେଉ ଧାର୍ଯ୍ୟ ଏବଂ ଏକଦମ୍ ଶେଷ ଆଡ଼କୁ ହାଲି ନାକେଦମ୍ ହୋଇ ସେ ହାତ ଯୋଡ଼ିକରି କହିଥିଲା—

"ପ୍ରଭୁଗଣ ! ଶୁଣ ନିବେଦନ !
ମୁଁ ହାରିଛି ମୁଁ ହାରିଛି ସତ୍ୟ ଏ ବଚନ
ହାରିଲେ କିନ୍ତୁ ହୁଏ ସାର୍ଥକ ଜୀବନ ।"

ସ ଷ୍ଟି ଧର କହି ଉଠିଥିଲା—ନିଶ୍ଚୟ ନିଶ୍ଚୟ । ତାର କାରଣ—

"ମୁଣ୍ଡ କଟିଯାଇ, ଧୂଳିରେ ଗଡ଼ୁଥାଏ
ଜିଭ ବାହାରିପଡ଼ି ଓଲଟେ ନୟନ ।"

ଏବଂ ନିଜେ ସେ ଜିଭ ବାହାର କରି ଆଖି ଓଲଟାଇ ଭଙ୍ଗି ଦେଖାଇ ଅବସ୍ଥାଟାକୁ ପ୍ରକଟ କରି ଦେଖାଇ ଦେଇଥିଲା । ଲୋକମାନେ ହୋ-ହୋ କରି ହସି ହସି ପ୍ରାୟ ଗଡ଼ିଯାଇଥିଲେ । ନିତାଇ ଏହି ହାସ୍ୟରୋଳ ଉପରେ ଗୋଟିଏ ତାନ ଛାଡ଼ିଥିଲା—

—ଆ – ଆ – ହା— ।

ତାହାର ସୁସ୍ୱରର ସେହି ସ୍ୱର-ବିସ୍ତାର କ୍ଷଣକେ ସମସ୍ତଙ୍କ ଉପରେ ବିଛେଇ ହୋଇ-ପଡ଼ି ତାଙ୍କର କୌତୁକ ଉଚ୍ଛ୍ୱାସକୁ ସ୍ତବ୍ଧ କରି ଦେଇଥିଲା । ବର୍ଷାର ସିକ୍ତ ପବନର ଗୁଡ଼ାଏ ମଉଆଳ ଖେଳ ଉପରେ ଯେମିତି ବିଛେଇ ହୋଇଯାଏ, ଗୁରୁଗମ୍ଭୀର ଜଳଭରା ମେଘର ଘଡ଼ଘଡ଼ି, ଠିକ୍ ସେମିତି କହିଲେ ଅତ୍ୟୁକ୍ତି ହେବ ନାହିଁ; କାରଣ ନିତାଇର କଣ୍ଠଟି ପ୍ରକୃତରେ ସେଇମିତି । ଗୀତ ମଧ୍ୟ ନିଜେ ଧରିଥିଲା—ଖାଣ୍ଟି ଗୀତ । ମନେ ମନେ ନେତେ ଗୀତ ସେ ବାନ୍ଧିଥାଏ—ଗାଏ ବି ତାହାରି ଭିତରୁ ଗୋଟିଏ ଗୀତ ।

"ଅହା—ଭଲପାଇ ଏଇ ଜାଣିଛୁ
ସୁଖର ସାର ସେ ନୟନଜଳେ ରେ
ତମେ ହସ—ମୁଁ କାନ୍ଦେ
ବଇଁଶି ବାଜୁ କଦମ୍ବମୂଳେ ରେ ।
ମୁଁ ନେବ ସବୁ କଳଙ୍କ, ତୁ ମୋର ହବୁ ରାଜା
ହାର ମାନିଲି ହାର ମାନିଲି
ଝୁଲେଇ ଦେଲି ଜୟମାଲ୍ୟ ତୋର ଗଳେ ରେ ।
ମୋର ପୀରିତିର ଧନରେ ହେବ ତୋ ଚରଣ ପୂଜା
ତୋ ଚୁଡିର ନିଆଁ ଯେବେ
ମୋ ଚୁଡିରେ ପ୍ରଦୀପ ଜାଳେ ରେ ।"

ଏଥରକରେ ତ ସବୁସାରୁ ବାହାବା ପଡ଼ିଯାଇଥିଲା ।

ସୃଷ୍ଟିଧର କହିଥିଲା—ତୋର ଏମିତିକା କଣ୍ଠ ନିତାଇ—ତୁ ଯାତ୍ରାଦଳକୁ ଯାଉନୁ କିଆଁ ? କବି-ଗାଉଣା କରି କଣଟା ହବ ?

ନିତାଇ ପୁଣି ତାର ଗୋଡ଼ରୁ ଧୂଳି ନେଇ ମୁଣ୍ଡରେ ମାରି କହିଥିଲା—ସେଠି ତ ପରର ବନ୍ଧା ଗୀତ ଗାଇବାକୁ ହବ ଓସ୍ତାଦ୍ !

ସବିସ୍ମୟରେ ସୃଷ୍ଟିଧର ପଚାରିଥିଲା—ଏ ତୋର ଗୀତ ?

—ଆଜ୍ଞା ହଁ ଓସ୍ତାଦ୍ !

ସୃଷ୍ଟିଧର କିଛି କାଳ ଚୁପ୍‌କରି ବସିଥିଲା । ତା ପରେ କହିଥିଲା—ହବ, ତୋ ଦେଇ ହବ । କିନ୍ତୁ—

—କିନ୍ତୁ କଣ ଓସ୍ତାଦ୍ ?

—କବିୟାଲୀ ବି ଠିକ୍ ତୋର ପଥ ନୁହେଁ; ବୁଝିଲୁ । କିନ୍ତୁ ତୁ ଛାଡ଼େନା! । ଭଗବାନ୍ ତତେ ମୂଳଧନ ଦେଇଛନ୍ତି । ନଷ୍ଟ କରନା, ବୁଝିଲୁ ।

ଏହାପରେ ନିତାଇର ସେଇ ରାତିରେ କି ଉତ୍ତେଜନା ! ରାତିସାରା ଚେଇଁକରି ସ୍ୱପ୍ନ ଦେଖିଥିଲା ସେ । କେତେ ସ୍ୱପ୍ନ ।

ପରଦିନ ମେଳାକୁ ଯାଇ ନିଜେ ଚଦର ଯୋଡ଼ା କିଣି ଦେହପଟା ହୋଇ, ଆଇନାରେ ବାରମ୍ବାର ନିଜକୁ ଦେଖି, ମନେ ମନେ ଅନେକ ଗଳ୍ପ ବାନ୍ଧି ଘରକୁ ଫେରିଥିଲା । ବାବୁମାନେ ଶିରପା ଦେଇଛନ୍ତି, ସୁଖ୍ୟାତିର ଅଜସ୍ର ସମ୍ଭାର ତ ଆଉ ଦେଖାଇ ହୁଏନା--ତେବେ ଶିରପା ହିଁ ତାର ପ୍ରମାଣ ! ଦେଖ । ତମେମାନେ ଦେଖ !

ଶିରପାର ଗପ ଶେଷ କରି ଚାହା ଖାଉଁ ଖାଉଁ ନିତାଇର ମନେ ପଡ଼ିଗଲା ଠାକୁରଝି କଥା । ସେ କଣ ଏବେ ବି ଘର ଭିତରଟାରେ ବସିରହିଥିବ ? ନିତାଇ ତରତର ହୋଇ ଚାହା କପ୍ ହାତରେ ଧରି ଉଠିଆସି ପ୍ଲାଟଫର୍ମର ଲାଇନ୍ ଉପରେ ଠିଆହେଲା । ସମାନ୍ତରାଳ ଶାଣିତ ଷ୍ଟିଲ୍‌ର ଲାଇନ୍ ଦୁଇଟି ଦୂରରେ ଗୋଟିଏ ବୁଲାଣି ପାଖରେ ଯେପରି ଏକ ହୋଇ ମିଶିଯାଇଛି ।

କାହିଁ ? ସେଠାରେ ତ ସ୍ୱର୍ଣ୍ଣବିନ୍ଦୁ ଶୀର୍ଷ ଚଳନ୍ତ କାଶଭଣ୍ଡୀ ଫୁଲ ପରି ତାହାକୁ ଦେଖାଯାଉନାହିଁ ।

ତେବେ ? ସେ କଣ ଏବେ ବି ଘର ଭିତରେ ବସିରହିଛି ?

ଦୋକାନରେ ବସି ରାଜା ଡାକୁଥାଏ—ଓସ୍ତାଦ୍ ! ଓସ୍ତାଦ୍ !

—ହଁ, ଆସୁଚ, ଆସୁଚ । ଟିକଏ ଘରୁ ହୋଇ ଆସେଁ ।

ନିତାଇ ଦ୍ରୁତପଦରେ ଆସି ଘରେ ପଶିଲା । ହଁ, ଏବେ ସୁଦ୍ଧା ସେ ବସିରହିଛି । ନିତାଇକୁ ଦେଖିବାମାତ୍ରେ ସେ ଉଠିପଡ଼ିଲା । କିଛି ନକହି ସେ ବାଟକାଟି ଚାଲିଯିବାକୁ ଉଦ୍ୟତ ହେଲା । ନିତାଇ ତାର ହାତ ଧରି କହିଲା—ରାଗିଛ !

ଝିଅଟି ସାଙ୍ଗେ ସାଙ୍ଗେ କାନ୍ଦିପକାଇଲା ।

—କଣ କରିବି କହ ? ସେମାନେ କଣ ଛାଡ଼ୁଚନ୍ତି ଯେ ଆସିବି—

—ନା । ମୁଁ ଏଠି ବସିରହିଲି, ଆଉ ତମେ ଗଲ ସେଠି ଗପ ଜମାଇବାକୁ ।

—ତମ ହାତ ଧରୁଛି—

ଠାକୁରାଣୀ ଏଥର ହସିଦେଲା ।

—ବସ । ଟିକିଏ ଚାହା ପିଅ । ତମ ଲାଗି ନୂଆ କପ୍ ଆଣିଛ—ଏଇ ଦେଖ ।

ସେ ପକେଟ ଭିତରୁ ଗୋଟିଏ ନୂଆ ଷ୍ଟିଲ୍ ମଗ୍ ବାହାର କଲା—ଭୁଲିଯାଇଥିଲା ଏଯାଏ । ନିତାଇ ହସିଲା ।

—ନା । ଡେରି— କହି କରି ବେଲ ଆଡ଼କୁ ଚାହିଁ ସେ ଶିହରି ଉଠିଲା—ଇଲୋ ମାଆ ଲୋ ! ସଙ୍ଗେ ସଙ୍ଗେ ସେ ଦ୍ରୁତପଦରେ ଚାଲିବାକୁ ଆରମ୍ଭ କଲା ।

ବାଟସାରା ସେ ଭାବୁଥିଲା ଏଇ ବିଳମ୍ବ ଲାଗି ସେ କଣ କହିବ । ଚାଲୁ ଚାଲୁ ହଠାତ୍ ମନେ ପଡ଼ିଗଲା ହାରକଥାଟା । ସେ ଗଣ୍ଠିରୁ ହାରଟି ଫିଟାଇ କାଢ଼ିଲା । ବେକରେ ପିନ୍ଧିଲା । ସଙ୍ଗେ ସଙ୍ଗେ ସବୁ ଆଶଙ୍କା କଥା ପାଶୋରିଦେଲା ।

ବାଟରେ ଗୋଟିଏ ଛୋଟ ନଈ । ସ୍ୱଚ୍ଛ ଅଗଭୀର ଜଳସ୍ରୋତରେ ତାହାର କମ୍ପିତ ପ୍ରତିବିମ୍ବରେ ଗଳାର ସୁନାହାର ଚକ୍‌ଚକ୍ କରୁଅଛି । ଟିଅଣି ସେହି ପ୍ରତିବିମ୍ବ ଆଡ଼କୁ ଅନାଇ ସ୍ଥିର ହୋଇ ଛିଡ଼ା ହୋଇପଡ଼ିଲା, ଧୀରେ ଧୀରେ ଚଞ୍ଚଳ ଜଳ ସ୍ଥିର ହୋଇଗଲା । ଏଥର ସେ ହାର ପିନ୍ଧିଥିବା ନିଜକୁ ଭଲ କରି ଥରେ ଦେଖିଦେଲା; ତା ପରେ ହାରଟି ଖୋଲି କାନିରେ ବାନ୍ଧି ନଈ ପାରିହୋଇ ଗ୍ରାମରେ ପ୍ରବେଶ କଲା ।

କଣ କହିବ, ସେ ଏବେ ସୁଦ୍ଧା ଠିକ୍ କରିପାରିନାହିଁ, ତେବେ ତିରସ୍କାର ସହ୍ୟ କରିବାକୁ ସେ ନିଜକୁ ପ୍ରସ୍ତୁତ କରି ରହିଛି ।

ନିତାଇ ଏବେ ସୁଦ୍ଧା ଠିଆହୋଇ ରହିଛି କୃଷ୍ଣଚୂଡ଼ା ଗଛଟି ମୂଳେ । ଫାଲ୍‌ଗୁନର ଦ୍ୱିପ୍ରହରର ଧକ୍‌ଧକବାଲ ଧୂଳିପଟଳରେ ଧୂସର ହୋଇଯାଇଛି । ବତାସ ଉତଲା ହୋଇଛି । ସେହି ଉତଲା ବତାସ ଧୂଳି ଉଡ଼ାଇ ବହିଯାଏ କେଉଁ ଦୂର ନଈର ସୁଅ ପରି । ନିତାଇର ମନ ବର୍ତ୍ତମାନ ସୁଦ୍ଧା ଚଞ୍ଚଳ । ସେ ଏବେ ସୁଦ୍ଧା ସେହି ଧୂଳିପଟଳ ଭିତର ଦେଇ ଯେପରି ଗୋଟିଏ ସ୍ୱର୍ଣ୍ଣବିନ୍ଦୁର କାଶତଣ୍ଡିଫୁଲ ଦେଖିପାରୁଅଛି । ସେ ସ୍ଥିରଦୃଷ୍ଟିରେ ଦିଗନ୍ତ ଆଡ଼କୁ ଚାହିଁ ଗୁଣୁ ଗୁଣୁ କରି ଗୀତ ବୋଲୁଥିଲା । ହଠାତ୍ ତାର ମନେ ମନେ ଗୋଟିଏ ବିଚିତ୍ର କଥାର ମାଳ ଗୁନ୍ଥା ହୋଇଗଲା । ନିଜର ମନରେ ଥରେ ତାର ପ୍ରଶ୍ନ ଉଠିଲା—କାହିଁକି ସେ ଏମିତିକରି ବାଟକଡ଼ରେ ଠିଆହୋଇଥାଏ ? ସେଇ ଟିଅଣି ତାର କିଏ ? ମନ ହିଁ କହିଲା—କିଏ ଆଉ—'ମନର ମଣିଷ' । ମନର ମଣିଷ ପାଇଁ ହିଁ ସେ ରାସ୍ତାକଡ଼ରେ ଠିଆହୋଇଥାଏ । ମନ ହୁଏ, ଏଇ ରାସ୍ତାକଡ଼ରେଇ

ସେ ବସା ବାନ୍ଧି ରହିଥାଏ ଯେମିତି । ପଥଆଡ଼କୁ ଚାହିଁ ଠିଆହୋଇଥାଏ, ହଠାତ୍ ଯେତେବେଳେ ତାର ଆସିବାର ନିଶାଣ ଝଟକି ଉଠେ ।—ସେଇ କଥାଗୁଡ଼ିକ ସଜେଇ ବାଗେଇ ସୁରତରଙ୍ଗ ଦୋଳରେ ମନକୁ ମନ ଗୁଣୁଗୁଣୁ ଧ୍ୱନି ତୋଳି ଦୋହଲି ଲାଗିଲା—

"ଆଲୋ ମୋ ମନର ମଣିଷ ଗୋ !
ତୋହରି ଲାଗି ରାସ୍ତାକଡ଼ରେ କରିଛି ଘର
ଛଟାରେ ଛଟାରେ ଝଟକୁଥାଏ ତୋ ନିଶାଣ
ମତେ ଏଠିକି ଟାଣେ ନିରନ୍ତର ।"

ସେଇଟା ହିଁ ସେ କରିବ । ରାସ୍ତାକଡ଼ରେ ଘର ବାନ୍ଧି ଅହରହ ପିଣ୍ଡାରେ ବସି ରାସ୍ତାକୁ ଅନାଇଁ ରହିବ । ଘରୁ ଠାକୁରଝୀ ବାହାରି ଆସିଲେଇ ତାର ମଥାର ତାଳରେ ଝଲର ଛଟା ପଡ଼ି ଚକମିକ୍ କରିବ, ସେ ତାଳର ପ୍ରତିବିମ୍ବିତ ଝଲକ ଆସି ତାର ଆଖିରେ ପଡ଼ିବ । ଗୀତ ବାନ୍ଧି ସେ ସୁର କରି ଗାଇଲା—

"ଆଲୋ ମୋ ମନର ମଣିଷ ଗୋ !"

## ଆଠ

ରାସ୍ତାକଡ଼ରେ ଘର ପରିବର୍ତ୍ତେ ନିତାଇ କୁଲି ବ୍ୟାରାକ୍‌ରେଇ ଦିବାସ୍ୱପ୍ନ ରଚନା ଆରମ୍ଭ କଲା । ଗୀତ ଗାଇକରି ସେ ଟଙ୍କା ପାଇଛି । କବିଆଲ ସୃଷ୍ଟିଧର କହିଛି—ତା ଦେଇ ହେବ; ସୁତରାଂ ତାର ଆଉ ଭାବନା କଣ ?

ଟ୍ରେନ୍‌ଭଡ଼ା ସମେତ ନିତାଇ ପାଇଥିଲା ମୋଟ ଛଅଟି ଟଙ୍କା; କିନ୍ତୁ ଟ୍ରେନ୍‌ଭଡ଼ା ତାର ଲାଗିନାଇ । ଏଇ ବ୍ରାଞ୍ଚ୍ ଲାଇନ୍‌ଟିରେ ନିତାଇ ଅନେକ ଦିନ କୁଲିଗିରି କରିଅଛି—ଗାର୍ଡ୍, ଡ୍ରାଇଭର, ଚେକର୍ ସମସ୍ତେ ତାକୁ ଚିହ୍ନନ୍ତି । ସେଥିପାଇଁ ଟ୍ରେନ୍ ଭଡ଼ାଟା ତାର ଲାଗିନାହିଁ, ଛଅଟା ଟଙ୍କାଇ ବଳିରହିଥିଲା । ଯୋଡ଼ା ଚଉଦଣା, ଚାଦର ବାରଣା, ଦଅସିଲି ବଡ଼ ଦଅଣା ଖଣ୍ଡେ—ଏଇମିତି ଟଙ୍କେବାରଣା ଯାଇ ଚାରିଟଙ୍କା

ଗୁଣଅଣା ସମ୍ବଲ ଯେନ ନିତାଇ ଫେରିଅଛି । ପ୍ରତ୍ୟାଶା ଏହି, ପୁଣି ଶୀଘ୍ର ହିଁ ଗୋଟେ-ଦିଟା ନିମନ୍ତ୍ରଣ ଆସିବ । ନିତାଇର ଧାରଣା, ଯେଉଁମାନେ ତାର ଗୀତ ଥରେ ଶୁଣିଛନ୍ତି, ସେମାନଙ୍କ ମୁହେଁ ମୁହେଁ ତାହାର ନାମ ଗୁଣଆଡ଼େ ଫେଇଯାଉଛି ।

—ନୂଆ ଟୋକାଟାଏ ମହାଦେବ ଦଳରେ ପାଳିଆଗିରି କରୁଥିଲା, ଦେଖିଛ ?

—ହଁ ! ହଁ ! ଭଲ ପିଲାଟା । କି ସୁନ୍ଦର ମିଠା କଣ୍ଠ ।

—ଉଁହୁ । ଖାଲି କଣ୍ଠ ମିଠା ନୁହେ । କବିଯୁଆଳି ଭାବରେ ବି ଭଲ । ଏଥର ବି ମହାଦେବର ମାନଟା ରଖିଛି ସେଇ । ମହାଦେବ ତ ବେହୋସ । ସେ ଉଠି ଗୀତ ଧରିଲା— 'କଳା ଯେବେ ମନ୍ଦ ତେବେ କେଶ ପାଚିଲେ କାନ୍ଦ କିଆଁ ।' ସେଇଥିରେ ତ ସଭା ସରଗରମ ହୋଇଗଲା । ଦେ ଜବାବ—କଳା ଯେବେ ମନ୍ଦ, ତେବେ କଳା ବାଳର ଏତେ ଗରବ କିଆଁ ? ଏତେ ଆଦର କାହିଁକି ? ପାଚିଲେଇ ବା ମନ ଖରାପ ହୁଏ କାହିଁକି ?

—କଣ କହୁଚ ତମେ ! ସେଇ ଟୋକାଟା ଗୀତଟାକୁ ବାନ୍ଧିଛି ?

—ହଁ ।

—ତାହେଲେ ଆମର ମେଳାକୁ ସେଇ ଟୋକାକୁଇ ଆଣ ।

ନିତାଇ ମନେ ମନେ ନିଜର ଦର ବି ଗୋଟିଏ ଠିକଣା କରି ରଖିଛି । ମହାଦେବ ଆଠଟଙ୍କା ନେଇଥାଏ, ସୃଷ୍ଟିଧର ଦଶଟଙ୍କା; ନିତାଇ ପାଞ୍ଚଟଙ୍କା ମାଗିବ, ଗୁରିଟଙ୍କା ରାଧକୁ କହି ରାଜି ହବ । ଜଣେ ଢୋଲିଆ ଦରକାର । ରାଜନର ପୁଅ ଯୁବରାଜକୁ ନେଇ କଂସାଳ ବଜାଇବା କାମଟା ବେଶ୍ ଚଳିବ । ଏଥରକ ସେ ଅଦ୍ଭୁତ ଭଲ ଗୀତ ବାନ୍ଧିଛି; ସ୍ୱର ବି ହେଇଛି ସେମିତି । "ଆଲୋ ମୋ ମନର ମଣିଷ ଗୋ—ତୋରି ଲାଗି ରାସ୍ତାକଡ଼ରେ କଲି ଘର; ଛଟାରେ ଛଟାରେ ଝଟକି ଉଠେ ତୋର ନିଶାଣ, ମୋତେ ଏଠିକି ଟାଣେ ନିରନ୍ତର ।" ଏଥିକରେ ବାଜି ମାତ୍ ହୋଇଯିବ । ଥରେ ସୁଯୋଗ ପାଇଲେ ହେଲା । ମୁସ୍କିଲଟା ଏଇଠି । କବି-ପାଲରେ ଏପରି ଗୀତ ଗାଇବାର ସୁଯୋଗ ସହଜେ ମିଳେନା । ତଥାପି ସେ ଆଶା ରଖିଛି । ଏଇ କାରଣରୁଇ ୦°-୦° କରି ଟ୍ରେନର ଘଣ୍ଟା ବାଜିଲେଇ ସେ ତରତର ହୋଇ ଆସି ଷ୍ଟେସନରେ ବସେ । ଟ୍ରେନର ପ୍ରତି ଯାତ୍ରୀକୁ ସେ ନିରେଖି କରି ଦେଖେ । ରଙ୍ଗବେରଙ୍ଗ ହୋଇ ଯେଉଁମାନେ ଆସନ୍ତି, ସେମାନଙ୍କ ଚେହେରା ଭିତରେ ଗୋଟାଏ ବିଶିଷ୍ଟ ଚିହ୍ନ ରହିଥାଏ । ନିତାଇ ସେହି ଚିହ୍ନଟା ଖୋଜୁଥାଏ । କେବଳ ଯାଏନା ବାରଟା ବେଳର ଟ୍ରେନ୍‌ଟା ବେଳକୁ; କାରଣ ସେଇ ସମୟରେ ଆସେ ଠାକୁରଝୀ ।

ମାସେ ଖଣ୍ଡେ ପରେ । ଗଣ୍ଡାର ଗୁଣି । ନିତାଇ ଚୁପ୍ କରି ବସିଥିଲା । ସେ ଭାବୁଥିଲା ।

ସେଦିନକୁ ତାହାର ହାତର ସମ୍ବଳ ଆସି ଗୋଟିଏ ସିକିକାରେ ରହିଲାଣି । ତାହାର ମନଟା ଅକସ୍ମାତ୍ ପୁଣି ଗାଡ଼ି ପଡ଼ିବାକୁ ବସୁଛି । କୌଣସିମତେ ଆଉ ଦିନ ଚାରିଟା ଚଳିଯିବ । ତା ପରେ ? ପୁଣି କଣ 'ମୋଟ-ବହନ' କରିବାକୁ ହେବ ?

ନହେଲେ ? ଉପାସରେ ମଣିଷ କେତେ ଦିନ ରହିପାରେ ?

ଏଣେ ଠାକୁରଝୀ ପାଖରେ ଦୁଧର ଦାମ ବାକି ପଡ଼ିଛି । ଦଶଦିନ ଆଗରୁ ଅବଶ୍ୟ ସେ ସବୁକିଛି ଶୁଝିଦେଇଛି, ଦଶଦିନର ଦଶପାଆ ଦୁଧର ଦାମ୍ ଦଶ ପଇସା ବାକି । ନିତାଇ ସ୍ଥିର କଲା, ଆଜି ସେ ନିତ୍ୟାନ୍ନ ଲଗୁଆ ବନ୍ଦ କରିଦେବ ।

ପରଦିନ ଦି'ପହରେ, ରେଲ ଲାଇନ୍‌ର ବାଙ୍କ ପାଖରେ ଯେଉଁଠି ଲାଇନ୍ ଦୁଇଟା ମିଶି ଏକ ହୋଇଯାଇଥିଲା ପରି ମନେହୁଏ, ସେଠାରେ ଦୃଷ୍ଟି ନିବଦ୍ଧ କରି ସେ ଠିଆ-ହୋଇ ରହିଲା । ଆଜି ତ ତାର ଶେଷ ଠିଆହେବା । 'ଆଲୋ ମୋ ମନର ମଣିଷ' ଗୀତଟି ଆଉ ଶେଷ ହୋଇପାରିଲାନି, ହେବ ବି ନାହିଁ; ଆଜିଠାରୁ ସେ ଭୁଲିଯିବ, ଆଉ ଗାଇବନି । ସେଇଠାରେ ହିଁ ଅକସ୍ମାତ କେତେବେଳେ ଦେଖାଗଲା, ମଥାରେ ଟାଲ—ଧୋବଧାଉଳିଆ ଲୁଗା ପିନ୍ଧିଥିବା ଠାକୁରଝୀ ।

ଠାକୁରଝୀ ଆଗେଇ ଆସି ପାଖରେ ହେଲା । ତାକୁ ଦେଖି ନିତାଇ ହସିଲା ।

ଠାକୁରଝୀ କହିଲା—ନାଇଁ ମ, ତମେ ଏମିତି କରି ଠିଆହୋଇ ରହିବନି । ନୋକେ କଣ କହିବେ କହିଲ ?

ଗୋଟାଏ ଦୀର୍ଘନିଃଶ୍ୱାସ ପକାଇ ନିତାଇ କହିଲା—ନୋକେ କଅଣ କହିବେ କେଜାଣି । ମୁଁ ତମକୁ ଗୋଟାଏ କଥା କହିବା ନାଗି ଏଠି ଠିଆହୋଇଛି ।

ନିତାଇ ଏବେଲା ଭଦ୍ରଭାଷାରେ କଥା କହିବାକୁ ଚେଷ୍ଟା କରେ, ତେଣୁ ସେ ଲ-କାରକୁ ନ-କାର କରି ଦେଇଛି । ଲୁହାକୁ କହେ ନୋହା, ଲୁଚିକି କଲେ ନୁଚି, ଲଙ୍କା—ନଙ୍କା, ଲୋକ—ନୋକ ହୋଇଯାଇଛି ତା ଲାଗି । ରାଜନ, ଠାକୁରଝୀ ତାହାର ଭାଷାର ଏହି ମାର୍ଜିତ ରୂପର ପରମଭକ୍ତ ।

ନିତାଇର କଥା ଶୁଣି ଠାକୁରଝୀ ଜିଜ୍ଞାସୁଦୃଷ୍ଟିରେ ତାର ମୁହଁକୁ ଚାହିଁରହିଥିଲା । କି କଥା ? ଅକାରଣେ ଝିଅଟାର ଗୁଢ଼ ଭିତରେ ହୃତ୍‌ପିଣ୍ଡର ସ୍ପନ୍ଦନ କ୍ଷଣକେ ଦ୍ରୁତତର ହୋଇଗଲା । କି କଥା କହିବ କବିୟାଲ ?

ନିତାଇ କହିଲା—ଅନେକ ଦିନରୁ କହିବି କହିବି ଭାବେ; କିନ୍ତୁ—

ଟିକିଏ ନୀରବ ରହି ନିତାଇ କହିଲା—ଆଉ ଏଣିକି ଦୁଧର ପ୍ରୟୋଜନ ମୋର ହବନି ।

ଠାକୁରାଣୀ କ୍ଷଣକେ କେମିତିକା ହୋଇଗଲା । ଏ କଥା ଶୁଣିବ, ତାହା ତ ସେ ଭାବିନାହିଁ ! ତାହାର ମୁହଁର ଶ୍ରୀ କ୍ଷଣ-କ୍ଷଣକେ ପରିବର୍ତ୍ତିତ ହେଉଥାଏ । ବର୍ଷାର ରସ-ପରିପୁଷ୍ଟ ଘନଶ୍ୟାମ ପତ୍ରଶ୍ରୀ ପରି ତାହାର ମୁହଁଟି କ୍ଷଣ-କ୍ଷଣକେ ପରିବର୍ତ୍ତିତ ହୋଇ ହେମନ୍ତ ଶେଷର ପତ୍ରପରି ପାଣ୍ଡୁର ହୋଇଆସିଲା । ଏସବୁ ହେଉଥିଲା ସମ୍ପୂର୍ଣ୍ଣଭାବେ ତାହାର ଅଜ୍ଞାତସାରରେ । ସେ ନିର୍ବାକ୍ ହୋଇ କେବଳ ନିତାଇର ମୁହଁ ଆଡ଼କୁ ଚାହିଁ ଠିଆ ହୋଇକରି ହିଁ ରହିଲା । ନିତାଇର କଥା ଶେଷରେ ତାହାର ମୁହଁଟା ଯେ ପାଣ୍ଡୁର ହୋଇଗଲା, ତାହାର ଆଉ ପରିବର୍ତ୍ତନ ଘଟିଲା ନାହିଁ । ଅନେକ ବେଳ ପରେ ସେ ଯେପରି କଥା ଖୋଜି ପାଇଲା । କଥାଟା ନିତାଇର କଥା । ସେଇ କଥାଟାକୁଇ ସେ ଯେପରି କମ୍ପିତ କଣ୍ଠରେ ପରୀକ୍ଷା କରିନେଲା—ଆଉ ଦୁଧ ନେବନି ?

—ନା ।

—କିଆଁ ? କି ଦୋଷ କରିଚି ମୁଁ ? ତାହାର ଆଖି ଦୁଇଟି ପାଣିରେ ପୂର୍ଣ୍ଣ ହୋଇଗଲା ।

ନିତାଇ କିଛି ସମୟ ଚୁପ୍ କରି ରହିଲା; ଉତ୍ତର ଦେବାର ଶକ୍ତି ତାହାର ନଥିଲା । କୌଣସି ପ୍ରକାରେ ନିଜକୁ ସମ୍ଭାଳି ନେଇ କହିଲା—ମିଛ କଥା ଏକା ହିଁ ମହାପାପ, ତହିଁକି ଯେବେ ତୁମକୁ ମିଛ କଥା କହିବି, ପାପର ଆଉ ପରିସୀମା ରହିବନି । ଏବେ ମୋର ସାମର୍ଥ୍ୟ ଆଉ ନାହିଁ ଠାକୁରାଣୀ !

ତା ପରେ ଗୋଟାଏ ଗଭୀର ଦୀର୍ଘନିଃଶ୍ୱାସ ପକାଇ ସେ କହିଲା—ଦରିଦ୍ର ଗ୍ରେଟ-ନୋକର କିବା ହବା ବଡ଼ ବିପଦର କଥା ଠାକୁରାଣୀ !

କାତର ଅନୁନୟସ୍ୱରେ ବ୍ୟଗ୍ରଭାବରେ ଝିଅଟି କହିଉଠିଲା—ତମକୁ ପଇସା ଦବାକୁ ହବନି କିବସ୍ଥାଲ ! ଅକୁଣ୍ଠିତ ଆବେଗରେ ସେ ନିତାଇର ହାତ ଦୁଇଟି ଧରିପକାଇଲା ।

ନିତାଇ ତାର ମୁହଁକୁ ଚାହିଁ କିଛିକାଳ ଚୁପ୍‌ହୋଇ ରହିଲା, ତା ପରେ କହିଲା—ନା ତମର ସ୍ୱାମୀ ଜାଣିପାରିଲେ ପାହାର ଦବ, ଶାଶୁ ତିରସ୍କାର କରିବ, ନଣନ୍ଦ ଗଞ୍ଜଣା ଦବ…

ଠାକୁରାଣୀ ପ୍ରତିବାଦ କରି ଉଠିଲା—ନା, ନା, ନା । ଶୁଣ, ଗୋଟିଏ ଗାଈ ମୋର ନିଜର ବୋଲି ରହିଛି, ମୁଁ ବାପଘରୁ ଆଣିଥିଲି, ସେଇ ଗାଈର ଦୁଧ ମୁଁ ତୁମକୁ ଦେବି ।

ନିତାଇ ଚୁପ୍ ହୋଇ ରହିଲା ।

—ନିବ କି ନାହିଁ; କବିୟାଲ— ? ଝିଅଟିର କଣ୍ଠସ୍ୱର ଥରୁଥାଏ । ଦୃଷ୍ଟି ଫେରାଇ ନିତାଇ ଦେଖିଲା, ପୁଣି ତାହାର ଆଖି ଦୁଇଟିରେ ପାଣି ଛଳଛଳ କରୁଛି ।

ସାନ୍ତ୍ୱନା ଦେବାଲାଗି ହିଁ ନିତାଇ ମୃଦୁ ହସିଲା । ସଙ୍ଗେ ସଙ୍ଗେ ଠାକୁରଝୀର ମୁହଁରେ ବି ହସ ଫୁଟିଉଠିଲା । ନିତାଇ ମୁହଁର ସେଇ ହସଟିକୁ ହିଁ ସମ୍ମତି ଧରିନେଇ ଦଣ୍ଡକେ ସେ ଉଚ୍ଛ୍ୱସିତ ହୋଇପଡ଼ିଛି ଏବଂ ସେହି ଉଚ୍ଛ୍ୱାସରେ ହିଁ ସେ ପୁଲକିତ ଦ୍ରୁତ ଲଘୁପାଦରେ ନିତାଇକୁ ଅତିକ୍ରମ କରି ଆସି ନିଜେ ହିଁ ନିତାଇର ବସାର ଦୁଆର ଖୋଲିଦେଲା । ଘରକରଣା ତାର ପରିଚିତ, ଦୁଧପାତ୍ରଟି ବାହାର କରି ଦୁଧ ଢାଳି ଦେଇ ଦ୍ରୁତତର ଚାଲିରେ ବାହାରିଯାଇ ଗ୍ରାମ ଆଡ଼କୁ ରାସ୍ତା ଧରିଲା ।

ନିତାଇ ପଛରୁ ଡାକିଲା—ଠାକୁରଝୀ !

ଠାକୁରଝୀର ଯେମିତି ଶୁଣିବାକୁ ବେଳ ନାହିଁ, ତାର ଯେମିତି କେତେ କାମ ପଡ଼ିଛି । ନିଜର ଗତିବେଗ ଆହୁରି ବଢ଼ାଇଦେଇ ସେ ଚାଲିଗଲା ।

ସେତେବେଳେ ଚାଲିଗଲେ ବି ଫେରନ୍ତା-ବାଟରେ ସେ ଆସି ବସାର ବାରଣ୍ଡାରେ ବସି ଗୋଡ଼ ହଲେଇ ହଲେଇ କହିଲା—ଦିଅ, ଚା ଦିଅ । ମୋର ନୂଆ କପ୍‌ରେ ଦିବ ।

ଚାହାକପଟି ବଢ଼େଇ ଦେଇ ନିତାଇ କହିଲା—ଗୋଟେ କଥା ପଚାରିବି ଠାକୁରଝୀ ?

ଚାହା କପ୍‌ରୁ ସୋଡ଼କାଏ ଝାଇ ଠାକୁରଝୀ କହିଲା—ପଚାରୁନା ?

—ମୋତେ ବିନା ପଇସାରେ କାହିଁ ଦୁଧ ଦିବ ଠାକୁରଝୀ ?

ଠାକୁରଝୀ ସ୍ଥିରଦୃଷ୍ଟିରେ ତା ମୁହଁକୁ ଚାହିଁରହିଲା ।

ନିତାଇ ପୁଣି ଥରେ ପଚାରିଲା—କହ, କାହିଁକି ?

ଠାକୁରଝୀ କହିଲା—ମୋ ମନ ।

ନିତାଇ ଅବାକ୍ ହୋଇଗଲା—ତମ ମନ ?

ଠାକୁରଝୀ କହିଲା—ହଁ, ମୋ ମନ ।

ତାପରେ ହସି ମୁହଁ ଉଠାଇ ସେ କହିଲା—ତୁମେ ହେଲ କବିୟାଲ ! କେତେ ବଡ଼ ମଣିଷ ! କହିଦେଇ ସେ ଚାହା କପ୍‌ଟି ଧୋଇବା ବାହାନାରେ ବାହାରିଗଲା । ଫେରି ଦେଖିଲା, ନିତାଇ ହସ ହସ ହୋଇ ଠିଆହୋଇ ରହିଛି, ତା ହାତରେ ଦୁଇଟି ଗାଢ଼ ଲାଲ ରଙ୍ଗର କୃଷ୍ଣଚୂଡ଼ା ଫୁଲ । ଫୁଲ ଦୁଇଟି ବଢ଼େଇ ଦେଇ ନିତାଇ କହିଲା—ନିଅ । କବିୟାଲ ଦେଲେ ତା ହାତରୁ ଫୁଲ ନିବାକୁ ହୁଏ ।

ଠାକୁରଝୀ ଲାଜରେ ମୁହଁ ବୁଲାଇ ନେଇ କହିଲା—ନା ।

—ତା ହେଲେ ମୁଁ ବି ଦୁଧ ନେବିନି ।

ଠାକୁରଝୀ ଲଘୁ କ୍ଷିପ୍ର ହାତରେ ଫୁଲ ଦୁଇଟି ଟାଣିନେଇ ପ୍ରାୟ ଧାଇଁ ପଳାଇଗଲା ।

ନିତାଇ ନୂଆ ଗୀତର ପଦ ଆବୃତ୍ତି କରିବାକୁ ଲାଗିଲା । ଆଜି ପୁଣି ନୂଆ ପଦ ମନକୁ ଆସିଛି । 'ଆଲୋ ମୋ ମନର ମଣିଷ ଗୋ' ଗୀତଟିର ଖାଲି ଧ୍ରୁପଦ ଅଛି, ଆଉ ନାହିଁ । ଏ ଗୀତଟା ଭୁଲିବାର ସଙ୍କଳ୍ପ ହିଁ ସେ କରିଥିଲା; କିନ୍ତୁ ବିଧାତା ତ ଦେଲେନି ଭୁଲିବାକୁ,—ସେଇ ଗୀତଟିକି ସେ ପୂରା କରିବାକୁ ବସିଲା । ବଡ଼ ଭଲ ଗୀତଟି ।

"ଛିଟାରେ ଛିଟାରେ ଫୁଟିଉଠେ ତୋ ନିଶାଣ"—ଗୁଣୁଗୁଣୁ କରି କରି ହିଁ ସେ ଖଣ୍ଡିଏ କାଠ ଚୁଲିରେ ଗୁଞ୍ଜିଦେଲା । ଟ୍ରେନ୍ ଚାଲିଯାଇଛି, ଡିଉଟି ଶେଷ କରି ଏଥର ରାଜନ ଗୁହ୍ଲା ଚାନ ନେଇକରି ଆସିବ, ପୁଣି ଥରେ ଗୁହ୍ଲା ଖାଇବ ।"

ନୂଆ ପଦ ଆସିଛି । ବଡ଼ ଭଲ ପଦ । ନିତାଇ ଖୁବ୍ ଖୁସି ହୋଇଗଲା—ଆହା—
"ସେଇ କାରଣରେ ଘର ପୋଡ଼ିଲା ରାସ୍ତାକୁ କଲି ସାର ।"

ସତେ ତ, ରାସ୍ତାକୁଇ ସେ ସାର କରିଛି । କିନ୍ତୁ ତାପରେ ? ହିଁ—ହୋଇଛି ! ପାଇଛି ସେ, ପାଇଛି—ସେଇ ରାସ୍ତାର ଦୂରକଡ଼ରେଇ ବଇଁଶୀ ବାଜୁଅଛି—ରାସ୍ତାରେ ଠିଆହୋଇ ରହିଲେ ଦୁଃଖ ନାହିଁ କି କଷ୍ଟ ନାହିଁ ।

"ଦୂରକଡ଼େ ଦୂର ବୃନ୍ଦାବନେ ବଇଁଶୀ ବାଜେ କା'ର ?"

କାହାର ଆଉ ? ସେହି ବ୍ରଜପୁରର ବଇଁଶୀ । ସେଇ ବଇଁଶୀ ଯେ ଚିରକାଳ ବାଜୁଅଛି । ପ୍ରେମ ହେଲେ ତେବେ ଯାଇ ଶୁଣାଯାଏ, ନୋହିଲେ ଶୁଣାଯାଏନା । ସେ ଶୁଣିଛି ।

ସେ ଆଜି ସ୍ପଷ୍ଟ ଅନୁଭବ କଲା—ଠାକୁରଝିଙ୍କୁ ସେ ଭଲପାଏ ।
ଠାକୁରଝି ବି ତାକୁ ଭଲ ପାଏ ।
ଗୁଣୁଗୁଣୁ କରି ନିତାଇ ମନକୁ ମନ ଗାଇଲା—

"ବଇଁଶୀ ବାଜେ ତାର
ଓ ରାଧା ରାଧା ରାଧା ଡାକେ—"

ତା ପରେ ? ତା ପରେ ? ଆହା— ! ସେଇ ବଇଁଶୀ । ନା ନା ।—ହିଁ ।

"ଘର ଜଳିଲା, ମନ ହଜିଲା ତାହାରି ସ୍ୱରେ ଗୋ !
ସୁଖର ଏ କି ଆକୁଳ ଦୁଃଖଜ୍ୱର ।"

ଦୁଃଖଭରା ନୁହେଁ ତ ଆଉ କଣ । ଏ ବଡ଼ ଦୁଃଖଭରା !

ଅକସ୍ମାତ ତାର ଗୀତ ବନ୍ଦ ହୋଇଗଲା । ଗୋଟାଏ କଥା ମନେ ହେବାମାତ୍ରେ ଗୀତ ବନ୍ଦ କରି ସେ ଶିହରି ଉଠିଲା ।

ଠାକୁରାଣୀ ଯେ ଭଳେ ଜାତିର, ଅନ୍ୟ ଜଣକ ସହିତ ତାର ବିବାହ ହୋଇଛି । ସେତ ଯେ ମହାପାପ ! ଓଃ ! ବଡ଼ ଦୁଃଖଭରା !

କେତେବେଳଯାଏ ନିତାଇ ଚୁପ୍ ହୋଇ ରହିଲା । ନିର୍ଜନରେ ବସି ସେ ବାରମ୍ବାର ତାର ମନକୁ ଶାସନ କରିବାକୁ ଚେଷ୍ଟା କଲା । ବାରମ୍ବାର ସେ ଶିହରି ଉଠିଲା । ତାର ଅବାଧ ମନ କୌଣସିମତେ ଶାସନ ମାନିଲା ନାହିଁ । ଅବାଧ ମନଟାର ଲାଜ ନାହିଁ, ଦୁଃଖ ନାହିଁ । ସେ ଯେପରି କେତେ ଖୁସି ହୋଇଅଛି । କେତେ ତୃପ୍ତି ପାଇଅଛି । ଘରଟାର ପ୍ରତି କୋଣରେ ଯେପରି ଠାକୁରାଣୀ ଠିଆହୋଇ ରହିଛି—ଅନ୍ଧାର ଭିତରେ ଖାରଧୂଆ ଧୋବ ଲୁଗା ପିନ୍ଧି ସେ ଯେମିତି ଠିଆହୋଇ ରହିଛି ନିତାଇ ମନକଥା ଜାଣିବାଲାଗି । ନିତାଇ ଅଧୀର ହୋଇପଡ଼ିଲା, ଜଲଦି ଉଠି ଘରର ଝରକାଟା ଖୋଲିଦେଲା । ଉଦାସ ଦୃଷ୍ଟିରେ ସେ ଖୋଲି ଝରକା ଦେଇ ଚାହିଁ ରହିଲା ରେଳଲାଇନ୍ ଆଡ଼କୁ । ରେଳର ସମାନ୍ତରାଳ ଲାଇନ ଦୁଇଟା ଯେଉଁଠି ମିଶି ଏକ ହୋଇଯାଇଥିବା ପରି ଲାଗେ, ସେଇଠାରେ ନିତାଇର ମନେହେଲା ଗୋଟିଏ ସ୍ଥିର ସ୍ୱର୍ଣ୍ଣବିନ୍ଦୁ ଜାଗ୍ରତ ହୋଇ ରହିଛି । ସେ ଅଚଞ୍ଚଳ, ସେ ହଲେନା, ଆଗାଏ ନାହିଁ, ଗୁଡ଼ିଯାଏ ନାହିଁ—ସ୍ଥିର । ଝରକା ଖୋଲିଦେବାରୁ ରାଗ କରି ଗୁଳିସିବା ବାଟରେ ସେ ବୁଲିପଡ଼ି ଠିଆହୋଇ ଦେଖୁଛି କବିୟାଲ ତାକୁ ଡାକୁଛି ନା ନାହିଁ ।

ନିତାଇର ଗ୍ରୁଡ ଭିତରଟା କେମିତି କେମିତି କରିଉଠିଲା । ସେ ଘରୁ ବାହାରକୁ ଆସି ଯାଇ ବସିଲା କୃଷ୍ଣଚୂଡ଼ା ଗଛଟି ମୂଳେ । ଲାଲ ଫୁଲରେ ଭରିଯାଇଛି ଗଛ । 'ଚିରଳ-ଚିରଳ' ପତ୍ର ଅଗରେ ପେନ୍ଥା ପେନ୍ଥା ଫୁଲ ! ଗଛଟାର ଏପରି ସାଜ ନିତାଇ ଆଉ କେବେ ଦେଖିଥିବା ପରି ମନେ ହେଲା ନାହିଁ । ସାମନାରୁ ବଣଫୁଲର ମିଠା ବାସ୍ନା ଆସୁଛି । କଦମ୍ବ ଗଛରେ କଅଁଳ ପତ୍ର ଗଜୁରିଛି । ବର୍ଷା ପାଇଲେଇ କଦମ୍ବ ଫୁଲ ହେବ । ବାବୁଘର ଆମ୍ବତୋଟାରେ ଦୁଇଟି କୋଇଲି ଟକର ଲଗାଇ ଡାକୁଛନ୍ତି । ଗୋଟିଏ କୁମ୍ଭାଟୁଆ ଡାକୁଛି ଚଣ୍ଡୀତଳା ଆଗେ । ଚଢ଼େଇଗୁଡ଼ିକ ନାଚି ନାଚି ଉଡ଼ି ବୁଲୁଛନ୍ତି । ରଙ୍ଗରଙ୍ଗିଆ ପ୍ରଜାପତିମାନଙ୍କର ଯେମିତି ମେଳଣ ବସିଛି କୃଷ୍ଣଚୂଡ଼ା ଗଛଟାର ଚାରିକଡ଼େ । ସେମାନେ ଏଣେତେଣେ ଉଡ଼ି ବୁଲୁଛନ୍ତି ।

ଠାକୁରାଣୀ ଯେପରି ଦ୍ରୁତପଦରେ ଗ୍ଲୁଲିଆସୁଛି ଏଇଆଡ଼େ ।

ନିତାଇର ଦେହଟା ଜାଣି କିମିତି ଝିମ୍‌ଝିମ୍ କରୁଛି ! ସେ ଆଖି ବୁଜିକରି ବସି

ରହିଲା । ମନେ ମନେ ଡାକିଲା—ଆସ । ଠାକୁରାଣୀ, ଆସ । ତମର ମନକଥା ମୁଁ ବୁଝି-ପାରୁଛି । ତମେ ଆସ । ମୋର ପାପ ହେଲେ ହେଉ, ନରକକୁ ଯିବାକୁ ପଡ଼ିଲେ ହସି ହସି ଚାଲିଯିବି; କିନ୍ତୁ ତମକୁ କହିପାରିବିନି ତମେ ଆସନା ବୋଲି । ତା ମୁଁ କଣ କରିପାରେ ! ସେ କଣ ମୁହଁ ଖୋଲି କହିବାର କଥା ? ଆସ ତୁମେ, ଆସ ।

ତା ମନକୁ ଆସିଲା ମଲା ଜହ୍ନର କଥା । ସେ ଜହ୍ନକୁ ଦେଖିଲେ କୁଆଡ଼େ କଳଙ୍କ ଲାଗେ । ନିତାଇ କିନ୍ତୁ କେବେ ସେ କଥା ମାନି ନାହିଁ । ମନ ଭିତରେ ପୁଣି ତାର ଗୀତ ଗୁଣୁଗୁଣୁ କରି ଉଠିଲା । ଆପେ ଆପେ ଯେମିତି ପଦଟା ଆସିଗଲା—

“ଜହ୍ନ ଦେଖିଲେ କି କଳଙ୍କ ଲାଗିବ କିଏ ଦେଖେ ନାହିଁ ଜହ୍ନ ?”

ଠାକୁରାଣୀ ତାହାର ସେହି ଜହ୍ନ । ଠାକୁରାଣୀ ଯଦି ଆଜି ନ ଆସେ, ତା ହେଲେ ନିତାଇ ବଞ୍ଚିବ କେମିତି ! ଏଠି ରହି ସେ କଣ କରିବ ! ସୁଖ ତା ହେଲେ କୋଉଠି ? ସେ ଏଇଠି ବସି ସେଇ ରାସ୍ତା ଆଡ଼କୁ ଚାହିଁ ଚାହିଁ ଆଖିଟି ହରାଇଦେବ ପରା ।

“ଜହ୍ନ ଦେଖିଲେ କି କଳଙ୍କ ଲାଗିବ କିଏ ଦେଖେ ନାହିଁ ଜହ୍ନ ?
ତା ଚାହିଁ ଭଲ ଆଖି ଫୁଟିଯାଉ—ମରିଯାଉ ଏଇ ମନ ।
ଆଲୋ ଜହ୍ନ ତୋର ଲାଗି
ହେବ ପଛକେ ବଇରାଗୀ
ରାତି ଜାଗି ଚାଲିବି ବାଟ କେହି ନ କରିବ ବାରଣ ।”

ଆହା-ହା-ହା ! ଇଏ କି ଚମତ୍କାର ଗୀତ ! ଆଗୋ ଠାକୁରାଣୀ ! ଆଗୋ, କି ମହା-ଭାଗ୍ୟରେ ତୁମେ ଆସିଥିଲ, କବିୟାଲକୁ ଭଲ ପାଇଥିଲ—ସେଇଥିଲାଗି ତ—ଆଜି ଏମିତି ଗୀତର ପଦ ଆପେ ଆପେ ଆସିଗଲା ।

ନିତାଇ ଉଠିଲା । ସେ ଚାଲିଲା ସେଇ ରେଲଲାଇନ୍ ବାଟରେ, ଯେଉଁ ବାଟେ ଠାକୁରାଣୀ ଆସେ । କିଛି ଦୂର ଯାଇ ବାଟ ନିର୍ଜନ ହେବାମାତ୍ରେ ସେ ସେହି ଗୀତଟା ଧରିଲା ।

ରେଲ ଲାଇନର ବକ୍ଷଟି ସରିଛି ନଈ ଉପରେ । ବନ୍ଧମୁଣ୍ଡଠାରୁ ପୋଲ ଆରମ୍ଭ ହୋଇଛି । ବନ୍ଧରୁ ନିତାଇ ଓହ୍ଲାଇଲା ନଈବାଟକୁ; ନଈରେ ଅଳ୍ପ ପାଣି, ଆଣ୍ଠୁଏରୁ ବେଶୀ ନୁହେଁ । ଚାଲିଚାଲି ଠାକୁରାଣୀ ନିତି ନାଆରେ ପାରିହୋଇ ଯା-ଆସ କରେ । ନିତାଇ ଯାଇ ନଈଘାଟରେ ଠିଆହେଲା ।

ନିତାଇ ଚାଲୁଥାଏ ପୁରାପୁରି ବିଭୋର ହୋଇ ! ବାଁ ହାତଟି ଗାଲରେ ଥାପି ଡାହାଣ ହାତର ଅଙ୍ଗୁଷ୍ଠ ଓ ମଧ୍ୟମା ଆଙ୍ଗୁଠି ଦୁଇଟି ଯୋଡ଼ି ସେ ଯେପରି ଠାକୁରାଣୀଙ୍କୁ ଢି

ଉଦ୍ଦେଶ୍ୟ କରି ଗାଇ ଗାଇ ବୁଲୁଥିଲା । ହୁଏତ ଏମିତି ଏମିତି ଯାଇ ସେ ଏକଦମ ଠାକୁରାଣୀର ଶଶୁରଘରେ ପହଞ୍ଚିଥାନ୍ତା । ନଈଘାଟରେ ଗୋଡ଼ ଦେଲାକ୍ଷଣି ହଠାତ୍ ତାର ଖିଆଲ ହେଲା । ଆରେ, ସେ କୁଆଡ଼କୁ ଯାଉଛି ? ଏ କଣ କରୁଛି ସେ ? ଠାକୁରାଣୀ ଶଶୁରଘରେ ସେ ଯଦି ଯାଇ ଠିଆହୁଏ, ଏଇ ଗୀତଟା ଗାଏ, କହେ—ଠାକୁରାଣୀ, ଏ ଜହ୍ନ କିଏ ଜାଣ ? ଏ ଜହ୍ନଟି ମୋର ହଉଚ ତମେ । ତାହେଲେ ଠାକୁରାଣୀର ଦଶା କଣ ହବ ! ଠାକୁରାଣୀର ସ୍ୱାମୀ କଣ କହିବ ? ତାର ଶାଶୁ ନଣନ୍ଦ କଣ କହିବେ ? ସାଇପଡ଼ିଶା ଆସି ଜମା ହୋଇଯିବେ; ସେମାନେ କଣ କହିବେ ? ସମସ୍ତଙ୍କର ଗଞ୍ଜଣା ଭିତରେ ପଡ଼ି ଠାକୁରାଣୀ—ତାର ଆଖିଆଗରେ ଭାସିଉଠିଲା ଠାକୁରାଣୀର ଛବିଟି । ଦଗହଜା ପରି ତାର ଠାକୁରାଣୀ ଠିଆହୋଇ ଖାଲି କାନ୍ଦିବ ।

ଠାକୁରାଣୀର ନିନ୍ଦାରେ ଘର, ପଡ଼ା-ଗାଁ-ଦେଶ ଭରିଉଠିବ । ଠାକୁରାଣୀ ବାଟ ଚାଲିବ ତ ମୁଣ୍ଡ ତଳକୁ ପୋତି ବାଟ ଚାଲିବ । ଲୋକମାନେ ଆଙ୍ଗୁଠି ଦେଖାଇ କହିବେ —ହେଇ ଦେଖ, ପୋଡ଼ାମୁହାଁ ଯାଉଛି ।

କୁତ୍ସିତ ଅଭଦ୍ର ଲୋକେ ଠାକୁରାଣୀକୁ କୁତ୍ସିତ କୁକଥା କହିବେ ।

ସେ ଯଦି ଠାକୁରାଣୀକୁ ମଥାରେ ବସାଇ ଦେଶାନ୍ତରୀ ହୁଏ, ତଥାପି ଲୋକେ କହିବେ —ଝିଅଟି ଖରାପ, ନତାଇ ସାଙ୍ଗରେ ଘର ଛାଡ଼ି ପଳାଇ ଆସିଛି । ଠାକୁରାଣୀ ସେଠି ମଧ୍ୟ ମୁଣ୍ଡ ଟେକି ଚାଲିପାରିବନି ।

ନତାଇ ନଈଘାଟରେ ବସିଲା ।

ମନେ ମନେ ସେ କହିଲା—ଆକାଶର ଚାନ୍ଦ ତମେ ମୋର ଠାକୁରାଣୀ—ତମେ ଆକାଶରେଇ ଥାଅ ।

ଆହା—ଆଜି କଣ ହେଇଚି କି ନତାଇର ! ପୁଣି ପଦେ ଆସିଗଲାଣି—

“ଚାନ୍ଦ ଗୋ ତୁମେ ଆକାଶେ ଥାଅ—ମୁଁ ତମକୁ ଦେଖିବି ଖାଲି,
ଛୁଇଁବାକୁ ମୁଁ ଚାହେଁନା ତମକୁ—ସୁନାର ଅଙ୍ଗେ ଲାଗିବ କାଳି ।”

ନତାଇ ଗୀତ ବୋଲି ବୋଲି ପୁଣି ଫେରିଲା ।

ରାଜା କହିଲା—କାହାଁ ଗୟା ରହା ଓସ୍ତାଦ ?

ନତାଇ ହସି କହିଲା—ଗୀତ, ରାଜନ, ଗୀତ । ବହୁତ ବଢ଼ିଆ ବଢ଼ିଆ ଗୀତ ଆଜି ଆସିଗଲା ଭାଇ ! ସେଇଥିପାଇଁ ଗୁଣୁଗୁଣୁ କରୁଥିଲି; ଆଉ ଫାଙ୍କା ଫାଙ୍କା ବୁଲୁଥିଲି ।

—ହାଁ ! ବଢ଼ିଆ ବଢ଼ିଆ ଗାନା ?

—ହଁ ରାଜନ, ଅତୀବ ଉତ୍ତମ, ଯାହାକୁ କହନ୍ତି ଉଚ୍ଚାଙ୍ଗ ଗୀତ ।

—ବୈଠୋ । ତୋ ଢୋଲକ୍ ଲେ ଆତା ହାମ୍ ।

ରାଜା ଢୋଲକ ନେଇଆସି ବସିଗଲା ।

ନତାଇ ଏକଧ୍ୟାନରେ ଗାଉଥାଏ—'ଗୃହ ଗୋ ତୁମେ ଆକାଶେ ଥାଅ—'

ହଠାତ୍ ବାଜା ବନ୍ଦ କରି ରାଜା କହିଲା—ଅରେ ଓସ୍ତାଦ୍, ଆଁଖ୍ ସେ ତୁମରି ପାନି କାହେ ନିକଲ୍ତା ଭାଇ ?

ଆଖି ପୋଛି ନତାଇ କହିଲା—ହଁ ରାଜନ, ପାନି ନିକଲ ଆୟା । କଣ କରିବ ? ଆଖିଲୁହ ଯେ କଥା ଶୁଣେନା ଭାଇ ମୋର !

ପରଦିନ ନତାଇ ସକାଳୁ ବସିଥିଲା ସେଇ କୃଷ୍ଣଚୂଡ଼ା ଗଛମୂଳେ । ଆଜି ସକାଳ-ପହରୁ ତାର ମନେ ହେଉଛି—ତା ମନରେ କୌଣସି ଖେଦ ନାହିଁ, କୌଣସି ତୃପ୍ତି ବି ନାହିଁ । ସେ ଯେପରି ବୈରାଗୀ ହିଁ ହୋଇଯାଇଛି ।

କାଲି ସାରା ଦିନ, ସାରା ରାତି ମନେ ମନେ କେତେ କଥା ଭାବିଛି ସେ । ସନ୍ଧ୍ୟାବେଳେ ଯାଇଥିଲା ରାଜନ ଘରକୁ । ରାଜାର ସ୍ତ୍ରୀ ବଡ଼ ମୁଖରା; ଏବେ ରାଜା ନତାଇକୁ ନାନାପ୍ରକାର ସାହାଯ୍ୟ କରେ ବୋଲି ନତାଇ ଉପରେ ରାଗିକରି ଥାଏ । ତଥାପି ସେ ଯାଇଥିଲା । ରାଜା ଖୁସି ହୋଇଥିଲା ଖୁବ୍ । ଆଶ୍ଚର୍ଯ୍ୟ କଥା—କାଲି ରାଜାର ସ୍ତ୍ରୀ ବି ତାକୁ ସାଦର ସମ୍ଭାଷଣ କରିଥିଲା । ଓଢ଼ଣୀତଳୁ କହିଥିଲା—ଅପୂର୍ବ, ଓସ୍ତାଦ୍-ଘର ଆଜି ମନେ ପଡ଼ିଲା ପରା ! ନତାଇ ତାହାଠାରୁ କୌଶଳରେ କଥା ପ୍ରସଙ୍ଗରେ ଜାଣିନେଇଛି—ଠାକୁରଝିଅର ସ୍ୱାମୀର ସକଳ ବୃତ୍ତାନ୍ତ ।

ଠାକୁରଝିଅର ସ୍ୱାମୀଟି କାଳେ ଦିବ୍ୟସୁନ୍ଦର ।

—ରଙ୍ଗ ମନେକଲେ ଗେହ୍ଲୁଆ, ବୁଝିଲ ଓସ୍ତାଦ, ସେଇମିତି ବଳି ଦେହପରି ଗଢ଼ଣ । ଲୋକଟି ବି ଭଲ । ଦି'ଜଣଙ୍କ ଭିତରେ ବେଶ୍ ପଟେ, ବୁଝିଲ ।

ଅବସ୍ଥା ବି କୁଆଡ଼େ ଭଲ । ଦିବ୍ୟ ସ୍ୱଚ୍ଛଳ ସଂସାର । ରାଜାର ସ୍ତ୍ରୀ କହିଲା—ଯାହାକୁ କହନ୍ତି 'ଉଚ୍ଛଳ-ବିଚ୍ଛଳ' । ଆଠ ଦଶଟା ଗାଈଗୋରୁ । ଦୁଇଟା ବଳଦ । ଭାଗରେ ଚାଷବାସ କରେ । ତମ ଠାକୁରଝିଅର ପାଁଜଣଙ୍କ ଆଶୀର୍ବାଦରେ ବେଶ୍ ସୁଖର ସଂସାର ।

ନତାଇ କହିଥିଲା— ଆହା ! ଆଶୀର୍ବାଦ ତ ଚବିଶି ଘଣ୍ଟା କରିଯାଉଛୁ, ମହାରାଣୀ !

ରାଜାର ସ୍ତ୍ରୀ ଅଦ୍ଭୁତ । ସେ ଏଯାକେ ବେଶ୍ ଥିଲା, ଏଥରକ ଏଇ ପଦ ମହାରାଣୀ ଶୁଣିକରି ସେ କୁଟାଗଦାରେ ନିଆଁ ପରି ହଠାତ୍ କରି ଜଳିଉଠିଲା—ଫେର୍ ସେଇ କଥା; ମୋ ନାହିଁ ତଉଁ । ମହାରାଣୀ ! ମହାରାଣୀ ତ ଖୁବ୍ ଦେଖିଲ । ମେହେନ୍ତରାଣୀ,

ସ୍କୁକରାଣୀ ତା ସ୍ବୁହିଁ ଭଲ ମ । ନା ଘର ନା ଦ୍ୱାର, ରେଲବାଇ ଘରେ ବସା—ଆଜ ଏଠେଇଁ ତ କାଲି ସେଠେଇଁ ।

ରାଜା କ୍ଷଣକେ ଅଗ୍ନିଶର୍ମା ହୋଇଗଲା ।—କୈଁୟା ହାରାମଜାଦା ? କ୍ୟା ବୋଲତା ତୁମ ?

—କ୍ୟା ବୋଲତା ତୁମ୍ କଣ ? ହକ୍ କଥା କହିବ, ମୋର ଡର କାହାକୁ ?

ତାହା ପରେ ପରେ କୁରୁକ୍ଷେତ୍ର । ରାଜା ମୁଠେଇଥିଲା ତା ବାଲକୁ । ସେମାନଙ୍କୁ ଶାନ୍ତ କରିବାକୁ ନିତାଇ କେଇଥର ଚେଷ୍ଟା କରିଥିଲା ହିଁ; କିନ୍ତୁ ସେ ଚେଷ୍ଟାରେ କିଛି ଫଳ ହେଇନି । ରାଜାର ସ୍ତ୍ରୀ ପ୍ରାୟ ରାତି ବାରଟା ଗୋଟାଏ ବେଳଯାକେ କାନ୍ଦୁଛି; ରାଜାକୁ ଗାଳି ଦେଉଛି । ନିତାଇକି ବି ଗାଳି କରୁଛି । ତାହାର ବକସ୍ବାଟା ନେଇ ଆଜି ସକାଳୁ ବି ଦଫାଏ ହୋଇଯାଇଛି ।

କିନ୍ତୁ ନିତାଇର ଉଦାସୀନତା ଅବଶ୍ୟ ସେଥିଲାଗି ନୁହେ ।

କାଲି ରାତିସାରା ମନ ସଙ୍ଗେ ଯୁଦ୍ଧ କରି ସେ ମନକୁ ବୁଝାଇଛି । ଭଲ ପାଇଲେ ଭଲପାଅ; କିନ୍ତୁ ସେ କଥା ମନ ଭିତରେ ଲୁଚେଇ ରଖ—କାହାରିକି କୁହନା, ଠାକୁରଝୀକି ବି ନୁହେଁ । ତାର ସୁଖର ଘରସଂସାର—ସେଥି ଘର ତାର ନିତ୍ୟ-ନୂତନ ସୁଖରେ ପୂରିଉଠୁଥାଉ । ତୁ ତାର ମନର ଲାଜବନ୍ଧଟି ଭାଙ୍ଗିଦେଇ ତାର ସେଇ ସୁଖର ସଂସାରଟି ଭସେଇ ଦେ'ନା ।

ଦି'ପହର ବେଳକୁ ଠାକୁରଝୀ ଆସିଲା ଘଣ୍ଟାକଣ୍ଟା ଭଳି । ରେଳ ଲାଇନ୍‌ରେ ଫୁଟି ଉଠିଲା ସୁନା ରଙ୍ଗର ଗୋଟିଏ ଚକଚକ ବିନ୍ଦୁ, ତା ପରେ କ୍ରମଶଃ ଫୁଟିଉଠିଲା କାଶଫୁଲପରି ଧଳା ଗୋଟିଏ ଚଳନ୍ତ ରେଖା । କ୍ରମେ ପାଖକୁ ଆସି ସେ ହୋଇଗଲା ଠାକୁରଝୀ । ମୁହଁରେ ହସ ଭରି ଠାକୁରଝୀ ତା ଆଗରେ ଠିଆହେଲା ।

—କବିୟାଲ !

ନିତାଇ ଅଶ୍ରୁ-ଉଦ୍‌ବେଳ କଣ୍ଠରେ କହିଲା—ଘରେ ଗିନା ଅଛି, ଦୁଧଟା ରଖି ଯାଅ ।

ସେ ବୁଝିପାରିଲା ନାହିଁ, କାହିଁକି ତାର ଆଖିରେ ଅକାରଣେ ପାଣି ଉଚ୍ଛୁଳି ଆସୁଛି ।

—ନା, ତୁମେ ଆସ, ମୁଁ ଏତେ କଥା କରିପାରିବିନି ବାବା ! ଆଉ—

—ଆଉ କଣ ?

—ଖରାରେ ଆସିଲ, ବସିବ ଟିକଏ ।

—ନା ଠାକୁରଝୀ, ଏମିତି ମୋ ଘରେ ବସିବାଟା ଠିକ୍ ନୁହେଁ । ପାଞ୍ଚଜଣ ଦେଖିଲେ ଦୋଷ ଦେବେ ।

ଠାକୁରଝୀ ସ୍ତବ୍ଧଭାବେ, ସ୍ଥିରଦୃଷ୍ଟିରେ ନିତାଇ ଆଡ଼କୁ ଚାହିଁରହିଲା ।

ନିତାଇ କହିଲା—ବିଶ୍ରାମ କରିବ ଯେବେ ତାହେଲେ ତମର ଅପାଘର ତ ଅଛି । ମୁଁ

ଏକୁଟିଆ ମରଦଟାଏ ଘରେ ଥାଏ । ପାଞ୍ଚଜଣ ଦୋଷ ଦେଲେ ଭୁଲ୍ ତ ହବ ନାହିଁ ? ଦେଖ, ତୁମେ ନିଜେ ବିବେଚନା କରି ଦେଖ ଠାକୁରଝି ! ତା ମୁହଁରେ ନିରୁପାୟ ଲୋକର ସକରୁଣ ହସ ଫୁଟିଉଠିଲା ।

ଠାକୁରଝି ଦୁମୁଦୁମୁ କରି ଚାଲିଗଲା ।

ନିତାଇ ଗୋଟିଏ ଦୀର୍ଘଶ୍ୱାସ ପକାଇ ସ୍ତବ୍ଧ ହୋଇ ବସିରହିଲା ।

ଦିନ ଏମିତି ଏମିତି କରି ଯିବାକୁ ଲାଗିଲା । ନିତାଇ ଉଦାସ ହୋଇ ବସିରହେ । ଗୀତ ବି ସେମିତି ଆଉ ଗାଏନା । ଠାକୁରଝି ଆସେ, ସେ ବି ଆଉ ନିତାଇ ସାଙ୍ଗରେ କଥା ହୁଏନା । ଦ୍ରୁତପଦରେ ଆସି ଠିଆହୋଇ ଗିଲାସରେ ଦୁଧ ଢାଳିଦିଏ, ଚାଲିଯାଏ ।

ଏହା ଭିତରେ ନିତାଇ ଦିନେ କହିଲା—ଶୁଣ ।

ଠାକୁରଝି ଶୁଣିପାରିଥିଲା, କିନ୍ତୁ ଠିଆ ହେଲା ନାହିଁ; ଅରେ ମୁହଁ ବୁଲାଇ ନିତାଇ ଆଡ଼କୁ ଚାହିଁଦେଇ ପୁଣି ଚାଲିବାକୁ ଆରମ୍ଭ କଲା ।

ନିତାଇ ପୁଣି ଡାକିଲା—ଯାଅନି, ଶୁଣ, ଠାକୁରଝି !

ଠାକୁରଝି ଏଥରକ ଠିଆହେଲା ।

—ଶୁଣ, ଇଆଡ଼କୁ ଚାହଁ ।

ଠାକୁରଝି ବୁଲି ଠିଆହେଲା । ନିତାଇର ଆଖିରେ ବି ମୁହୂର୍ତ୍ତକ ଭିତରେ ପାଣି ଆସିଗଲା । ସେ ତତ୍‌କ୍ଷଣାତ୍ ବୁଲି ଠିଆହୋଇ ହାତ ହଲାଇ ଇଙ୍ଗିତ କରି କହିଲା—ନା ନା, ଯାଅ ତମେ, କହିବି, ଆଉ ଦିନେ କହିବି ।

ଠାକୁରଝି ଆଉ ଠିଆହେଲା ନାହିଁ; ଚାଲିଗଲା ।

ଦିନାକେତେ ପୁଣି ଆଗ ପରି ଚାଲିଲା—କେହି କାହାର ସାଙ୍ଗରେ କଥା କହେନା । ଦିନେ ଠାକୁରଝି ଦୁଧ ଢାଳିଦେଇ ଚୁପ୍ କରି ଠିଆ ହୋଇ ରହିଲା । କିଛି କାଳ ପରେ କହିଲା—ସେ ଦିନ କଣ କହିବ କହୁଥିଲ—କହିଲନି ?

ନିତାଇ କହିଲା—କହିବି ।

—କହ ।

ଟିକିଏ ଚୁପ୍‌କରି ରହି ନିତାଇ କହିଲା—ଆଉ ଦିନେ କହିବି ଠାକୁରଝି !

ଠାକୁରଝି ଟିକିଏ ହସିଲା, ସେ ହସଟା ଦେଖି ନିତାଇର ହୃଦୟ ଗୋଟାଏ ପ୍ରଚଣ୍ଡ ଦୀର୍ଘନିଃଶ୍ୱାସରେ ଆଲୋଡ଼ିତ ହୋଇପଡ଼ିଲା । ଠାକୁରଝି ସାଙ୍ଗେ ସାଙ୍ଗେ ବୁଲିପଡ଼ିଲା, ଘରୁ ବାହାରି ଚାଲିଗଲା ।

ନିତାଇର ରୁଦ୍ଧଥିବା ଦୀର୍ଘନିଶ୍ୱାସଟା ଏତେବେଳେ ଯାଇ ଝରିପଡ଼ିଲା । ଯେଉଁ କଥାଟା କହିପାରିଲା ନାହିଁ, ସେଇ କଥା ଗୀତ ହୋଇ ବାହାରି ଆସିଲା—

"କହିବାକୁ କହିନା ଗୋ ମୋ ମନର କଥା, ଛପିରହୁ ମୋର ମନେ
ତୁମେ ଦୂରେ ରହ, ସୁଖରେ ଥାଅ, ପୋଡ଼ିଯାଏଁ ମନ-ଦହନେ !"

ଅନେକ ଦିନ ପରେ ନିତାଇ ମନକୁ ପଦ ଆସିଛି—ଦୁଃଖ ଭିତରେ ବି ନିତାଇ ଖୁସି ହୋଇଗଲା । ଗୁଣୁ ଗୁଣୁ କରି ଗୀତ ଧରି ନିତାଇ ଚାଲିଲା ବାବୁଘର ବଗିଚା ଆଡ଼କୁ । ବାବୁଘର ବଗିଚାରେ ତାର ଗୀତର ଢେର୍ ସମଝଦାର ଅଛନ୍ତି । ବଗିଚାର ପ୍ରତ୍ୟେକ ଗଛବୃକ୍ଷ ତାର ସମଝଦାର୍ ଶ୍ରୋତା । ଏହି ବଗିଚାରେଇ ସେ ପ୍ରଥମ ପ୍ରଥମ କବିଗାଉଣା ଅଭ୍ୟାସ କରୁଥିଲା । ଗଛଗୁଡ଼ାକ ହେଉଥିଲେ ସଭାଜନ । ସେମାନଙ୍କୁ ସେ ତାର ଗୀତ ଶୁଣାଉଥିଲା । ଆଜି ବି ବଗିଚାରେ ଯାଇ ସେ ଗୀତ ମେଲିଲା, ସେଇ ଗୀତ—

"ସାକ୍ଷୀ ଥାଅ ତରୁଲତା, ଶୁଣ ମୋର ମନକଥା!
ଏ ହୃଦରେ କେତେ ବ୍ୟଥା ବୁଝ ବୁଝ ଅନୁମାନେ
ମୁହିଁ ପୋଡ଼େଁ ମନ-ଦହନେ ।"

ଗୀତ ବୋଲିସାରି ସେ ଚୁପ୍ ହୋଇ ବସିଲା । ନାଃ, ଏମିତି କରି ଆଉ ଦିନ କଟୁ-ନାହିଁ । ଏଇ ମନର ନିଆଁରେ ସେ ଆଉ ପୋଡ଼ିଜଳି ପାରିବ ନାହିଁ । ଖାଲି ମନର ନିଆଁରେ ନୁହେଁ, ପେଟ-ନିଆଁର ଜ୍ୱାଳା, ସେ ବି କୋଉ କମ୍ ! ରୋଜଗାର ଯାଇଛି, ପୁଞ୍ଜି ପ୍ରାୟ ଶେଷ ହୋଇଆସିଲା । ରୋଜଗାରର ଏକମାତ୍ର ବାଟ ମୋଟବହନ; କିନ୍ତୁ କବିୟାଲ ହୋଇକରି ସେ ତ ଆଉ ଏ କାମ କରିପାରିବନି । ଅନ୍ତତଃ ଏଠି ପାରିବ ନାହିଁ । ଏଠୁ ତାର ଚାଲିଯିବା ଭଲ । ସେଇଆ କରିବ ସେ । କାଲି ଯାଇ ମା ଚଣ୍ଡୀଙ୍କୁ ପ୍ରଣାମ କରି ମନେ ମନେ କହିବ—ମାଆ ଲୋ, ତୋର ହତଭାଗା ପୁଅ ନିତାଇଚରଣକୁ କବିୟାଲ କଲୁ; କିନ୍ତୁ ତାର ମନର ଦୁଃଖ ପେଟର ଦୁଃଖ କିଛି ବୁଝିଲୁ ନାହିଁ । କୌଣସି ଉପାୟ କଲୁ ନାହିଁ । ସେ ଚାଲିଲା, ତାକୁ ବିଦାୟ ଦେ ତୁ । ତାର ମନେ ପଡ଼ିଗଲା ଅନେକ ଦିନ ଆଗରୁ ଶୁଣିଥିବା ଗୋଟିଏ ଗୀତ, ବାଉଲ୍‌ମାନେ * ଗାଉଥିଲେ, ଖୁଦୀରାମର

---

* 'ବାଉଲ୍' ପଶ୍ଚିମବଙ୍ଗଳାର ଏକପ୍ରକାର ଯୋଗୀ ଓ ଚାରଣ-କବି । ଏମାନେ ବୈରାଗ୍ୟର ଗୀତ ଗାଆନ୍ତି । ହାତରେ ଗୋପିଯନ୍ତ୍ର, ଦେହରେ ଗେରୁଆ ଲୁଗା ଓ ପଗଡ଼ି ଏମାନଙ୍କର ଭୂଷଣ । କେହି କେହି ସ୍ୱରଚିତ ରଚନା ମଧ୍ୟ ଗାନ କରନ୍ତି; ତେବେ ସାଧାରଣତଃ ଏମାନଙ୍କର ଗୀତମାନ ପାରମ୍ପରିକ ।

ଫାସିର ଗୀତ—

"ବିଦାୟ ଦେ ମା' ଫେରିଆସେଁ :"

ସେଇ ପ୍ରଥମ ପାଦଟି ନେଇ ତାହାର ପାଦପୂରଣ କରି-କରିକା ସେ ଫେରିଆସି ଚୁପ୍‌କରି ବସିଲା ।

"ବିଦାୟ ଦେ ମା' ଫେରିଆସେଁ
କହିଲେ କଥା ମା ବୁକୁ ଫାଟିଯାଏ ନୟନଜଳରେ ଭାସେ ।"

ସ୍ତବ୍ଧ ହୋଇ ସେ ବସିଥିଲା । ତାହାର ସେହି ସ୍ତବ୍ଧତା ଭାଙ୍ଗିଲା ରାଜନର କ୍ରୁଦ୍ଧ ଚିତ୍କାରରେ । ସେ ସଚକିତ ହୋଇଉଠିଲା । ରାଜା କାହାକୁ ଦୁର୍ଦ୍ଦଣ୍ଡ କ୍ରୋଧରେ ଧମକ ଦେଉଛି—ଚୁପ୍ ରହୋ !

ପର ମୁହୂର୍ତ୍ତରେଇ ସ୍ତ୍ରୀକଣ୍ଠର କର୍କଶ ଧ୍ୱନି ଧ୍ୱନିତ ହୋଇଉଠିଲା—ଗୁହା ଚିନି ଖେଳିସିବୁ ! କାହିଁକି ? କଣ ପାଇଁ ? ଲଜ ନାଇ, ସରମ ନାଇ ବେହିଆ, ନିଆଁ ଲଗା ରଇଜଲା ।

ଆଉ ପାଟି ଶୁଭିଲା ନାହିଁ, ଶୁଭିଲା ଗୁମ୍‌ଗାମ୍ ଶବ୍ଦ, ଆଉ ସ୍ତ୍ରୀକଣ୍ଠର ଆର୍ତ୍ତ ଚିତ୍କାର । ରାଜା ନୀରବରେ ସ୍ତ୍ରୀକୁ ପ୍ରହାର କରୁଅଛି, ରାଜାର ସ୍ତ୍ରୀ ତାର ସ୍ୱରରେ କାନ୍ଦୁଅଛି । ନିତାଇ ଛି-ଛି କରି ନିଜକୁ ଧିକ୍‌କାରିଲା । ନାଃ, ଏଇ ଗୁହା-ପର୍ବଟା ବନ୍ଦ କରିଦେବାକୁ ହେବ ।

—ଓସ୍ତାଦ୍ ! ଓସ୍ତାଦ୍ ! ସ୍ତ୍ରୀକୁ ପ୍ରହାର କରିସାରି ସେହି ଦଣ୍ଡକରେଇ ରାଜା ଆସି ଘରେ ପଶିଲା । —ବନାଓ ଗୁହା ! —ପନରହ-ସୋଲହ ଆଦମୀ କେ ମାଫିକ୍ । ପ୍ରାୟ ପାଏ ହବ ଗୁହା, ଅଧସେର ଭଳି ଚିନି ସେ ଯୋଗଇଲା । ରାଜାର ସ୍ତ୍ରୀର ଦୋଷ କଣ ? ଏତେବଡ଼ ଅପବ୍ୟୟ କେହି ସହିବ ନା କଣ ? ଆଉ ଏତେ ଗୁହା ଚିନି ବା ହବ କଣ ?

ନିତାଇ ଗମ୍ଭୀର ଭାବରେ କହିଲା—ରାଜନ !

ରାଜନ ନିତାଇ କଥାରେ କାନ ଦେଲା ନାହିଁ, ସେ ବସାରୁ ବାହାରି ଗଲିଗଲା, ଦୁଆର ଆଗରେ ଠିଆହୋଇ ଡାକିଲା—ହୋ ' ଭଦ୍ର ଲୋକ ହୋ ! ହାଁ-ହାଁ ହସୁଁ ଚଲେ ଆଓ । ଚଲେ ଆଓ ସବ୍ ଲୋଗ୍, ଚଲେ ଆଓ ।

ନିତାଇ ବିସ୍ମିତ ହୋଇ ଉଠିଆସିଲା ।

ମାଇପି ମିଶିପ ମିଶେଇ ଦଳଟିଏ ଆସୁଛି । ଢୋଲ, ଟିଣ ଢୋଲଙ୍ଗ, କାଠବାକ୍ସ,

ଗଣୁ ଲି, ଆସବାବପତ୍ର ଢେର । ସ୍ତ୍ରୀଅଗୁଡ଼ାଙ୍କର ବେଶଭୂଷା ବିଚିତ୍ର, ପୁରୁଷଗୁଡ଼ାଙ୍କର ବି ଗୋଟାଏ ବିଶିଷ୍ଟ ଛପାମାରା ଚେହେରା । ଏ ଛପାଟାକୁ ନିତାଇ ଚିହ୍ନେ ।

—ରୁ ଦିଅ ଭାଇ, ମଲରାଇ, ମା'ଗୁଣ ! କଥାଟା ଯେ କହିଲା, ସେ ଥିଲା ଦଳର ସମସ୍ତଙ୍କ ପଛରେ । ଦଳଟି ଠିଆହେବା ମାତ୍ରେ ସେ ଆସି ସମସ୍ତଙ୍କ ସାମନାରେ ଠିଆ-ହେଲା । ଗୋଟିଏ ଦୀର୍ଘ, କୃଶାଙ୍ଗୀ, ଗୋରା ସ୍ତ୍ରୀଅ । ଅଭୁତ ଦୁଇଟି ଆଖି । ବଡ଼ ବଡ଼ ଆଖି ଦି'ଟି ଯେମିତି ଛୁରୀର ଧାର—ସେଇ ଶାଣିତ ଦୀପ୍ତି ଭିତରେ କଳା ତୋ'ଳା ଦୁଇଟା କୌତୁକରେ ଅହରହ ଚଞ୍ଚଳ । ବୈଶାଖର ମଧ୍ୟାହ୍ନର ଖରାରେ ଯେପରି ନାଚି ନାଚି ବୁଲୁଛନ୍ତି ମଧୁପ୍ରମତ୍ତ ଦୁଇଟା କଳା ପତଙ୍ଗ—ମରଣଜୟୀ ଦୁଇଟା କଳା ଭ୍ରମର ।

ରାଜନର ମୁହଁକୁ ଚାହିଁ ସ୍ତ୍ରୀଅଟା ପୁଣି କହିଲା—କଉ, କୁଆଡ଼େ ଗଲେ ତମର ଓସ୍ତାଦ୍ ନା ଫୋସ୍ତାଦ୍ ?

ରାଜନ ନିତାଇକୁ ଦେଖାଇ ଦେଇ କହିଲା—ଓହି ହମାରା ଓସ୍ତାଦ୍ ।

ନିତାଇ ଅବାକ୍ ହୋଇଯାଇଥିଲା, ଦେଖିବାମାତ୍ରେ ସେ ଏମାନଙ୍କର ସବୁ ପରିଚୟ ପାଇଯାଇଛୁ—ଝୁମୁରଆଦଳ । କିନ୍ତୁ ଏମାନେ ଆସିଲେ କୁଆଡ଼ୁ ? ସେ କଥା ଆଉ ନିତାଇକୁ ପଚାରିବାକୁ ହେଲା ନାହିଁ । ରାଜା ନିଜେଇ କହିଲା—

—ଟ୍ରେନ୍ ସେ ଜୋର୍-ଜବରନ ଉତାର ଲିଆ । ହିୟାଁ ଗାହ୍ନା ହୋଗା ଆଜ । ତୁମ୍‌କୋ ଭି ଗାହ୍ନା କରନା ହୋଗା ଓସ୍ତାଦ୍ !

ସ୍ତ୍ରୀଅଟା ମୁହଁ ମୋଡ଼ି କହିଉଠିଲା—ହେ ଭଗବାନ, ଏଇ ତୁମର ଓସ୍ତାଦ୍ ନା କଣ ? ମୋ-ବୋଉ-ଲୋ-ଓ ! କହିଦେଇ ସେ ଖିଲ୍‌ଖିଲ୍ କରି ହସିଉଠିଲା; ସେ ହସର ଆବେଗରେ ତାହାର ଦୀର୍ଘ କ୍ଷୀଣ ତନୁ ଥରଥର କରି ଥରିବାକୁ ଲାଗିଲା । ସ୍ତ୍ରୀଅଟା ଖାଲି ମୁହଁରେ ହସେନା, ସର୍ବାଙ୍ଗଦେଇ ହସେ । ଆଉ ସେ ହସର କିମିତି ଧାର ! ମଣିଷର ମନର ମନକୁ କାଟି ଟିକି-ଟିକି କରି ଧୂଳିରେ ଫୋପାଡ଼ି ଉଡ଼ାଇଦିଏ ।

# ଦଶ

ସନ୍ଧ୍ୟାବେଳେ ରାଜା ବେଶ୍ ସମାରୋହ କରି ଆସର ଜମାଇଲା । ରାଜା ପରିଶ୍ରମ କଲା ସେନାପତି ଭଳି; ବିପ୍ରପଦ ବସିଥାଏ ରାଜାପରି ! ବିଚରା ବାତବ୍ୟାଧିରେ ଅଚଳ ଦେହ ଘେନି ହଲଚଲ ହୋଇପାରେନା, କେବଳ ଚିତ୍କାର କରି ସେ ହୋ-ହା ଲଗେଇ ଦେଲା । ଅବଶ୍ୟ କାମ ବି ବେଶ୍ କିଛି ହେଲା ! ତେଜରାତି ଦୋକାନୀ, କୋଇଲାବାଲା ବିପ୍ରପଦର ବ୍ୟଙ୍ଗ ଶ୍ଳେଷ ଭୟରେ ସତରଞ୍ଜି କାଢ଼ି ଦେଲେ; ବଣିକ-ମାତୁଳ ତାହାର ପେଟ୍ରୋମାକ୍ସ ଆଲୁଅଟା ଆଣି ନିଜେ ନିଜେ ତେଲ ଭର୍ତ୍ତିକରି ଲଗେଇ ଦେଲା ! ଲୋକ ବି ମନ୍ଦ ହେଲେନି, ବେଶ୍ ଜମିଲେ । ସମ୍ଭ୍ରାନ୍ତ ଭଦ୍ରବ୍ୟକ୍ତିମାନେ କେହି ନ ଆସିଲେ ବି ଦୋକାନୀଶ୍ରେଣୀର ଲୋକମାନେଇ ହଂସ-ଶ୍ରୋତା ଭଳି ଯଥାସାଧ୍ୟ ଭେସପଟା ପିନ୍ଧି ଜମେଇକରି ବସିଗଲେ । ନିମ୍ନଶ୍ରେଣୀର ଲୋକମାନେ ଭିଡ଼୍ ଜମେଇକରି ଚାରିକଡ଼େ ଘେରି ଠିଆହେଲେ । ମଝିରେ ଝୁମର୍ ଗୀତର ଆସର ପଡ଼ିଗଲା ! ନିତାଇ ପ୍ରତ୍ୟାଶା କରିଥିଲା, ସେମାନଙ୍କ ଦଳର କବିୟାଲ ସଙ୍ଗରେ ହାତେ ଲଢ଼ିହିବ ଅର୍ଥାତ୍ ଗାଉଣା ପ୍ରତିଯୋଗିତା କରିବ । ଅନେକ ଝୁମରିଆଦଳ ସାଙ୍ଗରେ ଜଣେ ଜଣେ ନିମ୍ନଶ୍ରେଣୀର କବିୟାଲ ଆନ୍ତି । ସ୍ୱତନ୍ତ୍ରଭାବେ ଗାଉଣା କରିବାର ଯୋଗ୍ୟତା ନଥିବାରୁ ସେଇ ଝୁମରିଆଦଳକୁ ଆଶ୍ରା କରି ଥାଆନ୍ତି ସେମାନେ । ବାଟରେ କେଉଁ ଗ୍ରାମରେ ବା ମେଳାରେ ଏପରି ଝୁମରିଆଦଳର ଦେଖାପାଇଗଲେ ସେମାନେ ପାଲା ଲଗେଇ ଦିଅନ୍ତି । ମେଳାରେ ଝୁମର ସହିତ କବିଗାଉଣାର ଆସର ମିଶିଲେ ଆସର ଜମଜମାଟ ହୁଏ । ଏ ଦଳଭିତରେ ବି ଏମିତି ଜଣେ କବିୟାଲ ରହିଛି; କିନ୍ତୁ ସେ ଆଜି ଦଳ ସାଙ୍ଗରେ ଆସିନାହିଁ, କାମ ଥିବାରୁ ପଛରେ ପଡ଼ିରହିଛି । ଦଳଟାର ଗନ୍ତବ୍ୟସ୍ଥାନ ଆଲେପୁର ମେଳଣ । ଦି'ଦିନ ପରେ ସେଠି ଯାଇ ଜୁଟିବାର କଥା ଅଛି । ତା ନହେଲେ ନିତାଇ ଗୋଟାଏ ଆସର ପାଇଯାଇଥାନ୍ତା । କବିୟାଲ ନଥିବାରୁ ଆସର ବସିଲା ଖାଲି ନାଚ-ଗୀତର । ଢୋଲ, ଡୁବି ତବଲା, ହାର୍ମୋନିୟମ, ଗୋଟାଏ ବେହେଲା—ଏତିକ ନେଇ ଝୁମରିଆଦଳର ପୁରୁଷମାନେ ଆସର ଜମେଇ ବସିଲେ । ସେମାନଙ୍କର ତେଲ ସରସର ବାଳରେ କାସୁନ୍ଦର ଟେଶ୍ରୀ, ଦେହରେ ରଙ୍ଗଚଙ୍ଗିଆ ଛିଟର ମଇଳା ଜାମା । ଝିଅମାନଙ୍କ ଦେହରେ ଗିଲଟ୍‌ର ଗହଣା—କାନଫୁଲ, ହାର, ତାଗା, ଚୁଡ଼ି, ବାଲା ପିନ୍ଧିଛନ୍ତି । ଶସ୍ତା କନାର ବଗିଚ ଫ୍ୟାସନର ବଡ଼ିସ୍, ରଙ୍ଗିନ୍ ଲୁଗା, କେଶବିନ୍ୟାସର ପରିପାଟିରେ ଆଧୁନିକତା ଅନୁକରଣର ବ୍ୟର୍ଥ ଅପକୃଷ୍ଟ ଭଙ୍ଗି । ଓଠ ଗାଲରେ ନାଲି ରଙ୍ଗ, ତାହା

ଦଳଟି ଘରକୁ ପଶି ଅଗଣାରେ ଠିଆହୋଇ କହିଲା—ବାଃ । ଗଛମୂଳେ ସ୍ୱସ୍ତା-କଡ଼ରେ ଆସ୍ତାନା ଜମେଇ ଯେଉଁମାନେ ଅନାୟାସରେ ଦିନସ୍ୱର କଟାଇ ଦିଅନ୍ତି, ଏପରି ପକା ଅଗଣା ଓ ପିଣ୍ଡା ପାଇ ସେମାନଙ୍କର କୃତାର୍ଥ ହେବା ସ୍ୱାଭାବିକ—କୃତାର୍ଥ ହିଁ ହୋଇଗଲେ ସେମାନେ । ଖୁସି ହୋଇ ତାଲପତ୍ର ଚଟେଇ ବଛେଇବାକୁ ଆରମ୍ଭ କରିଦେଲେ । ଦୀର୍ଘ ତନୁପାତଳୀ ମୁଖରା ଝିଅଟି କେବଳ ସିମେଣ୍ଟ ବାରଣ୍ଡା ଉପରେ ଯାଇ ସିଧାସଳଖ ପେଟମାଡ଼ି ଶୋଇପଡ଼ିଲା, ଥଣ୍ଡା ଚଟାଣ ଉପରେ ମୁହଁଟି ରଖି ଶୀତଳ ସ୍ପର୍ଶ ଅନୁଭବ କରି କହିଲା—ଆଃ ! ତାହାର ସେହି କଣ୍ଠସ୍ୱରରେ ଅସୀମ କ୍ଲାନ୍ତି ଓ ଗଭୀର ହତାଶାର କାରୁଣ୍ୟ । ସେ ଯେମିତି ଆଉ ପାରୁନାହିଁ ।

—ବସନ ! ମାଇପିଙ୍କ ଭିତରେ ଜଣେ ପ୍ରୌଢ଼ା ରହିଛି, ଦଳର ମାଲିକାଣୀ; ସେଇ କହିଉଠିଲା—ବସନ, ଜରଦିହରେ ଥଣ୍ଡା ଚଟାଣଟା ଉପରେ ଶୋଇଲୁ କାହିଁକି ? ଉଠ୍, ଉଠ୍ ।

ଝିଅଟିର ନାମ ବସନ୍ତ । ବସନ୍ତ ସେ କଥାର ଉତ୍ତର ଦେଲାନାହିଁ, କଣ୍ଠସ୍ୱର ଟିକିଏ ଉଚ୍ଚକରି କହିଲା—ହଇହୋ, ଓସ୍ତାଦ୍ ନା ଫୋସ୍ତାଦ୍ ! ଗୁହା ଆଣ ଭାଇ !

ନତାଇ ସେତେବେଳକୁ ଗୁହା ଲାଗି ପାଣି ବସେଇ ଦେଇଛି । ସେ କହିଲା—ଏଇ ଆଉ ପାଞ୍ଚ ମିନଟ୍ । କିନ୍ତୁ ତମର ଜର ହେଇଛି—ତମେ ଥଣ୍ଡା ଚଟାଣଟା ଉପରେ ଶୋଇଲ କାହିଁକି ? କିଛି ଗୋଟାଏ ପାରିଦେବ ? ସନ୍ତପ ?

ବସନ୍ତ ଆଖି ଫିଟାଇଲା ନାହିଁ, ଆଖି ବୁଜିକରି ହିଁ ଖିଲିଖିଲି କରି ହସିଉଠିଲା, କହିଲା—ଆଲୋ, ନାଗର ମୋର ପୀରିତିରେ ପଡ଼ିଛି । ନାଗର ଖାଲି ନାଗର ନୁହେଁ, ବାଟର ନାଗର, ଦେଖିବାମାତ୍ରେ ପ୍ରେମ ! ଦରଦ କେମିତି ଉଛୁଳୁଛି ମ । ସଙ୍ଗେ ସଙ୍ଗେ ତାହାର ତରୁଣୀ ସଙ୍ଗିନୀଦଳ ବି ଖିଲିଖିଲି କରି ହସିଉଠିଲେ ।

ଠାକୁରଙ୍କର ସେହି ନୂଆ ମଗଟିରେ ଗୁହା ଢାଳି ନତାଇ ସେହି ମଗଟି ବସନ୍ତର ମୁହଁ ସାମନାରେ ଥୋଇଦେଇ କହିଲା—ବୁଝି ଖାଇବ ହଁ, ଗୁହା ସାଙ୍ଗରେ ଯୋଗ-ବଶର ରସ ଦେଇଛି । କବିୟାଲ ନତାଇ ରସର ବେପାରୀ; ରସିକତାର ଏପରି ଦାଉଁଆ ପ୍ରତିଦ୍ୱନ୍ଦ୍ୱିତାର ପାତ୍ର ପାଇ ସେ ମୁହୂର୍ତ୍ତିକ ପାଇଁ ମାତିଉଠିଲା ।

ଗୁହା-ବାସନା ପାଇ ଓ ଷ୍ଟିଲ୍ ମଗର ଶବ୍ଦ ଶୁଣି ତୃଷାର୍ତ୍ତ ଭଳି ଆଗ୍ରହରେ ବସନ୍ତ ଇତିମଧ୍ୟରେ ହିଁ ଉଠିବସିଲା । ସେ ମୁହଁ ବଙ୍କେଇ ହସି ନତାଇର ମୁହଁ ଆଡ଼କୁ ବଡ଼ ବଡ଼ ଆଖି ଦୁଇଟି ତରାଟି କହିଲା—କଣ ହେଲା ନାଗର ! ପୀରିତିରେ ଅଣ୍ଟିଲାନ, ଶେଷକୁ ଯୋଗବଶ !

ଆଉ ସମସ୍ତଙ୍କୁ ଗୁହା ପରିବେଷଣ କରୁ କରୁ ନତାଇ ଗୀତ ଗୁଣ୍ଡିଦେଲା—

"ପ୍ରେମଡୋର ଦେଇ ବାନ୍ଧ ଯେ ନ ପାରେ ହାୟ
ଚନ୍ଦ୍ରାବଳୀର ସିନ୍ଦୂର ଶ୍ୟାମର ମୁଖଚନ୍ଦ୍ରେ
ଆଉ କି ଉପାୟ ବୃନ୍ଦେ—ଏଥର ଆଣିଦେ ଆଣିଦେ
ବଶୀକରଣ ଲତା ବାନ୍ଧିବ ଛନ୍ଦେ ଛନ୍ଦେ ।"

ଗୀତଟା କିନ୍ତୁ ନିତାଇର ବନ୍ଧା ନୁହେଁ, ନିତାଇର ଆଦର୍ଶ କବିୟାଲ ତାରଣ ମଣ୍ଡଳର ବନ୍ଧା ଗୀତ; ନିତାଇର ମୁଖସ୍ଥ ଥିଲା ।

ଝୁମରଆଦଲର ଝିଅ, ସମାଜର ଅତି ନିମ୍ନସ୍ତରରୁ ଏମାନଙ୍କର ଉଦ୍ଭବ । ଅକ୍ଷରଜ୍ଞାନ କୌଣସି ଶିକ୍ଷାଇ ନାହିଁ; କିନ୍ତୁ ସଙ୍ଗୀତ-ବ୍ୟବସାୟିନୀ ହିସାବରେ ଗୋଟାଏ ଅଦ୍ଭୁତ ସଂସ୍କୃତି ଏମାନଙ୍କର ରହିଛି । ପାଲଗୀତ ଭିତରଦେଇ ଏମାନେ ପୁରାଣ ଜାଣନ୍ତି, ପୌରାଣିକ କାହାଣୀର ଉପମା ଦେଇ ବ୍ୟଙ୍ଗ ଶ୍ଳେଷ କଲେ ବୁଝିପାରନ୍ତି, ପ୍ରଶଂସା ସହାନୁଭୂତି ମଧ୍ୟ ଉପଲବ୍ଧି କରନ୍ତି । ନିତାଇର ଗୀତର ଅର୍ଥ ବସନ୍ତ ବୁଝିପାରିଲା, ତାହାର ଆଖି ଦୁଇଟା ଏକକାରେ ଶାଣିତ କ୍ଷୁର ଭଳି ଚକ୍‌ମକ୍ କରିଉଠିଲା; କିନ୍ତୁ ପର ମୁହୂର୍ତ୍ତିରେଇ ମୁହଁ ପୋଡ଼ି ଗୁହା କପଡ଼ରେ ଯୋଡ଼ିକା ଦେଲା ।

ପୁରୁଷଦଳରୁ ଜଣେ କହିଲା—ଖାସା । ଓସ୍ତାଦ୍, ଖାସା !

ଆଉ ଜଣେ ଏକମତ ହେଲା—ହଁ, ଓସ୍ତାଦ୍ ଭଲ କହିଲ ।

—ହଁ । ଭ୍ରୂକୁଞ୍ଚିତ କରି ଅନ୍ୟ ଗୋଟିଏ ଝିଅ କହିଲା—ହଁ, ଶୁଆ ପଢ଼େ ଭଲ । ନିତାଇ ଗୀତର ଅନ୍ତର୍ନିହିତ ବ୍ୟଙ୍ଗ ଏକା ବସନ୍ତ ନୁହେଁ, ସବୁ ଝିଅଙ୍କ ଦେହରେ ଲାଗିଥିଲା । ସଙ୍ଗେ ସଙ୍ଗେ ବସନ୍ତ ପୁଣି କହିଉଠିଲା—"ଚୂଲରୁ ଝଡ଼ା କଳା କୋଇଲା—ନିଆ ତହିଁରେ ଧକଧକ !" ଚାଁ ଲାଗିଗଲା !

ନିତାଇ ହସିକରି କହିଲା—ନା ଭାଇ, ତୁମକୁ ଚାଁ କିଏ ଦେଇପାରେ ! ଆଉ ତୁମ ସାଥିରେ ମୋର କେବେ ପୀରତି ହବ ନା ହେଇପାରେ ! ତୁମେ ଫୁଟାଫୁଲ, ମୁଁ ଧୂଳି । ଫୁଲର ବାଟରେ ନାଗର ତ ଧୂଳି ।—କହି କହି ସେ ଗୁଣୁଗୁଣୁ କରି ଆରମ୍ଭ କଲା—

"ଫୁଲର ଧୂଳିର ପ୍ରେମ ହୁଏନା ଗୋ ଫୁଲ ଫୁଟିବାର ବେଳେ
ଫୁଲ ଫୁଟେ ଚାହିଁ ଆକାଶମୁହାଁ ଚାନ୍ଦର ପ୍ରେମେ ଦୋଳଖେଳେ ।
ଧୂଳିଟି ଥାଏ ମାଟି ଉପରେ ଚରଣତଳେ ଅଧୋମୁଖେ
ମଉଳିଲେ ଫୁଲ ନିଏ ଛାତିରେ ସେଇ ଲେଖା ତାର ପୋଡ଼ାକପାଳେ ।"

—କୁହ, ଠିକ୍ କି ନା ?

ବସନ୍ତ ବିସ୍ଫାରିତ ଦୃଷ୍ଟିରେ ତାହା ଆଡ଼କୁ ଚାହିଁରହିଲା । ଲୋକଟା କିଏ ?

ପ୍ରୌଢ଼ା ସ୍ତ୍ରୀଲୋକଟି ବିଦ୍ରୂପର ଭଳି ସ୍ମିତହାସ୍ୟ କରି କହିଲା—ହଉ, ତମମାନଙ୍କର ତ ହାର୍ ହେଲା ମା'ମାନେ ! ଜବାବ ତମେମାନେ ଦେଇପାରିଲନି । ଆଚ୍ଛା ବାପଧନ, କିଏ ଏସବୁ ଗୀତ ମୁହେଁ ମୁହେଁ ବାନ୍ଧିକରି ସୁର ଧରି ଗାଉଛ ?

ନିତାଇ ସବିନୟରେ କହିଲା—ଏଇ ଟିକେ ଅଧେ ଚେଷ୍ଟା କରିଥାଏ । ଓ ସ୍ତ୍ରୀଟା ସଙ୍ଗରେ କବିଗାନ ବି କରିଛି । ଗୀତଟା ମୁଁ ବାନ୍ଧିଛି ତା ଠିକ୍ ।

ପ୍ରୌଢ଼ା କହିଲା—ପଦଟି ତ ବେଶ୍ ଭଲ ବାପା !

ନିତାଇ ହାତଯୋଡ଼ି କରି କପାଳରେ ଛୁଇଁ କହିଲା—ତାଙ୍କର ଦୟା ।

ବସନ୍ତ କିଛି କହିଲା ନାହିଁ, ଗ୍ଲାସ ଟିକକ ନିଃଶେଷରେ ପାନ କରି ମଗଟା ତଳେ ଥୋଇ ସେ ପୁଣି ଚଟାଣରେ ଲେଟିପଡ଼ିଲା । ରାଜା ସେହି ମୁହୂର୍ତ୍ତରେ ଘରେ ପଶିଲା । ତା'ର ଦୁଇ ହାତରେ ହାଣ୍ଡି-କୁଣ୍ଡେଇ, କାଖରେ ଶାଳପତ୍ରର ବୋଝ । ମିଲିଟାରୀ ରାଜା —ହୁକୁମ୍ ଦେଲାପରି ବ୍ୟବସ୍ଥା ଜଣାଇଦେଲା—ଭଇୟା ଲୋଗ୍, ଓହି ବରମୁଲା ମେ ଜାଗା ସାଫ୍ ହୋ ଗୟୀ, ଅବ୍ ଖାନା-ଓ୍ୱାନା ପକା ଲୀଜିୟେ ।

ବେଳ ଉଣ୍ଡି ରାଜାକୁ ଏକୁଟିଆ ପାଇ ନିତାଇ ଆସ୍ତେ ଆସ୍ତେ ପଚାରିଲା—ରାଜନ, ଏଇ ଏତେ ଖର୍ଚ୍ଚବାର୍ଚ୍ଚ କରୁଛ—

ରାଜାର ସମୟ ଅତ୍ୟନ୍ତ କମ୍ ଏବଂ ସଂସାରରେ ଗୋପନ କରିବାର ବି କିଛି ନାହିଁ । ସେ ବାଧା ଦେଇ ସ୍ୱାଭାବିକ ଉଚ୍ଚକଣ୍ଠରେଇ କହିଲା—ସବ୍ ଠିକ୍ ହାୟ ଭାଇ, ସବ୍ ଠିକ୍ । ବନିୟା-ମାମା ଆଠ ଆନା ଦିୟା, କୋୟଲାବାଲା ଚାର ଆନା, ତେଜରାତିବାଲା ଆଠ ଆନା, ମାଷ୍ଟରବାବୁ ଆଠ ଆନା, ଗୋଦାମ୍‌ବାବୁ ଆଠ ଆନା, ଗାର୍ଡବାବୁ ଆଠ ଆନା, ମାଲଗାଡ଼ିକେ 'ଡେରାଇବାର' ଆଠ ଆନା, ହମାରା ଏକ୍ ରୁପେୟା; ବାସ, ଯୋଡ୍ ଲେଓ । ତୁମାରା ଏକ୍ ରୁପେୟା—ଉ ଲୋଗ କେ ଆଢ଼ାଇ ରୁପେୟା, ବାର ଆନେକା ଦାଲ ଚାଉଲ୍ । ବାସ୍ , ହୋ ଗିୟା ।

ସାଙ୍ଗେ ସାଙ୍ଗେ ସେ ବାହାରିଗଲା, ତେଣେ ସଣ୍ଟିଂ ଲାଇନ୍‌ରୁ ଗୋଟିଏ ଗାଡ଼ି କୁଲି-ମାନେ ଠେଲିକରି ପ୍ରାୟ ପଏଣ୍ଟ ଯାକେ ଆଣି ସାରିଲେଣି ।

ନିତାଇ ଗଛମୂଳେ ଆସି ଠିଆହେଲା । ଭ୍ରାମ୍ୟମାଣ ସମ୍ପ୍ରଦାୟଟି ଇତ୍ୟବସରରେ ଅତ୍ୟନ୍ତ କ୍ଷିପ୍ର ନିପୁଣତା ସହିତ ଗଛମୂଳେ ଘରକରଣା ବସାଇ ସାରିଛି; ଚୁଲି ପକାଇ ତହିଁରେ

ନଆଁ ଦେଲେ, ଝିଅଟିଏ ପାଣି ଆଣିଲା, ଜଣେ ପରିବା କାଟିବାକୁ ବସିଗଲା, ;ପ୍ରୌଢ଼ା ଚୂଲିମୁଣ୍ଡେ ବସି ମାଟି ହାଣ୍ଡି ଧୋଇପକାଇ ବସାଇଦେଲା କିଛି ସମୟ ଭିତରେଇ । ପୁରୁଷମାନେ ତେଲ ଲଗାଇବାକୁ ବସିଗଲେ; ଝିଅମାନଙ୍କର ଗାଧୁଆ ସେତେବେଳକୁ ସରିଲଣି, ସମସ୍ତଙ୍କର ଓଦା ଖୋଲା ବାଳ ପିଠିରେ ପଡ଼ିଅଛି, ତଳଆଡ଼କୁ ଗୋଟିଏ ଲେଖାଏଁ ଗଣ୍ଠି ବନ୍ଧା ହୋଇଛି । ସେଠି ଆଖପାଖରେ ନାହିଁ କେବଳ ସେହି କୃଶତନୁ ଗୌରାଙ୍ଗୀ କ୍ଷୁରଧାର ଝିଅଟି । ନିତାଇକୁ ଡାକି ପ୍ରୌଢ଼ା ତାହାକୁ ସାଦର ସମ୍ଭାଷଣ କରି କହିଲା—ବସ ବାପା, ବସ ।

ପୁରୁଷ କେତେଜଣ ପ୍ରାୟ ସମସ୍ୱରରେ କହିଉଠିଲେ—ଆରେ ସତେ ତ, ଆପଣ ଠିଆଟା ହୋଇଛନ୍ତି କିଆଁ ? ବସିବା ହଉ !

ଚୂଲିରେ ଖଣ୍ଡିଏ କାଠ ପୂରାଇ ଦେଇ ପ୍ରୌଢ଼ା କହିଲା—ଖାସା ଗଲା ମୋ ବାପାର । ତାପରେ ମୁହଁକୁ ଗୃହିଁ ସ୍ମିତ ହସ ହସି କହିଲା—ଏଇ ନାଇନ୍‌ରେଇଂ ରହିବ ବାବା ? ନା, କାମଦାମ ବି କରିବ—ସ୍ନେ ବି କରିବ ?

—ଏଇ ଲାଇନ୍‌ରେଇ ରହିବାର ତ ଇଚ୍ଛା ଅଛି; ଦେଖାଯାଉ କଣ ହଉଚି ।

—ବାହା-ସା' ହେଇଛ ? ଘରେ କିଏ ସବୁ ?

—ବାହା ! ନିତାଇ ହସିଲା, କହିଲା—ଘରେ ମା ଅଛି, ଭୌଣୀ ଅଛି; ମା' ଭୌଣୀ ପାଖରେଇ ଥାଏ । ମୁଁ ଏକା ।

—ତାହେଲେ ଆମ ଦଳକୁ ଆସୁନ କାହିଁକି !

ନିତାଇ କିନ୍ତୁ ଏ କଥାର ଉତ୍ତରଟା ଚଟ୍ କରି ଦେଇ ପାରିଲାନି । ସମ୍ମତି ଦେବାକୁ ଯାଇ ମନେପଡ଼ିଗଲା ରାଜା କଥା—ମନେ ପଡ଼ିଗଲା ଭୁରିଚମ୍ପାର ଶ୍ୟାମଳ ସରସ ଡାଙ୍ଗଟି ଭଳିଆ କୋମଳ ଶ୍ରୀମୟୀ ଭକ୍ତ ଝିଅଟି—ଠାକୁରଝୀ । ସେ ଚୁପ୍ କରି ହିଁ ରହିଲା ।

କିଛି ବେଳ ଅପେକ୍ଷା କରି ପ୍ରୌଢ଼ା ପୁଣି ପଚାରିଲା—କଣ କହୁଚ ବାପା ?

—ବାପା ତମର ଭାବୁଛି ମନର ମଣିଷ କଥା । ସଙ୍ଗେ ସଙ୍ଗେ ଖିଲଖିଲ ହସ । ନିତାଇ ପଛକୁ ବୁଲି ଦେଖିଲା, ଓଦା ଲୁଗାରେ ଠିଆହେଇଛି ସଦ୍ୟସ୍ନାତା ବସନ୍ତ । ଝିଅଟା ଗାଧେଇକରି ବାଳ କି ଦେହ ପୋଛିନାହିଁ, ବାଳ ବି ଝାଡ଼ି ନାହିଁ । ଓଦା ବାଳରୁ ସେତେବେଳଯାକେ ପାଣି ବୋହିପଡ଼ୁଛି । ନିତାଇ ଅବାକ୍ ହୋଇଗଲା !

—ସ୍ତ୍ରୀଟି କେମିତି ଅଛି ହେ ? ବଶୀକରଣ ଲତାରେ ଛନ୍ଦେ ଛନ୍ଦେ ବାନ୍ଧିଛ ବୋଧେ !

ନିତାଇ ଏତେବେଳେ ଯାଇ ସବିସ୍ମୟରେ କହିଲା—ଜର ଦେହରେ ତମେ ଗାଧେଇ ଥିଲ ?

—ଧୋଇହୋଇ ଅଇଲ୍ । ଚନ୍ଦ୍ରାବଳୀର ପ୍ରେମଜ୍ୱର କି ନା ! କହିଦେଇ ସେ ଖିଲ୍-ଖିଲ୍ କରି ହସରେ ଫାଟିପଡ଼ିଲା । ସଙ୍ଗେ ସଙ୍ଗେ ସିକ୍ତବସନର ସ୍ୱଚ୍ଛତାର ଆଢ଼ୁଆଳରେ ତାହାର ସୁପରିସ୍ଫୁଟ ସର୍ବାଙ୍ଗ ମଧ୍ୟ ହସି ଉଠିଲା । ନିତାଇକୁ ଲାଜ ଲାଗିଲା ।

ପ୍ରୌଢ଼ା କହିଲା—ସତେ ତ ! ଗାଧୋଇ ଅଇଲୁ ? ଛୁଡ଼ ଛୁଡ଼, ଓଦାଲୁଗା ପାଲଟି ଆ ବସନ । ତୁ କୋଉଦିନ ମରିଯିବୁ ଏଇମିତି କରି ।

ବଚିତ୍ର ହସି ବସନ୍ତ କହିଲା—ଫୋପାଡ଼ ଦେବ ଘୋଷାର କରି । ତା' ବୋଲି ନ ଗାଧୋଇ ରହି ନ ପାରେ ! ନ ଗାଧୋଇଲେ—ବୋଉଲୋ ! ଦିହରୁ କି ଗନ୍ଧ ଛୁଟେ !

ଗୋଟିଏ ତରୁଣୀ ମୁରୁକି ହସି କହିଲା—ବାଳ ଗୋଛାଏ ପାଇଛୁ ବୋଲି ଦେଖେଇ ହେବୁ, ସେଇଆ କହ !

ବସନ୍ତ ହାତ ଦେଇ ମୁଣ୍ଡବାଳରେ ଗୁପ ଦେଉ ଦେଉ କହିଲା—ମୋର ତ ଆଉ କେଶ ଦେଇ ନାଗରର ଗୋଡ଼ ପୋଛିବାକୁ ହୁଏନା, ବାଳ ନ ଦେଖେଇ କଣ କରିବ ?

ବହୁ-ପରିଚର୍ଯ୍ୟା ହିଁ ଏମାନଙ୍କର ବ୍ୟବସାୟ; କିନ୍ତୁ ନାଟଚରିତ୍ରର ସ୍ୱଭାବଧର୍ମରେ ଗୋଟିଏ ବିଶେଷ ଅବଲମ୍ବନ ବ୍ୟତୀତ ଏମାନେ ମଧ୍ୟ ରହି ପାରନ୍ତିନି; ସାଥୀ ପୁରୁଷମାନଙ୍କ ମଧ୍ୟରେ ହିଁ ଦଳର ପ୍ରତ୍ୟେକ ଝିଅର ପ୍ରେମାସ୍ପଦ ମଣିଷ ରହିଥାଏ । ସେଠି ମାନ-ଅଭିମାନ ଥାଏ ଆଉ ସାଧ୍ୟ-ସାଧନା ବି ଥାଏ । କିନ୍ତୁ ବସନ୍ତର ପ୍ରେମାସ୍ପଦ କେହି ନାହିଁ, ସେ କାହାରିକି ସହ୍ୟ କରିପାରେନା । କେହି ପତଙ୍ଗପରି ତା'ର ଶାଣିତ ଦୀପ୍ତିରେ ଆକୃଷ୍ଟ ହୋଇ ପାଖକୁ ଆସିଗଲେ ଝିଅଟାର କ୍ଷୁରଧାରରେ ତାହାର କେବଳ ପକ୍ଷଚ୍ଛେଦ ନାହିଁକି, ମର୍ମଚ୍ଛେଦ ବି ହୋଇଯାଏ । ସେଇଥିପାଇଁ ବସନ୍ତ ସଙ୍ଗିନୀକୁ ଏଭଳି କଥା କହିଲା । ଫଳରେ କଜିଆ ଗୋଟାଏ ହୋଇଉଠିବା ଭୟ । ଆହତ ଝିଅଟି ଫଣା ଉଠାଇ ରହିଥିଲା; କିନ୍ତୁ ଦଳର ନେତ୍ରୀ ପ୍ରୌଢ଼ା ମଝିରେ ପଡ଼ି କଥାଟା ବୁଲାଇ ଦେଲା । ହସି କହିଲା—ଆଲୋ ! ବସନ, ଶୁଣ୍ ଶୁଣ୍, ଦେଖ ଆମ ଓସ୍ତାଦକୁ ପସନ୍ଦ ହଉଚି କି ନାହିଁ !

ତାର କଥା ଶେଷ ହେଲାନି, ବସନ୍ତର ଉଚ୍ଚ ଉଚ୍ଛଳ ହସରେ ଲୁଟିଗଲା । ନିତାଇ ଝାଳନାଳ ହୋଇଗଲା । ପ୍ରୌଢ଼ା ଧମକ ଦେଇ କହିଲା—ମଲା ! ଏତେ ହସୁଚୁ କାହିଁକି ମ !

ହସ ବନ୍ଦ କରି ବସନ୍ତ କହିଲା—ମଲି ମୁଁ, ତୁ ନୁହେଁ ।

—କାହିଁକି ଲୋ ?

—ବୋଉ ଲୋ ! ସେଇଟା ବହୁ-ତ କଳା; ବୋଉ-ଲୋ !

ସମସ୍ତେ ହତବାକ୍ ହୋଇ ରହିଲେ ।

ବସନ୍ତ ପୁଣି କହିଲା—କଳା ଅଙ୍ଗର ପରଶ ଲାଗି ମୁଁ ମଧ୍ୟ କଳା ହୋଇଯିବି ମାଉସି ! ମୁହଁ ବଙ୍କେଇ ସେ ଟିକିଏ ହସିଲା, ତାପରେ ପୁଣି କହିଲା—ଯାଏଁ ଶୁଖିଲା ଲୁଗା ପିନ୍ଧି ଆସେଁ । 'ନମୁନି' ହେଲେ କିଏ ମୋର ସେବା କରିବ ବା ! ସେ ଦୋହଲି ଦୋହଲି ଚାଲିଗଲା ।

ଗୋଟିଏ ଝିଅ କହିଲା—ମରଣ ହଉନେଇ ତୋତେ, ଦେଖରେ ଦାଉଡ଼ି ଦଉନୁ !

ପ୍ରୌଢ଼ା ଧମକ ଦେଲା—ଚୁପ୍ କର ଲୋ ମା । କନ୍ଦଲ ଲଗାନା ।

ଝିଅଟି ବିଲ୍‌କୁଲ୍ ଚୁପ୍ ହେଲାନି, ମନକୁ ମନ ମୃଦୁସ୍ୱରରେ ବକର୍-ବକର କରିବାକୁ ଆରମ୍ଭ କଲା । ନିତାଇ ମନକୁ ମନ ମୁରୁକି ହସୁଥାଏ । ହସୁଥାଏ ସେଇ ଗୌର-ଗରବିଣୀର କାଣ୍ଡକାରଖାନା ଦେଖି । ଝିଅଟା ଭାବେ, ତାର ସେଇ ସୁନାଭଳି ବରଣର ଛଟାରେ ଦୁନିଆଁର ଆଖି ଝଲସିଯାଇଛି । ସମସ୍ତେ ତାକୁ ପାଇବାକୁ ଲାଳାୟିତ । ହାୟ ! ହାୟ ! ହାୟ !

ପ୍ରୌଢ଼ା ପୁଣି କଥାଟା ପକେଇଲା—ଆରେ, ଏ ପୁଅ ଶୁଣୁଛ !

—ମତେ କହୁଛନ୍ତି ?

—ହଁ । ପୁଅ ତ, କହିବି ତତେ । ଆଉମାନେ କହନ୍ତି ଓସ୍ତାଦ୍ । ରାଗିବୁନି ତ ବାପା ?

—ନାଇଁ ନାଇଁ । ରାଗିବି କାହିଁକି ! ମାଉସୀର ଏ କଥାଟି ତାକୁ ବଡ଼ ଭଲ ଲାଗିଲା ।

— କଣ କହୁଚ ? ଏଇ 'ନାଇନରେ' ଛନ୍ଦି ରହିବୁ, ତାହେଲେ ଆ ଆମ ସାଙ୍ଗରେ ।

—ନା । ନିତାଇର କଣ୍ଠସ୍ୱର ଦୃଢ଼ ।

ସମସ୍ତେ ଚୁପ୍ କରି ରହିଲେ । ନିତାଇ ଉଠିଲା,—ତା ହେଲେ ମୁଁ ଏଇଲା ଯାଉଛି । ମୋର ବି ରନ୍ଧାବଢ଼ା କରିବାକୁ ଅଛି ।

—ଆହେ କୋଇଲ-ମାଣିକ ! ବସନ୍ତର କଣ୍ଠସ୍ୱର । ନିତାଇ ବୁଲି ଚାହିଁଲା । ଏହାର ଭିତରେ ବସନ୍ତ ସଜେଇ ବାଳ କୁଣ୍ଡେଇଛି । ସଜେଇବାଭଳି ବାଳ ବି ଅଛି ଝିଅଟିର । ପିଠିଏ ଦୀର୍ଘ ଘନ କଳା ବାଳ । କପାଳରେ ସିନ୍ଦୂର ଟିପା, ପିନ୍ଧିଛି ଟହଟହ ଲାଲ ନକ୍‌ସି ପାହାଡ଼ୀ ମିଲ୍ ଶାଢ଼ୀ ।

ବସନ୍ତ ହସି କହିଲା—ତମର ନାଁ ଦେଇଚ ଭାଇ କୋଇଲା-ମାଣିକ । କଳାମାଣିକ ତ ଆଉ ଡାକି ପାରିବନି । ସେ ହାତଯୋଡ଼ି କଳାମାଣିକକୁ ପ୍ରଣାମ କଲା ।

ନିତାଇ ହସି କହିଲା—ବେଶ୍ ବେଶ୍ ! ଭଲ କଥା ! ମଇଲା-ମାଣିକ ବି କହିପାର ।

—ସେ ସେଇ କୋଇଲାରେଇ ଅଛି । ବସନ୍ତ ମୁହଁ ବଙ୍କେଇ ହସିଲା ।

ନିତାଇ କହିଲା—ସେଇଟା ଅଛି; କିନ୍ତୁ 'ମ'ରେ 'ମ'ର ଯଡ଼ଟା ପଡ଼ୁନାହିଁ । ସେଥିରେ କଥାଟା ମିଠା ହୁଅନ୍ତା । ଗୀତଲେଖି ଜାଣ ଅଛି; ବୋଲି କହୁଛି । କାଲି ହେଲେ କହି

ନଥାନ୍ତ । କ୍ରିହ କଣ କହୁଚ ?

—ମୋର ଗୋଟାଏ କାମ କରିଦେବ ?

—କଣ, କୁହ ?

—ଗୃଶପଇସାର ମାଛ ଆଣିଦେବ ? ମୋର ଫେର୍ ମାଛ ନହେଲେ ରୁଚେନା । ଆଣିଦେବ ?

—ହଁଅ । ନିତାଇ ହାତ ପାତିଲା । କିନ୍ତୁ ବସନ୍ତ ପଇସା ଦେବାକୁ ହାତ ବଢ଼ାଇବା-ମାତ୍ରେ ସେ ନିଜର ହାତଟି ଅଳ୍ପ ଘୁଞ୍ଚାଇ ନେଲା, କହିଲା — ହସିଆର, ଟିକେ ଦୂରରୁ ।

— କାହିଁ ? ଗାଧୋଇବାକୁ ହବ ନା କଣ ? ଝିଅଟାର ଓଠର କୋଣ ଦୁ'ଟା ଯେମିତ ଗୁଣଦିଆ ଧନୁ ଭଳି ବଙ୍କେଇଗଲା ।

ନିତାଇ ହସି କହିଲା—କୋଇଲାର ମଇଳା ଲାଗିବ କି ନା ତମର ନାଲ-ଗୁଲୁଗୁଲୁ ହାତରେ ।

ବସନ୍ତର ହାତରୁ ପଇସାଟା ଆପେ ଖସି ନିତାଇ ହାତରେ ପଡ଼ିଗଲା । ମୁହୂର୍ତ୍ତିକେ ଧନୁର ଗୁଣଟା ଯେପରି ଛିଣ୍ଡିଗଲା । ତାହାର ଅଧରପ୍ରାନ୍ତ ଥର ଥର ଥରେଇଉଠିଲା । ପର ମୁହୂର୍ତ୍ତିରେ ହିଁ ସେ କମ୍ପନ ତାହାର ନବ ହସରେ ରୂପାନ୍ତରିତ ହେବା ଦେଖି ନିତାଇର ଆଶ୍ଚର୍ଯ୍ୟର ସୀମା ରହିଲାନ । ମନେହେଲା ଝିଅଟା ଯେପରି ଗପର ସେଇ ମାୟାବିନୀ । ପ୍ରତିଦ୍ୱନ୍ଦ୍ୱୀ ସାପ ହେଲେ ସେ ନେଉଳ ହୁଏ; ବିରାଡ଼ି ହେଇ ନେଉଳରୂପିଣୀକୁ ଆକ୍ରମଣ କଲେ ନେଉଳରୁ ସେ ହୋଇଯାଏ ବାଘୁଣୀ । କାନ୍ଧ ତାର ବଙ୍କା ବସରେ ବଦଳିଗଲା ଦଣ୍ଡକେ । ହସିକରି ସେ କହିଲା—ସେଇଥିପାଇଁ ଦୂରେଇକରି ଦେଲି ।

କେଉଟପାଢ଼ ବାଟରେ ନିତାଇ ମନରେ ଗୀତ ଜାଗିଉଠିଲା । ନୂଆ ଗୀତ । ମନେ ମନେ ଭାବିକରି ସେ ସେହି ଝିଅଟାର ତୁଳନା ପାଇଛି । ଶିମିଳିଫୁଲ । ଗୁଣୁଗୁଣୁ କରି ସେ ପଦଟି ଗାଇବାକୁ ଆରମ୍ଭ କଲା—ଆହା !

ଆହା—ରଙ୍ଗ-ରଙ୍ଗିଆ ପଲାଶ ଫୁଲ;
ଗୁଣ ତ ନାହିଁ ଉପରେ ନାଲ୍ ।

## ନଅ

ପାଣିର ସ୍ରୁଦ ଖୁରଦେଇ ଟରଦେଲେ ବ ଦାଗ ପଡ଼େ ନାହିଁ, ହଠାତ୍ ଖାଲ ଗୋଟିଏ ରେଖା ଦେଖାଦେଲ ମାନେ ମିଳାଇଯାଏ ଓ ଖୁରଟା ବ ପାଣିଭିତରେ ଅଦୃଶ୍ୟ ହୋଇଯାଏ । ସେହିପରି ଗୋଟିଏ ମୃଦୁହସ ନତାଇର ମୁହଁରେ ଦେଖାଦେଇ ସେହି ତରଙ୍ଗମୟୀ କୃଶତନୁ ଝିଅଟାର କଳକ୍ରୋଳମୁଖର ହାସ୍ୟସ୍ରୋତ ଭିତରେ ହଜିଗଲା ; ନତାଇର ହସ ଯେପରି ଖୁର, କିନ୍ତୁ ସେଇ ଝିଅଟାଇ ଯେମିତି ଆବେଗମୟୀ ସ୍ରୋତସ୍ୱିନୀ; ତାକୁ କାଟିପକେଇବା ଅସମ୍ଭବ । ଝିଅଟା ବରଂ ନତାଇର ହସଟି ସକାଶେ ତୀକ୍ଷ୍ଣତର ହୋଇଉଠିଲା । ସେ କିଛି କହିବାକୁ ଯାଉଥିଲା; କିନ୍ତୁ ତାହା ପୂର୍ବରୁ ହିଁ ନତାଇ ସବିନୟରେ ପୁରା ଦଳଟିକୁ ଆହ୍ୱାନ ଜଣାଇ କହିଲା—ଆସନ୍ତୁ, ଆସନ୍ତୁ ଆସନ୍ତୁ ।

ନତାଇ ଘର ଭିତରକୁ ଆଗେଇଗଲା—ସମସ୍ତେ ତାକୁ ଅନୁସରଣ କଲେ । ନତାଇର ବସା—ରେଲବାଇ କୁଲି ବ୍ୟାରାକ୍ । ଲାଇନ କନଷ୍ଟ୍ରକ୍‌ସନ ବେଳେ ଏଇଠାରେଇ ଥିଲା ଇଞ୍ଜିନିଅରିଂ ବିଭାଗର ବଡ଼ ଅଫିସ୍ । ସେତେବେଳକାର ପ୍ରୟୋଜନ ମୁତାବକ ଏଇ ବ୍ୟାରାକ୍‌ଯାକ ତିଆରି ହୋଇଥିଲା । ଏବେ ସବୁ ପଡ଼ିରହିଛି, ଦୁଇ ଚକଚକିଆ ସିମେଣ୍ଟ ଦିଆ ଟିକିଏ ବାରଣ୍ଡା, ଟିକିଏନାକୁରୁ ପକା ଅଗଣା; ସେଇ ପିଣ୍ଡା ଓ ଅଗଣା ଉପରେଇ ଦଳଟି ବସିପଡ଼ିଲା ।

ଦଳଟି ଗୋଟିଏ ଝୁମରଆଦଲ । ବହୁ ପୂର୍ବକାଳରେ ଝୁମର ଭିନେ ଜନପ୍ରିୟ ଥିଲା; କିନ୍ତୁ ବର୍ତ୍ତମାନ ନିମ୍ନଶ୍ରେଣୀର ବେଶ୍ୟା ଗାୟିକା ଏବଂ କେତେ ଜଣ ଯନ୍ତ୍ରବାଦକଙ୍କୁ ଘେନି-କରି ହିଁ ଝୁମରଆଦଲ । ଆଜି ଏଠି ତ କାଲି ସେଠି କରି ବୁଲୁଥାନ୍ତି, ଗଛମୂଳେ ଆସ୍ତାନା ଜମାନ୍ତି, କେହି ବାହାନା ନକଲେ ବ ସନ୍ଧ୍ୟା ପରେ ରାସ୍ତାକଡ଼ରେ ନିଜେ ନିଜେ ଆସର ସଜାଇ ଗାଉଣାବାଜଣା ଆରମ୍ଭ କରିଦିଅନ୍ତି । ଝିଅଗୁଡ଼ିକ ନାଚନ୍ତି—ଗାଆନ୍ତି ଅଶ୍ଳୀଳ ଗୀତ । ଭଣଭଣିଆ ମାଛିଭଳିଆ ଏହି ରସର ରସିକମାନେ ଆସି ଜମାହୋଇଯାନ୍ତି ।

ଆସରରେ କିଛି ମାଗୁଣି ବ ପଡ଼େ । ରାତିର ଆଢ଼ୁଆଳରେ ଲୁଚି ଝିଅଙ୍କର ଦେହ-ବ୍ୟବସାୟ ବ ଚଳେ । ତେବେ ଏତିକି ସର୍ବସ୍ୱ ନୁହେଁ; ପୁରାଣର ପାଲାଗୀତ ବ ଜାଣନ୍ତି, ସେମିତିକା ଆସର ହେଲେ ସେ ଗୀତ ବ ଗାଆନ୍ତି । ଯନ୍ତ୍ରୀଙ୍କ ଭିତରେ ନତାଇ ଭଳିଆ ଜଣେ ଦୁଇଜଣ କବିୟାଲ ବ ରହିଛନ୍ତି, ପ୍ରୟୋଜନ ହେଲେ କବିଗାନ-ପାଲାରେ ପାଲଅାଗିରି ବ କରନ୍ତି; ପୁଣି ସୁବିଧା ହେଲେ, ନତାଇ ଭଳି କବିୟାଲ ସାଜିକରି ଠିଆ ହୁଅନ୍ତି ।

ଉପରେ ଶସ୍ତା ପାଉଡ଼ର ଓ ସ୍ନୋର ପ୍ରଲେପ, ଗୋଡ଼ରେ ଅଳତା, ହାତରେ ବି ଲାଲ ରଙ୍ଗର ବୋଳ । ଦର୍ଶକମାନଙ୍କ ମନରେ କିନ୍ତୁ ଏଇଥିରେଇ ଚମକ ଲାଗୁଅଛି । ଝିଅ-ମାନଙ୍କ ଭିତରେ ବସନ୍ତଲ ଝଲମଲ କରୁଅଛି । ଝିଅଟାର ସତରେ ରୂପ ଅଛି, ତା ସଙ୍ଗରେ ରୁଚି ବି ଅଛି । ଝିଅଟା ଭଲ ସାଜ ପିନ୍ଧିଛି । କବିୟାଲ ନିତାଇ ଧୋବ ଲୁଗା ଜାମା ଉପରେ ଚଦରଖଣ୍ଡିକ ବେକରେ ପକାଇ ଝୁମରଆଦଳର ପାଖ ଲାଗି ବସିଲା । ମୁହଁରେ ତାର ଗୌରବର ହସ । ଏ ଆସରରେ ସେ ବିଶିଷ୍ଟ ବ୍ୟକ୍ତି; କାରଣ ସେ କବିୟାଲ ।

ଗାଉଣା ଆରମ୍ଭ ହେଲା । ଖେମଟାର ଅନୁକରଣରେ ନାଚ ଓ ଗୀତ । ଝିଅମାନେ ଆଗେ ଗୀତ ଧରିବେ, ଝିଅଙ୍କ ପରେ ପାଳିଆମାନେ ସେଇ ଗୀତର ପୁନରାବୃତ୍ତି କରିବେ । ଝିଅମାନେ ତାହାର ସାଙ୍ଗରେ ନାଚିବେ । ଏବେ ଖେମଟା ନାଚର ପ୍ରସାର ଦେଖି ସେମାନେ ଝୁମର ନାଚ ଛାଡ଼ି ଏହାକୁ ଧରିଛନ୍ତି । କିଛିଟା ଝୁମର୍‌ର ଢଙ୍ଗ ବି ଅବଶ୍ୟ ରହିଛି । ସେ ଟିକକ ପୂରାପୁରି ଅଶ୍ଳୀଳତା ।

ପ୍ରୌଢ଼ା ମଧ୍ୟସ୍ଥଳରେ ପାନବଟା ଘେନି ବସିଥିଲା । ସେ ନିତାଇକୁ କହିଲା—ବାବା, ତୁ ବି ଧର ।

ନିତାଇ ହସିଲା । କିନ୍ତୁ ପାଳିଆଙ୍କ ସାଙ୍ଗରେ ସେ ଗୀତ ଧରିଲା ନାହିଁ । ପ୍ରଥମ ଗୀତଟି ଶେଷ ହେବାମାତ୍ରେ ଝିଅମାନେ ବିଶ୍ରାମ ନେବାକୁ ବସିଲେ । ସଙ୍ଗେ ସଙ୍ଗେ ନିତାଇ ଉଠିପଡ଼ିଲା । କବିୟାଲ-ଭଙ୍ଗିରେ ଚଦରଖଣ୍ଡିକ ଅଣ୍ଟାରେ ଭିଡ଼ି ସେ ହାତଯୋଡ଼ି କହିଲା—ମୁଁ ଗୋଟିଏ ନିବେଦନ କରେଁ ।

ଚାରିଆଡ଼େ ନାନା କଳରବ ଉଠିଗଲା ।

—ସୁଆଙ୍ଗର ଦୁଆରି ଅଇଲା ହେ ।

—ବସ ବସ ।

—ଏଇ ନିତାଇ !

ଜଣେ ରସିକ କହିଉଠିଲା—ଟିକିଏ ଥିର ହେଇକରି ଆ—ଟିକିଏ ଥିର ହେଇକରି ଆ ।

ଅକସ୍ମାତ୍ ସବୁ କଳରବକୁ ଦବେଇ ରାଜା ହୁଙ୍କାର ଦେଇଉଠିଲା—ଚୁପ୍, ସବ୍‌ଲୋକ୍, ଚୁପ୍ ।

ବିପ୍ରପଦର ବି ଗୋଟାଏ ଧମକ ପଡ଼ିଲା—ଏଇକ୍ ।

ସମସ୍ତେ ଚୁପ୍ ହୋଇଗଲେ । ନିତାଇ ସୁଯୋଗ ଦେଖି କହିଲା—ମୁଁ ପଦଟିଏ ଗାଇବି ଆପଣମାନଙ୍କ ଛାମୁରେ ।

—ଲଗାଓ ଓସ୍ତାଦ୍, ଲଗାଓ । ରାଜାର କଣ୍ଠସ୍ୱର ।

ନତାଇ ଗୀତ ଆରମ୍ଭ କରଦେଲ । ବାଁ ହାତଟି ଗାଲରେ ଦେଇ, ଡାହାଣ ହାତଟି ମୁହଁ ସାମନାରେ ରଖି ଅଳ୍ପ ନଇଁପଡ଼ି ଆରମ୍ଭ କଲ—

"ଆହା ରଙ୍ଗ-ବେରଙ୍ଗ ପଲାଶ ଫୁଲ, ଗୁଣ ତ ନାହିଁ ଉପରେ ନାଲ
ସହ୍ୱ, ଦେଖିଯା ଛଟକ ତାର ।"

ପଦଟା ପ୍ରଥମ ଦଫା ଗାଇସାର ଫେର୍ ଥରେ ଗାଇଲବେଲକୁ ସେ ହାତରେ ତାଳଦେଇ ତାଳ ଦେଖାଇ କହିଲ—ଏଇ—ଏଇ—ଏପର ବଜାଅ ତବଲା ବାବୁ ! କହିକର ସେ ପୁଣି ଗୀତ ଧରିଲ—

"ଖାଲି ଝଲମଲ ରଙ୍ଗରେ, ମଧୁ ନାହିଁ ଅଙ୍ଗରେ
ଗଛଯାକ କଣ୍ଟା ଖୁରଧାର
ମନଭ୍ରମର, ଯାଅନା ପାଶେ ତାର ।"

ନତାଇର କଣ୍ଠଟି ମଧୁର ଓ ସ୍ୱଚ୍ଛ, ମୁହୂର୍ତ୍ତିକେ ମଣିଷର ମନ ହରନଏ । ନେଲ ବ । ଲୋକଙ୍କର ଆପତ୍ତି 'ଗ'ରେ ଗୋମାତା ଭଳି ଗୀତକୁ; କନ୍ତୁ ଏଠାରେ ତାହାର ଆଭାସ ନ ପାଇ ଲୋକମାନେ ବାଗେଇକର ବସିଲେ ।

ରାଜା ବାହାବା ଦେଇଉଠିଲ—ବାହା ରେ ଓସ୍ତାଦ୍, ବାହା-ବାହାରେ !

ବିପ୍ରପଦ ବ ସାବାସୀ ଦେଲ—ବହୁତ୍ ଆଚ୍ଛା ।

ବଣିକ-ମାତୁଳ କହିଲ—ବଢ଼ିଆ, ବଢ଼ିଆ ।

ଲୋକମାନେ ବ ବାହାବା ଦେଲେ ।

ନତାଇ ଉତ୍ସାହରେ ମୃଦୁମୃଦୁ ନାଚବାକୁ ଆରମ୍ଭ କଲ । ଥରେ ଘୁରଆଡ଼େ ଆଖି ବୁଲାଇନେଲ, ମୁହଁରେ ତାର ମୃଦୁ ହସ । ରାଜାର ପଛରେଇ ରାଜାର ସ୍ତ୍ରୀ, ତାହା ପାଖରେ ଠାକୁରଝୀ । ଶ୍ରଦ୍ଧାନ୍ୱିତ ବିସ୍ମୟ ସହିତ ସେ ତାହାରି ଆଡ଼କୁ ଅନାଇରହିଛ । କ୍ଷଣକଲାଗି ନତାଇ ଗୀତ ଭୁଲଗଲ, ଠାକୁରଝୀକୁ ଅବହେଳା ଦେଖାଇଥିଲେ ବ ଠାକୁରଝୀ ତାହାକୁ ଅବହେଳା କରନାହିଁ । ତାହାର ଗୌରବର ଗୋପନ ଅଂଶ ନେବାକୁ ସେ ଆସିଅଛ । କ୍ଷଣକଲାଗି ସେ ଗୀତର ଖିଅ ହଜାଇଦେଲ ।

ଝୁମରଆଦଲର ଢୋଲଆଟା ସୁଯୋଗ ପାଇ କାଠିମାର ଚକ୍କାର କର କହିଉଠିଲ—ହିଁ, ତାଳ କଟିଲ, କଟିଲ । ଅର୍ଥାତ୍ ନତାଇର ତାଳ କଟିଲ । କ୍ଷଣକେ ନତାଇ ସଜାଗ ହୋଇ ଗୀତ ଛାଡ଼ଦେଇ ହାତରେ ତାଳଦେଇ କହିଲ—ଗୀତ ଥାଉ, ଏଥରକ ଢଗ ।

ହୁଁ—ହୁଁ—ହୁଁ—ହୁଁ କର ତାଳ ମାରମାରକା ପୁନରାୟ ସମ୍ ପାଖରେ ଧରନେଲ—

"ଶିମିଳି ଫୁଲ
ଫଳ ଧରେନା ଧରେ ତୁଳା, ସୁଉଳ ବଦଳ ତୁଳ—

ସଙ୍ଗେ ସଙ୍ଗେ ସେ ନାଚିବାକୁ ଆରମ୍ଭ କରିଦେଲା । ତାର ପଦାଟା ଲୁଚାଇବାର ଏଇ ଅବକାଶ । ନାଚି ନାଚି ସେ ବୁଲି ଗଲା—ଆସର ଆଡ଼କୁ । ଝୁମରିଆଦଳର ଝିଅମାନେ ମୁହଁ ଚପି ହସୁଛନ୍ତି—କେବଳ ବସନ୍ତ ଆଖିରେ କ୍ରୋଧର ଦାଢ଼ । ନିତାଇ ତାହାରି ଆଡ଼କୁ ଗୁହିଁକରିହିଁ ତଗ ମେଲିଲା—

ପୁଣି ବିକଶିତହେଲା ସେ ଫୁଲ ଖଣ୍ଡରେ, ମାଳା ହେଲା ଗଳାର ।"

ନିତାଇ ସାଙ୍ଗରେ ଗୃହଚଷ୍କୁ ହେବାମାନଙ୍କେ ବସନ୍ତ ସେମିତ ମାଡ଼ିଉଠିଲା । ସେ ଉଠି ଠିଆହୋଇ, ପ୍ରୌଢ଼ାକୁ କହିଲା—ମୁଁ ଲୁଳିଲି ମାଉସୀ । ଶିମିଳି ଫୁଲର ଅର୍ଥ ସେ ବୁଝିଛି ।

—କୁଆଡ଼େ ?

—ବସାକୁ, ଶୋଇବାକୁ ।

—ଶୋଇବାକୁ ।

—ହଁ ।

—ପାଗଳୀଟା ନା କଣ ? ବସ ।

—ନା । ଏମିତି ଆସରରେ ମୁଁ ଗାଇପାରିବିନି । ଯୋଉ ଆସରରେ ମାଙ୍କଡ଼ ନାଚେ, ସେ ଆସରରେ ମୁଁ ନାଚିପାରେନା ।

ବେଶ ଉଚ୍ଚକଣ୍ଠରେହିଁ କଥାବାର୍ତ୍ତା ହେଉଥିଲା । ନିତାଇ କ୍ଷଣକେ ସ୍ତବ୍ଧ ହୋଇଗଲା । ଦର୍ଶକମାନେ ଅଧିକାଂଶ ଚିତ୍କାର କରି ଉଠିଲେ—ଏଇ, ଏଇ, ତୁ ବନ୍ଦ କର ।

ରାଗି ଉଠିଲା ରାଜା । ସେ ଉଠି ଠିଆହେଲା—କ୍ୟା ?

ବସନ୍ତ କିଛି ଜବାବ ଦେଲା ନାହିଁ, କେବଳ ଥରେ ବେକଟି ବୁଲାଇ ନିତାନ୍ତ ତାଚ୍ଛଲ୍ୟଭରେ ଗୋଟିଏ ଚକିତ ଦୃଷ୍ଟି ହାଣି ଆସରରୁ ବାହାରିଯିବାକୁ ଉପକ୍ରମ କଲା । ଗୁରିଆଡ଼େ ଗୋଟାଏ ଗୋଳ ଉଠିଲା—କେହି ନିତାଇ ଉପରେ ରାଗି ପାଟିତୁଣ୍ଡ ଆରମ୍ଭ କରିଦେଲେ, କେହି ଅର୍ଥର ତୁଳରେ ଆବଦ୍ଧ ଘୃଣିତ ପଥଗୁରିଣୀ ଝିଅଟାର ଦୁର୍ବିନୀତ ସ୍ପର୍ଦ୍ଧାରେ କ୍ରୁଦ୍ଧ ହୋଇ ଆସ୍ଫାଳନ ଉଠାଇଲା । କିନ୍ତୁ ଝିଅଟା କୌଣସି କଥାକୁ ଭ୍ରୂକ୍ଷେପ କଲାନାହିଁ; ସାମନାର ଲୋକଟିକୁ କହିଲା—ବାଟ ଛାଡ଼ ତ ଭାଇ !

ସେ ବାଟ ଛାଡ଼ିଦେଇଥାନ୍ତା କି ଦେଇ ନ ଥାନ୍ତା କେଜାଣି, କିନ୍ତୁ କିଛି କରିବା ପୂର୍ବରୁ ହିଁ ପଛରୁ ସାମନାକୁ ଆସି ପଥରୋଧ କରି ଠିଆହେଲା ନିତାଇ । ହାତଯୋଡ଼ି ସେ ହସ ହସ ମୁହଁରେ ବିନମ୍ର କରି କହିଲା—ମୋର ଦୋଷ ହେଇଯାଇଛି । ତମେ ଯାଅନା, ବସ । ମୋ ରାଣ ପକାଇଲି ।

ବସନ୍ତ ଏ କଥାର ଉତ୍ତର ଦେଲା ନାହିଁ; କିନ୍ତୁ ଫେରିଆସି ଆସରରେ ବସିଲା । ଗୋଳମାଳ ଟିକିଏ କମିଲାମାତ୍ରେ ସେ ଉଠି ଗୀତ ଗାଇବାକୁ ଆରମ୍ଭ କଲା । ଗୀତଟି ବେଶ୍ ବଡ଼ ଗୀତ । ଭଦ୍ରଲୋକଙ୍କ ଆସର ଯେଉଁଠି 'ଖେଉଡ଼' * ଗାଇବା ଅଚଳ, ସେଠାରେ ଗାଇବାଲାଗି ସେମାନଙ୍କର ଭଣ୍ଡାରରେ ମହଜୁତ ଅଛି । ଗୀତଟି ବସନ୍ତର ବଡ଼ ପ୍ରିୟ; ନାଚ ସାଙ୍ଗରେ କେମିତି ଗୋଟିଏ ସଂଯୋଗ ରହିଛି । ବାଛିକରି ସେଥିପାଇଁ ସେ ଏଇ ଗୀତଟି ଗାଇଲା—

"ଝୁମ୍‌ଝୁମାଝୁମ୍ ବାଜେ ଲୋ ନାଗରୀ;
ନୂପୁର ଚରଣେ ମୋର । ସେଯେ ନ ମାନେ ରାସ ଗୋ
ତମେ ଆସ ଗୋ !
ପାଣି ତାଳି କାଖେ ଟେକି ନେଏ ସଖୀ କଳସୀ
ରଜନୀ ହେଲଣି ଭୋର, ଆସ ସଖୀ ଆସ ଗୋ; ନିଶି ଯେ ଶେଷ ଗୋ !
ନୂପୁର ଚରଣେ ମୋର ନ ମାନେ ରାସ ଗୋ ।
ଝୁମ୍ ଝୁମା ଝୁମ୍, ଝୁମାଝୁମ୍ ଝୁମାଝୁମ !"

ଝୁମ୍‌ଝୁମାଝୁମ୍ ସାଙ୍ଗରେ ଆରମ୍ଭ କଲା ନାଚ । ଆସରଟା ସ୍ତବ୍ଧ ହୋଇଗଲା । ଏପରିକି ଝୁଙ୍କି ରାଜା ବି ମୁଗ୍ଧ ହୋଇଗଲା । ଝିଅଟାର ରୂପ ଅଛି, କଣ୍ଠ ବି ଅଛି । ଛୁରୀଧାର ପରି ଉଚ୍ଚ ସୁକଣ୍ଠ । ତାହାଛଡ଼ା ଝିଅଟା ଯେପରି ଗୀତ ଓ ନାଚ ଭିତରେ ନିଜକୁ ହଜାଇ ଦେଇଛି । ଦ୍ରୁତରୁ ଦ୍ରୁତତର ତାନ-ଲୟରେ ସଙ୍ଗୀତ ଓ ନୃତ୍ୟ ଶେଷକରି ମୁହୂର୍ତ୍ତିକ ଲାଗି ଗୋଟିଏ ପୂର୍ଣ୍ଣଚ୍ଛେଦ କରି ସ୍ଥିରହୋଇ ଠିଆହେଲା । ଏତେ-ବେଳେ ଯାଇ ଆସରରେ ରବ ଉଠିଲା—'ବାହାବା'ର ରବ । ଚାରିଆଡ଼ୁ ପଇସା ପଡ଼ିବାକୁ ଲାଗିଲା—ପଇସା, ଅଣି, ଦୋଅଣି, ସୁକି, ଦୁଇଟି ଅଧୁଲି; ଦୋକାନୀ ଘନଶ୍ୟାମ ଦତ୍ତ ଗୋଟାଏ ପୂରା ଟଙ୍କାଇ ଫୋପାଡ଼ିଦେଲା । ଝିଅଟାର ସେଆଡ଼େ ନଜର

---

* ଖେଉଡ଼ ବା ଖେଉର ଆଦିରସାତ୍ମକ, ଅଶ୍ଳୀଳ ଗୀତ । ପୂର୍ବକାଳରେ ବଙ୍ଗଳାର ଗ୍ରାମମାନଙ୍କରେ ପ୍ରଚଳିତ ଥିଲା ।

କରିବାର ବୋଧହୁଏ ସମସ୍ତ ନଥିଲା, ତାର ସର୍ବାଙ୍ଗରେ ଝାଳ ଦେଖାଯାଉଛି; ଗୁଡ଼ାଟା ଧଇଁସଇଁ ହୋଇ ଉଠପଡ଼ ହେଉଛି; ଗୌରବର୍ଣ୍ଣ ମୁହଁଟି ରକ୍ତୋଚ୍ଛ୍ୱାସରେ ଭରି-ଉଠିଛି । ପ୍ରୌଢ଼ା ନଜେ ଉଠି ପଇସାଗୁଡ଼ିକ ଗୋଟେଇ ନେଲା ।

ଚାରିଆଡ଼ୁ ରବ ଉଠିଲା—ଆଉ ଗୋଟା, ଆଉ ଗୋଟା !

ନିତାଇ ବସନ୍ତ ଆଡ଼କୁ ଚାହିଁଲା । ଆଖିରେ ଆଖି ମିଶିବାମାତ୍ରେ ସେ ନମସ୍କାର କରି ତାହାକୁ ଅଭିନନ୍ଦନ ଜଣାଇଲା ।

ପ୍ରୌଢ଼ା ବସନ୍ତ ଦେହରେ ହାତଦେଇ କହିଲା—ଉଠ୍ ! କିନ୍ତୁ ସଙ୍ଗେ ସଙ୍ଗେ ଶିହରି ଉଠିଲା—ଦେ କଣ ବସନ୍ତ, ଜର ଯେ ଆକ୍ରି ଖଇ ଫୁଟୁଛି ।

ବସନ୍ତ ହସି ହସି କହିଲା—ଟିକିଏ ମଦ ଥିଲେ ଦିଅ ।

ସାମାନ୍ୟ ଅନ୍ଧୁଆଳକୁ ଯାଇ କିଛି ନର୍ଜଳା ମଦ ଗିଳି ସେ ପୁଣି ଉଠି ଠିଆହେଲା; କିନ୍ତୁ ପ୍ରଥମ ଥର ପରି ଗତି ବା ଆବେଗ କିଛି ଆଣିପାରିଲାନି । ସେ ଧଇଁସଇଁ ହେଉଥିଲା, ଗତି ଭିତରେ କ୍ଳାନ୍ତିର ପରିଚୟ ସୁସ୍ପଷ୍ଟ । ଗୀତ ଧରି ମଧ୍ୟ ଗାଇ ପାରିଲାନି; ପାଳିଆଏ ଗାଇଲେ । ତେହାଇ ※ ପଡ଼ିଲା ମାତ୍ରେ ନାଚ ବନ୍ଦ କରି ସେ ଶିଥିଳ କ୍ଳାନ୍ତ ପଦକ୍ଷେପରେ ଆସରରୁ ବାହାରିଗଲା ! କେହି କିଛି କଥା କହିପାରିଲେନି, ଯେମିତି ସେମାନଙ୍କର ଦାବୀ ଶେଷ ହୋଇଯାଇଛି । ଆଖିଆଗରେ ଦେଣା-ପାଉଣାର ହିସାବରେ ତାହାର ଦୁଇଟି ଗୀତ ଓ ନାଚର ଓଜନ ସେମାନଙ୍କର ପଇସାର ଓଜନକୁ ତୁଚ୍ଛ କରି ପଥର ଭଳି ଓଜନ ନେଇ ମାଟିର ଗୁଡ଼ ଉପରେ ଯାଇ ଗାଦି ମାଡ଼ିବସିଛି । ରାସ୍ତା କଡ଼ରେ ଯେଉଁମାନେ ଠିଆହୋଇଥିଲେ ସେମାନେ ଆହୁରି ଟିକିଏ ଦୂଆଯାଇ ରାସ୍ତା ଛାଡ଼ିଦେଲେ ।

ପ୍ରୌଢ଼ା ନିତାଇକୁ କହିଲା—ଦେଖିଲ ବାବା ! ଆଚ୍ଛା ଏକବାଗିଆ ଝିଅଟା !

ନିତାଇ ବି ବାହାରି ଆସିଲା । ଚାରିଆଡ଼କୁ ଚାହିଁ ସେ ବସନ୍ତର ସନ୍ଧାନ କଲା । ମନେ ମନେ ଏଇ ଝିଅଟି ପାଖରେ ସେ ହାର ମାନିଅଛି । 'ଶିମିଳି ଫୁଲ' କହିବା ତାର ଅନ୍ୟାୟ ହୋଇଛି; ଅନ୍ୟାୟ ନୁହେଁ, ଅପରାଧ । ନୂଆ ଗୀତର ପଦ ତା ମନ ଭିତରେ ଗୁଣୁଗୁଣୁ ଆରମ୍ଭ କରିଛି । କିନ୍ତୁ ବସନ୍ତ କୁଆଡ଼େ ଗଲା ? ଝୁମୁରିଆଦଳର ବସା ବୋଇଲେ ଏଇ ବରଗଛମୂଳ । ଗଛମୂଳଟାରେ ଖଣ୍ଡିଏ ଚଟେଇ ଉପରେ ବସିଛି ଗୋଟାଏ ମରଦ

※ ତାଳର ଶେଷ ଅଂଶ ।

—ଦଳଭିତରେ ଶକ୍ତିଶାଳୀ ମଇଁଷଟା । ମଇଁଷି ଭଳିଆ ପ୍ରଚଣ୍ଡ ଆକାର, ସେମିତି କଳା, ନାଲି ଗୋଲ ଆଖି, ବଧିର ଭଳି ନୀରବ; ତୃଷ୍ଣାର୍ତ୍ତ ମଇଁଷି ଯେପରି ପାଣି ପିଏ ସେହିପରି ସେ ମଦ ଖାଏ । ସାରା ଦିନ ଶୋଇରହିଥାଏ, ସନ୍ଧ୍ୟା ପରଠାରୁ ପଡ଼େ ତାର ଜାଗରଣର ହିଁ ପାଳି, ନିଆଁ ଜାଳି ନିଆଁ ପାଖରେ ବସି ଲୋକଟା ଜିନିଷପତ୍ର ଜଗିଛି । ସେଠାରେ ନିତାଇ ଦେଖିଲା ବସନ୍ତ ନାହିଁ । ସେ ଜ୍ୟୋତ୍ସ୍ନାଲୋକିତ ଚଉଦିଗକୁ ଦୃଷ୍ଟି ପ୍ରସାରିତ କଲା । ସେ କଣ ? ତାର ବସା ଦରଜା ପାଖରେ କେଇଜଣ ଲୋକ ଠିଆ ହୋଇଛନ୍ତି କାହିଁକି ? ସେ ଆଗେଇ ଆସି ପଚାରିଲା—କିଏ ?

—ଆମେ ।

ନିତାଇ ଚିହ୍ନିଲା, ବେପାରୀ କାମେଦ ଶେଖର ପୁଅ—ନୟାନ ଓରଫ୍ ନାନାଇର ଦଳଟା । ସେ ପଚାରିଲା—କିଣ ? ଏଠି କଣ ହଉଚି ?

—ଝିଅଟା ତୋ ବସାରେ ଆସି ପଶିଚି ।

—ଆସିଥିଲେ ଆସିଥିବ; ଆଉ ତମେ ସବୁ ଏଠି ଠିଆ ହୋଇଚ କାହିଁକି ?

ଦଳଟାଯାକ ଅଟ୍ଟହାସ ହସିଉଠିଲା ।

ନିତାଇ କହିଲା—ଯା ତମେ ସବୁ ଏଠୁ । ନଇଲେ ହାଙ୍ଗାମ୍ ହବ । ମୁଁ ରାଜାକୁ ଡାକିବି; କନଷ୍ଟବଲ୍ ଅଛି ତାକୁ ଡାକିବି । ନୟାନ୍ ଶେଖ ନିତାଇକି ପାହିଙ୍ଗରେ ପକାଏନା; କିନ୍ତୁ ରାଜାକୁ ଖାତିର କରେ । ସେ ତଥାପି କହିଲା—ଶୁଣୁନା, ତତେ ବକ୍ସିସ୍ ଦେବି ନେତାଇ !

ନିତାଇ ଗୋଟାଏ ଅବଜ୍ଞାର ଦୃଷ୍ଟି ହାଣି ଘରକୁ ପଶି ଦରଜା ବନ୍ଦ କରିଦେଲା । କିନ୍ତୁ ବସନ୍ତ କୋଉଠି ? କୁଆଡ଼େ ନାହିଁ ତ । କିନ୍ତୁ ଘର କବାଟର ଜଞ୍ଜିର ଖୋଲା ! ଦରଜାରେ ହାତ ଦେଇ ସେ ଦେଖିଲା—ହିଁ ଭିତରୁଆଡ଼ୁ ଦରଜା ବନ୍ଦ ଅଛି । ନିତାଇ ଡାକିଲା—ଅହେ ଶୁଣୁଚ ? ମୁଁ—ମୁଁ ।

—କିଏ ?

—ତମର 'କୋଇଲ-ମାଣିକ' ।

—କିଏ ! ଓସ୍ତାଦ୍ ?

—ଓସ୍ତାଦ୍ କି ଫୋସ୍ତାଦ୍ ଯାହା କହିବାର କୁହ ତମେ ।

ଏଇଥର ଦରଜାଟା ଖୋଲିଗଲା । ନିତାଇ ଘରେ ପ୍ରବେଶ କରି ଦେଖିଲା, ବସନ୍ତ ସେତେବେଳକୁ ପୁଣି ଥରେ ଶୋଇଯାଇଛି । ତାର ବିଛଣାଟା ଉପରେ ହିଦ୍ୟ ଆରାମରେ ଶୋଇରହିଛି ! ବସନ୍ତ କହିଲା—ଦର୍ଜାଟା ବନ୍ଦ କରିଦିଅ ।

—ବାହାର କବାଟ ବନ୍ଦ ଅଛି ।

—ପାଚଖି ତେଇଁକରି ପଶିବେ ଗ୍ରାଇ—ବନ୍ଦ କର । ବସନ୍ତ କ୍ଳାନ୍ତ ଅଥଚ ବଚନ ହସ ହସିଲା । ନିତାଇ ତାହାର କପାଳରେ ହାତ ଦେଇ ଚମକି ପଡ଼ିଲା—ଏ କଣ ? କେତେ ଜର !

—ମୁଣ୍ଡଟା ଟିକଏ ଚିପିଦବ ?

ହସିକରି ନିତାଇ ମୁଣ୍ଡ ଚିପିବସିଲା । ବସନ୍ତ ହସି କହିଲା—ନା, ଫୋସ୍ତାଦ୍ ନୁହଁ, ଭଲ ଓସ୍ତାଦ୍—ଗୀତଟା କିନ୍ତୁ ଝାପା । ତମରି ରଚନା ?

—ହଁ । କିନ୍ତୁ ସେ ଗୀତଟା ମୁଁ ବାତିଲ କରି ଦେଇଛି ।

—କାହିଁକି ? ଆଖି ବୁଜିରଖି ହିଁ ବସନ୍ତ ପଚାରିଲା ।

—ସେଇଟା ମୋର ଭୁଲ୍ ହୋଇଥିଲା ।

ଝିଅଟି କିଛି ଉତ୍ତର ଦେଲାନାହିଁ, ଖାଲି ଟିକଏ ହସିଲା ।

—ପୁଣି ନୂଆ ଗୀତ ବାନ୍ଧିଛି । ସେ ଗୁଣୁଗୁଣୁ କରି ଆରମ୍ଭ କଲା—

> "ଏଇ ଭୁଲଟା କାହାଚ, ହାୟରେ !
> ମନମତାଣି ବାସ୍ନା ଭରି ତା ବୁକୁରେ
> କରତକଣ୍ଟା ଦେଇ ଘେରିଲା କିଆଫୁଲର ଧାର ।"

ବସନ୍ତର ମୁହଁରେ କ୍ଷଣିକ ମୃଦୁ ହସ ଦେଖାଦେଲା । କହିଲା—ତା ପରେ ?

—ତା ପରେ ଏଇଲା ହେଇନି ।

—ଗୀତଟି ମତେ ଉଧାର ଦିଅ ।

—ମୋ ଗୀତ ତମେ ଉଧାର ନବ ? ଗାଇବ ?

—ହଁ ।

ଝରକା ଆଡ଼କୁ ଚାହିଁ ନିତାଇ କହିଲା—ଆଜି ଶେଷ କରିବ ।

—କିଏ ? କିଏ ? ଝରକା ପାଖରୁ କିଏ ପୁଞ୍ଛିଯାଉଛି ? ବସନ୍ତ ହସି କହିଲା—କିଏ ଆଉ ହବ ? ସେଇ ପୋଡ଼ାମୁହାଁଯାକ ହେଇଥିବେ ।

ନିତାଇ କିନ୍ତୁ ସେଇ କଥା ମାନିନେଇ ବସିପାରିଲାନି, ଜଲଦି ଆସି ଝରକା ପାଖରେ ଠିଆହେଲା । ସେ ଯାହା ଦେଖିଛି, ସେ-ଇ ଜାଣିଛି । ହଁ—ହେଇ ତ, ଦୁଧବର୍ଣ୍ଣ କୋମଳ ଜ୍ୟୋତ୍ସ୍ନା ମଧ୍ୟରେ ମଣିଷଟି ରେଲ ଲାଇନ୍ ଆଡ଼କୁ ଗ୍ଲଲିଛି । ଦ୍ରୁତ ଚଳନ୍ତ କାଶତଣ୍ଡୀ ଫୁଲ ପରି ଗ୍ଲଲିଛି । ମୁଣ୍ଡରେ କେବଳ ସ୍ୱର୍ଣ୍ଣବିନ୍ଦୁଟି ନାହିଁ । ଠାକୁରଝି ।

# ଏଗାର

ଜ୍ୟୋତ୍ସ୍ନାର ରହସ୍ୟମୟ ଶୁଭ୍ରତା ମଧ୍ୟରେ ଦ୍ରୁତ ଚଳନ୍ତ କାଶତଣ୍ଡୀ ଫୁଲଟି ଯେପରି ମିଶି ଏକାକାର ହୋଇ ମିଳେଇଗଲା । ନିତାଇ କିନ୍ତୁ ସ୍ତବ୍ଧ ହୋଇ ଝରକା ପାଖେ ଠିଆ-ହୋଇ ରହିଲା । ଆଖିରେ ତାହାର ଅର୍ଥହୀନ ଦୃଷ୍ଟି, ମନର ଚିନ୍ତା ଅସଂଲଗ୍ନ, ଅସ୍ପଷ୍ଟ । ଛାତି ଭିତରେ ଶାରୀରିକ ଅନୁଭୂତିରେ କେବଳ ଗୋଟାଏ ଗମ୍ଭୀର ଉଦ୍‌ବେଗ !—ସେ ଯେପରି ପଥର ହୋଇଯାଇଛି ! ଏଇ ବିପୁଳ ଜ୍ୟୋତ୍ସ୍ନାମୟତା ମଧ୍ୟରେ ଠାକୁରଝୀ ହଜିଯିବା ସଙ୍ଗେ ସଙ୍ଗେ ତାହାର ସବୁକିଛି ଯେପରି ହଜିଗଲା ।

ତାହାର ହାବଭାବ ଦେଖି ମୁଖରା ସ୍ୱୈରିଣୀ ଅସୁସ୍ଥ ଦେହ ନେଇ ମଧ୍ୟ ଉତ୍କଣ୍ଠିତ ହୋଇ ଉଠି ବସିଲା ।

ଜୀବନର ଅଭିଜ୍ଞତା ତାର ଯେତେ ଜଟିଳ, ସେତିକି କୁଟିଳ । ପଥଚାରିଣୀ ନିମ୍ନ-ଶ୍ରେଣୀର ଦେହ-ବ୍ୟବସାୟିନୀର ରାତ୍ରିର ଅଭିଜ୍ଞତା । ସେ ଅଭିଜ୍ଞତାରେ ନିଶାଚର ହିଂସ୍ର ଜାନୁଆର ଭଳି ମଣିଷଙ୍କ ସଂସାରରେ ଷୋଳ ଅଣାରୁ ପନ୍ଦରଅଣା ତିନିପଇସା; ସେଇ ଅଭିଜ୍ଞତାର ଶଙ୍କାରେ ଶଙ୍କିତ ହୋଇ ବସନ୍ତ ଉଠି ବସିଲା । ସେ ଭାବିଲା, ଯେଉଁ ଦଳଟି ଘରର ଦରଜା ପାଖରେ ଠିଆହୋଇ ଭିଡ଼ କରିଥିଲେ, ସେହିମାନେଇ ବୋଧହୁଏ ଦଳବଦ୍ଧ ହୋଇ ନିଃଶବ୍ଦ ଲୋଲୁପତାରେ ନଖ-ଦନ୍ତ ଦେଖାଇ ଘରର ଚାରିକଡ଼ ଘେରି ପକାଇଥିଲେ; ଆକ୍ରମଣର ଚେଷ୍ଟା କରୁଥିଲେ । ଉତ୍କଣ୍ଠିତ ହୋଇ ନିମ୍ନ କଣ୍ଠରେ ସେ ପଚାରିଲା— କଣ ହେଲା ?

ନିତାଇ ତଥାପି ଉତ୍ତର ଦେଲାନାହିଁ । ସେ ଯେପରି ସ୍ତବ୍ଧ ନିଷ୍ପନ୍ଦ ହୋଇ ଠିଆ-ହୋଇଥିଲା, ସେହିପରି ଠିଆହୋଇ ରହିଲା । ଠାକୁରଝୀର ରୀତି ତ ସେ ଜାଣେ । କିଛି ବାଟ ଯାଇ ସେ ଠିଆହୁଏ, ପଛକୁ ବୁଲି ଚାହେଁ । ଇଙ୍ଗିତରେ କହେ—ମତେ ଡାକ; ଡାକିଲେଇ ଫେରିବି । ଆଜି ଆଉ କିନ୍ତୁ ସେ ଠିଆହେଲା ନାହିଁ, ଚାଲିଗଲା; ଏଇ ରାତିରେ ଏକୁଟିଆ ଇ ସେ ଚାଲିଗଲା । ମଧ୍ୟରାତ୍ରିର ନିସ୍ତରଙ୍ଗ ସ୍ତବ୍ଧ ଜ୍ୟୋତ୍ସ୍ନା ଭିତରେ ବି ଗୋଟାଏ ଭୟ ରହିଛି । ସେ ଭୟ କଲା ନାହିଁ ।

ବସନ୍ତ ଏଥରକ ଉଠିଆସି ନିତାଇର ପାଖରେ ଠିଆହେଲା, ଜ୍ୱରୋତପ୍ତ ହାତରେ ନିତାଇର ହାତଧରି ସେ ପଚାରିଲା—କାହିଁ ?

ଏତେବେଳକେ ସଚକିତ ହୋଇ ନିତାଇ ଫେରି ଚାହିଁଲା । ରୂପରେ ଗୁଣରେ

କ୍ଷୁରଧାର ସ୍ୱୈରିଣୀର କୃଶ ମୁଖରେ, ବଡ଼ ବଡ଼ ଦୀପ୍ତ ଆଖିରେ ଅପରିମେୟ କ୍ଳାନ୍ତ—ଗଭୀର ଉତ୍କଣ୍ଠା । ନିତାଇ ସେ ମୁହଁକୁ ଚାହିଁ ସ୍ନେହକୋମଳ ନ ହୋଇ ରହିପାରିଲାନି । ସସ୍ନେହରେ ହସି ସେ ବସନ୍ତର କପାଳରେ ମୁଣ୍ଡରେ ହାତବୁଲାଇ କହିଲା – ଏତେ ଜର, ତମେ ଉଠି ଆଇଲ କାହିଁକି ? ଚାଲ ଶୋଇବ ଚାଲ । ଉଃ ! ଧାନ ପକେଇଦେଲେ ଖଇ ଫୁଟିବ, ଏତେ ତାତ !

—ଗ୍ରେକାରଗୁଡ଼ାକ ବୁଲୁଚନ୍ତି ଚାରିଆଡ଼େ ? ଛୁରୀ ହତିଆର ନେଇ ଏକାଠି ହେଉଚନ୍ତି ?

—ଗ୍ରେକାରଗୁଡ଼ାକ ? ନିତାଇ ସବିସ୍ମୟରେ ପଚାରିଲା । ବସନ୍ତର ଭାବନାର ରାସ୍ତାରେ ଯେଉଁମାନେ ବିଚରଣ କରୁଥିଲେ, ତାଙ୍କ କଥା ସେ କଳ୍ପନା ବି କରି ପାରିଲାନି !

ବସନ୍ତର ଭ୍ରୂ ଏଥର କୁଞ୍ଚିତ ହୋଇଗଲା—ଖୋଲ ଭିତରୁ ଖୁରର ଧାର ଉଙ୍କିମାରିଲା । ସେ ପଚାରିଲା – ତେବେ ? କଣ ? କିଏ ଗଲା ? କଣ ଦେଖିଚ ତମେ ?

ଚଟ୍ କରି ନିତାଇ ଏଥର ବସନ୍ତର କଳ୍ପନାର କଥା ବୁଝିପାରିଲା—ହସିହସି ସେ କହିଲା—ନା, ସେମାନେ ନୁହନ୍ତି । କିଛି ଡରନା ଆସ, ଶୋଇବ ଆସ । ସେ ତାକୁ ଆକର୍ଷଣ କଲା ।

—କିଏ ସେ ଗଲା ? କାହାକୁ ଦେଖୁଥିଲ ? କିଏ ଉଙ୍କିମାରି ଗଲା ?

—କିଏ ଚିହ୍ନି ପାରିଲିନି ।

—ଚିହ୍ନି ପାରିଲନି ?

—ନା ।

—ତାହେଲେ ଏମିତି ଠିଆ ହୋଇ ରହିଚ ଯେ ? ଯେମିତି କେତେ ସର୍ବନାଶ ହୋଇଯାଇଛି ତମର ?

ବସନ୍ତର ଶାଣିତ ଦୃଷ୍ଟି ଅନ୍ଧକାର ମଧ୍ୟରେ ବି ଯେପରି ଜଳୁଥିଲା !

ନିତାଇ କୌଣସି ଉତ୍ତର ଦେଲାନାହିଁ, ଶୁଷ୍କ ହସ ମୁହଁରେ ଧରି ସେ ବସନ୍ତ ଆଡ଼କୁ ଅନାଇଁ ରହିଲା ଖାଲି ।

ବସନ୍ତ ଅକସ୍ମାତ୍ ଖିଲଖିଲ କରି ହସି ଉଠିଲା—ତୀକ୍ଷ୍ଣ ଦ୍ରୁତ ହସ ହସି କହିଲା – ମୁଁ ମରିଯାଉଥାଏଟି ! ଆଖିଟା ବି ଫୁଟିଗଲା କି ! ଯେ ଉଙ୍କି ମାରିଲା ତା ମୁଣ୍ଡରେ ଯେ ଓଢ଼ଣା ଥିଲା ! ଓହୋ ! ମତେ ଦେଖି—

ପୁଣି ସେଇ ଖିଲଖିଲ ହସ ।

ନିତାଇର ଗୋଡ଼ଠୁଁ ମୁଣ୍ଡଯାଏଁ ଝିମି ଝିମି କରି ଉଠିଲା । ବସନ୍ତ ହସି ହସି ଘରର

କଳଣୀ ଖୋଲ୍ ବାହାରଗଲ୍ ।

ନତାଇ ଡାକଲ୍—ବସନ ! ହେଇ ! ବସନ !

ଦୁଆର ବାହାରୁ ଉତ୍ତର ଆସିଲ୍—ବସନ ନୁହେଁ ମ, କଆଫୁଲ୍, କଆଫୁଲ୍ । ଟାଣନା, କରତକଣ୍ଟାର ଧାରରେ ସର୍ବାଙ୍ଗ ଛୁଣ୍ଡି ପଡ଼ିବ ହଁ ।

ନତାଇ ତଥାପି ବାହାରକୁ ଆସିଲ ।

ସ୍ୱୈରଣୀ ସେତେବେଳକୁ କାସେଦ୍ ଶେଖର ପୁଅ ନସ୍ତାନ ସାଙ୍ଗରେ କଥା ହଉଛୁ ।

ଏ ଅବସ୍ଥାରେ ନତାଇ ଡାକବାକୁ ଯାଇ ମଧ୍ୟ ଡାକପାରିଲାନ, ଲଜ ମାଡ଼ିଲ ତାକୁ । ନଜର ଦୁଆରଟିରେଇ ସେ ସ୍ତବ୍ଧ ହୋଇ ଠିଆହୋଇ ରହିଲ । ସେପଟେ ଷ୍ଟେସନ ପାଖରେ ଝୁମର ଆସରରେ ଗୀତ ବୋଲା ହଉଚ । ଆଲୁଅର କରଣ ଗଛର ଫାଙ୍କ ଦେଇ ଆସି ଏଠିସେଠି ପଡ଼ୁଛୁ । ଏପଟଟା ପ୍ରାୟ ଜନହୀନ ସ୍ତବ୍ଧ, ପଶ୍ଚିମ ଆକାଶରେ ଚନ୍ଦ୍ର ଅସ୍ତ ହେବାକୁ ଯାଉଛୁ, ପୂର୍ବଦଗର ଆକାଶରେ ଅନ୍ଧକାର ଘନାଇ ଉଠୁଅଛୁ । ସ୍ୱୈରଣୀ ଝିଅଟାର କନ୍ତୁ କୌଣସି ଲଜ୍ଜା ନାହିଁ, ଖିଲ୍ ଖିଲ୍ ହସ ଭିତରେ କଥା ଶେଷ କର, ଘନ ଅନ୍ଧକାର ମଧ୍ୟରେ କାସେଦ୍‌ର ପୁଅ ନସ୍ତାନ ସାଙ୍ଗରେ ସେଇ ପୂର୍ବଦଗର ଗମ୍ଭୀରତର ଅନ୍ଧକାର ଭିତରେ ଅଦୃଶ୍ୟ ହୋଇଗଲ । ନତାଇ ଆକାଶ ଆଡ଼କୁ ଚାହିଁ ଏକା ଠିଆହୋଇ ରହିଲ । ରହି ରହି ପୁଣି ତା ମନରେ ନୂଆ ଗୀତ ଗୁଣୁଗୁଣୁ କର ଉଠିଲ । ଭଗବାନ୍ ମଣିଷର ମନନେଇ କ ମଜାର ଖେଳ ଯେ ଖେଳନ୍ତ ! ଗୋଟିଏ ଘଟରେ, ମଣିଷ ତାଙ୍କର ଛଳନାରେ ଅନ୍ୟକୁ ଦେଖିଥାଏ । ଠାକୁରଝୀ ବସନ୍ତକୁ ଦେଖି ଭୁଲିଗଲା; ବସନ୍ତ ଠାକୁରଝୀକୁ ଦେଖି ଭୁଲିଗଲା । ସେ ଗୁଣୁଗୁଣୁ କର ସେଇ କଥାକୁ ନେଇ ଗୀତ ବାନ୍ଧି ବସିଲ ।

"ବଙ୍କିମ ବହାସ୍ତି ହର ବଙ୍କା ତମର ମନ ।"

ଘଟଣା ଭିତର ଦେଇ ସେ ଯେପରି ନୟତର ଖେଳ ବା ଦୈବର ଅଦ୍ଭୁତ ପରହାସ ଦେଖିବାକୁ ପାଇଛୁ ଆଜ । ଠିକ୍ ତାହାର ଅଛୁଆଁ ଜନମ ପରି ଏ ପରହାସ ନଷ୍ଠୁର । ସେଇଥିପାଇଁ ସେ ଗୀତ ଭିତରେ ହରଙ୍କୁ ସ୍ମରଣ ନ କର ରହିପାରିଲାନ ।

ଭୋରରୁ ରାଜାର ପାଟିତୁଣ୍ଡରେ ନତାଇର ନଦ ଭାଙ୍ଗିଗଲ । ସେ ଘରକୁ ଆସି ଗୀତ ବାନ୍ଧୁ ବାନ୍ଧୁ ଶୋଇପଡ଼ିଥିଲ । ଚେତନା ହେବାମାତ୍ରେ ସେହି ଅସମାପ୍ତ ଗୀତର ପଦଟାଇ ପ୍ରଥମେ ଗୁଞ୍ଜନ କର ଉଠିଲ ତାର ମନରେ—

"ବଙ୍କିମ ବହାସ୍ତି ହର ବଙ୍କା ତମର ମନ<br>କୁଟିଳ କୌତୁକେ ତୁମେ ହଁ କୁ କର ନାଁ—ଅଘଟଣ କର ଘଟଣ ।

ରାଜା ପାଟିତୁଣ୍ଡ ଆରମ୍ଭ କରିଛି । ସେଇ ପାଟିତୁଣ୍ଡ ଡାକହାକର ଉଚ୍ଛ୍ୱାସଟା ଯେପରି ଅଧିରକ୍ତ । ନଟାଇର ମନେହେଲା ହୁଏତ ନୂଆ କେଉଁ ଅଭିନନ୍ଦନ ନେଇ ରାଜନ ତା ଦୁଆରକୁ ଆସିଛି—ଧୈର୍ଯ୍ୟ ତାର ଆଉ ରହିପାରୁନାହିଁ । ସ୍ୱଭାବସିଦ୍ଧ ମୃଦୁ ହସ ହସ ମୁହଁରେ ସେ ଆସି ଦରଜା ଖୋଲିଦେଲା । ବାହାରେ ଠିଆହୋଇଛି ·ରାଜା—ତା ପଛକୁ ଙ୍‌ମଣଆଦଳର ପ୍ରୌଢ଼ା । ରାଜା ସିଧା ଘରଭିତରକୁ ଅସି ଚାରିଆଡ଼େ ଦୃଷ୍ଟି ବୁଲାଇ ସକୌତୁକରେ କାହାକୁ ଯେମିତି ଖୋଜିବାକୁ ଆରମ୍ଭ କଲା ।

ନଟାଇ ସବିସ୍ମୟେ ପ୍ରଶ୍ନ କଲା—କଣ ?

—କାହିଁ ? ଓସ୍ତାଦଜୀ କାହିଁ ହେ ?

—ଓସ୍ତାଦନ୍ ?

ହା-ହା କରି ହସି ରାଜା କହିଲା—ସବ୍ ଫାଁସ୍ ହୋ ଗୟା ଓସ୍ତାଦ୍, ସବ୍ ଫାଁସ୍ ହୋ ଗୟା । କାଲ୍ ରାତମେ—ସେ ହା ହା କରି ହସି ବେଦମ୍ ହେଲା । କଥାଟା ଆଉ ଶେଷ କରିପାରିଲାନି ।

ନଟାଇ ତଥାପି କଥାଟା ବୁଝିପାରିଲାନି ।

ବୁଝାଇଦେଲା ପ୍ରୌଢ଼ା । ଏତେବେଳଯାକେ ସେ ଦୁଆର ବାହାରେ ଠିଆ ହୋଇ-ଥିଲା, ଏଥର ଘର ଭିତରକୁ ପଶିଆସି ହସିକରି କହିଲା—ମଲା ! ଲୋ ବସନ ! ବାହାରି ଆଲୋ, ଏଇ ଟ୍ରେନ୍‌ରେ ଯିବା ପରା !

ନଟାଇ କହିଲା—ସେ ତ ଏଠି ନାହିଁ ।

—ନାହିଁ ! ତାହେଲେ ? ସେ ଆସରରୁ ବାହାରି ଅଇଲା, ତମେ ତା ସାଙ୍ଗରେ ଆଇଲ । ମୁଁ କହି ବି ଦେଲି ତମକୁ । ତାପରେ ମୁଁ ପଚରାଓଚରା ବି କଲି; ଶୁଣିଲି, ତମରି ଘରେଇ—

ନଟାଇ କହିଲା- ହଁ; କେଇଜଣ ଲୋକ ତାକୁ ବିରକ୍ତ କରୁଥିଲେ ବୋଲି ମୋ ଘରକୁଇ ଆସିଥିଲା । ମୁଁ ଆସି ଦେଖିଲି ଶୋଇରହିଛି । ଦେହରେ କେତେ ଜର । କିନ୍ତୁ ଟିକିଏ ପରେ ବାହାରିଯାଇ ସେଇ ଲୋକ ସାଙ୍ଗରେଇ ଚାଲିଗଲା ।

ପ୍ରୌଢ଼ା ଚକିତ ହୋଇପଡ଼ିଲା । ରାଜାର କୌତୁକ ହାସ୍ୟ ସ୍ତବ୍ଧ ହୋଇଗଲା । ନଟାଇ କହିଲା—କାସେଦ୍ ଶେଖ୍ ସୁଅ ନସ୍ୱାନ୍ ସାଙ୍ଗରେ ଯାଇଚି । ଏଇ ବୁଦାଳିଆ ବରଗଛମୂଳଟାରେ କଥାବାର୍ତ୍ତା ହଉଥିଲା ବୋଧେ । ଆସନ୍ତୁ ଦେଖିବା ।

ସେମାନେ ଆଗେଇଗଲେ ।

ସେଇ ଜାଗାରେଇ ସେ ଥିଲା । ସେ ଚେତନାହତ ପରି ଅସଂଯତ ଦେହରେ ପଡ଼ି-ରହିଥିଲା ।

ବିପୁଳ-ପରିଧି ଗ୍ରୁମ୍ଭାକାରବଡ଼ ବରଗଛଟିର ତଳ ଦେଶଟା ଗ୍ରୁମ୍ଭାନ୍ଧକାର ସକାଶେ ତୃଣହୀନ ପରିଷ୍କାର, ସେଇଠାରେଇ ମାଟିଟା ଉପରେ ବସନ୍ତ ସେତେବେଳ ସୁଦ୍ଧା ଗଭୀର ନିଦ୍ରରେ ଆଚ୍ଛନ୍ନ ହୋଇ ପଡ଼ିରହିଛି । କେଶରାଶି ବିସ୍ରସ୍ତ ଅସଯତ, ସର୍ବାଙ୍ଗ ଧୂଳିଧୂସର, ମୁହଁପାଖରେ କେଇଟା ମାଛି ଭଣ-ଭଣ କରି ଉଡ଼ୁଛନ୍ତି; ପାଖଟାରେ ପଡ଼ିରହିଛି ଗୋଟାଏ ଖାଲି ବୋତଲ, ଗୋଟାଏ ଅଇଣ୍ଠାପତ୍ର । ପାଖକୁ ଗଲାମାତ୍ରେ ଦେଶୀ ମଦର ତୀବ୍ର ଗନ୍ଧ ସମସ୍ତଙ୍କ ନାକରେ ଆସି ପଶିଲା ।

ପ୍ରୌଢ଼ା କହିଲା—ତତେ ମରଣ ହଉନାହିଁ ! ଏଇଆ କରି ମରିବ ହାରାମଜାଦୀ । ବସନ, ଏଇ ବସନ !

ରାଜା ହସି କହିଲା—ବହୁତ ମତୱାଲା ହୋ ଗିୟା ।

ନିତାଇ ଦ୍ରୁତ ଗତିରେ ସେଠାରୁ ଚାଲିଗଲା । ଟିକିଏ ପରେଇ ଫେରିଆସିଲା କପେ ଧୂମାୟମାନ ଚାହା ଧରି । ଦୁଧ ନ ଦେଇ କଞ୍ଚା ଚାହା, ତହିଁରେ ଟିକିଏ ଲେମ୍ବୁରସ । କଞ୍ଚା ଚାହାରେ କୁଆଡ଼େ ମଦନିଶା ଛାଡ଼େ । ମହାଦେବ କବିୟାଲକୁ ସେ ଦେଖିଚି କଞ୍ଚା ଚାହା ଖାଇବାର । ବସନ୍ତ ସେତେବେଳକୁ ଉଠି ବସି ମଥା ଢୋଳଉଛି ଅଥବା ଟଳୁଛି । ପ୍ରୌଢ଼ା କହୁଛି—ମୁଁ କଣ କରିବି କହିଲ ?

—ଏଇ ଚାହାଟା ଖୁଆଇ ଦିଅନ୍ତୁ, ଏଇଲାଗେ ଛାଡ଼ିଯିବ ନିଶାଟା ।

ଚାହା ଖାଇ ସତରେ ବସନ୍ତ ଟିକିଏ ସୁସ୍ଥ ହେଲା । ଏତେବେଳକେ ଯାଇ ସେ ନାଲି ବଡ଼ ଆଖି ମେଲି ଚାହିଁଲା ନିତାଇ ଆଡ଼କୁ ।

ପ୍ରୌଢ଼ା ତାଗିଦ୍ କରି କହିଲା—ଚାଲ୍ ଏଥର ।

ନିତାଇ କହିଲା—ଗାଧୋଇ ଦେଇଥିଲେ ଭଲ କରିଥାନ୍ତେ । ଆରାମ ବି ହେଇଥାନ୍ତା, ଆଉ ଦିହସାରା ଧୂଳି ଲାଗିଛି—

ତାର କଣ୍ଠ ଡୁବିଗଲା ବସନ୍ତର ମଦ୍ଧକଣ୍ଠର ଖିଲ୍‌ଖିଲ୍ ହସରେ । ସେ ଟଳାଟଳି ଉଠି ଠିଆହେଲା, ନିତାଇ ସାମନାକୁ ଆସି ଜଡ଼ିତ କଣ୍ଠରେ କହିଲା—ପୋଛି ଦିଅନା ନାଗର, ଦେଖିବା କେମିତି ଦରଦ !

ନିତାଇ ତା ମୁହଁକୁ ଚାହିଁ ଟିକିଏ ହସିଲା—ହସି କାନ୍ଧରୁ ଗାମୁଛା ଖଣ୍ଡିକ ନେଇ ସଯତ୍ନେ ବସନ୍ତର ସର୍ବାଙ୍ଗର ଧୂଳି ପୋଛିଦେଇ କହିଲା—ଆଚ୍ଛା, ନମସ୍କାର ତା ହେଲେ ।

ପ୍ରୌଢ଼ା ତାକୁ ଡାକିଲା—ବାବା !

ନିତାଇ ବୁଲି ଚାହିଁଲା ।

—ମୋ କଥାଟାର କଣ ହେଲା ବାବା ? ଦଳକୁ ଆସିବା କଥା ?

ନିତାଇ କିଛି କହିବା ଆଗରୁଇ ନିଶା-ବିଭୋର ଝିଅଟା ପୁଣି ଆରମ୍ଭ କରିଦେଲା ସେଇ ହସ । ସେ ହସ ଯେମିତି ତାର ବନ୍ଦ ହବାର ନୁହେଁ ।

ବିରକ୍ତ ହୋଇ ପ୍ରୌଢ଼ା କହିଲା—ମଲା ! ପୋଡ଼ା ମୁହଁରେ ଏମିତି ସର୍ବନାଶିଆ ହସ କାହିଁକି ମ ? ଦମ୍ ଫାଟି ମରିବୁ କି ଲୋ ?

ସେଇ ହସ ଭିତରଦେଇ ବସନ୍ତ କୌଣସି ପ୍ରକାରେ କହିଲା—ଆଲୋ ମୋ ମାଉସୀ ଲୋ—କୋଇଲା ମାଣିକର ବି ମନର ମଣିଷ ଅଛି ଲୋ—କାଲି ରାତିରେ—ହି ହି ହି--- ହି ହି ହି—ହି-ହି-ହି ।

ରାଜା ଏଥର ଅତ୍ୟନ୍ତ ବିରକ୍ତ ହୋଇ ଝିଅଟାକୁ ଗୋଟାଏ ଧମକ ଦେଇ କହିଲା—କ୍ୟୋଁ ଏସା ଫେଁ ଫେଁ କରତା ହେ ?

ବସନ୍ତର ଆଖି ଦିଟା ଜଳିଉଠିଲା; କିନ୍ତୁ ପରେ ପରେଇ ସେ ପୁଣି ହସିବାକୁ ଆରମ୍ଭ କଲା—ହି-ହି-ହି—ହି-ହି-ହି—

ତେଣେ ଷ୍ଟେସନରେ ଟ୍ରେନ୍ ଆସିବାର ଘଣ୍ଟା ପଡ଼ିଗଲାଣି; ଷ୍ଟେସନ ମାଷ୍ଟ୍ର ନିଜେ ଘଣ୍ଟିଟା ଦେଇ ଦେଇ ହାଙ୍କୁଥାନ୍ତି—ରାଜା ! ଏଇ ରାଜା ।

ରାଜା ଛୁଟିଗଲା, ନତୁବା ଗୋଟାଏ ଅଘଟଣ ଘଟିବା କିଛି ଅସମ୍ଭବ ନଥିଲା ।

ନିତାଇ ହସି କହିଲା—ଆଚ୍ଛା, ଆପଣମାନେ ଆସନ୍ତୁ ତା ହେଲେ । ସଙ୍ଗେ ସଙ୍ଗେ ସେ ବି ଆପଣା ବସା ଆଡ଼କୁ ବୁଲିପଡ଼ିଲା ।

ପ୍ରୌଢ଼ା ଏଣିକି ଟାଣ ସ୍ୱରରେ କହିଲା—ବସନ ! ଆସୁଚୁ ନା ଏଇଠେଇଁ ମାତାଲଗିରି ଚାଲିଥିବ ?

ବସନ୍ତ କ୍ଳାନ୍ତିରେ ଶିଥିଳ ପଦରେ ଚାଲିବାକୁ ଆରମ୍ଭ କଲା; କିନ୍ତୁ ହସଟା ତାର ଆହୁରି ବନ୍ଦ ହୋଇନାହିଁ ।

ସହସା ବୁଲି ଠିଆହୋଇ ହାତ ହଲାଇ ଇସାରା କରି ସେ ଚିତ୍କାର କରି କହିଲା—ଚାଲିଲି ହେ !

ନିତାଇ ଆସି ବସିଲା କୃଷ୍ଣଚୂଡ଼ା ଗଛମୂଳେ ।

ତେଣେ ସେତେବେଳକୁ ଟ୍ରେନ୍‌ଟା ଛାଡ଼ିଛି ।

ଟ୍ରେନ୍‌ଟା ଷ୍ଟେସନ ଗୁଡ଼ା ସଶବ୍ଦେ ସାମନା ଦେଇ ପାର ହୋଇ ଯାଉଥିଲା । ଡବା ପରେ ଡବା । ଗୋଟିଏ ଡବାରେ ଝୁମରଆଦଳଟିକ ଦେଖାଗଲା । ବସନ୍ତ ଝିଅଟି ଗୋଟେ ପାଖରେ ଦରଜା ପାଖକୁ କରି ଝରକାରେ ମୁଣ୍ଡ ରଖି ଯେମିତ ଏକଦମ୍ ବଛେଇ ହୋଇ ପଡ଼ିଛି ।

ଅଦ୍ଭୁତ ଝିଅ ! ନଟାଇ ହସିଲା । ଝୁମର ସେ କେତେ ଦେଖିଛି । କବି-ଗାଉଣା କରିବ ବୋଲି ଏମାନଙ୍କ ସଙ୍ଗରେ ମିଳାମିଶା ବି ଢେର୍ କରିଛି; କିନ୍ତୁ ଏପରି ନିଷ୍ଠୁର ବ୍ୟବସାୟିନୀ କ୍ଷୁରଧାର ଝିଅ ସେ ଦେଖିନାହିଁ । କ୍ଷୁରଧାର ନୁହେ, ଜ୍ୱଳନ୍ତ । ଝିଅଟା ଯେପରି ଜଳୁଛି । ତେବେ ଝିଅଟାର ଗୁଣ ଅଛି, ରୂପ ଅଛି । ଆଶ୍ଚର୍ଯ୍ୟ ଝିଅ ! ଗନ୍ଧ ଗାଡ଼ିର ଗୀତଟା ତାହାର ମନେ ପଡ଼ିଗଲା—

"ଏଇ ଭୁଲଟା କାହାର—ହାୟରେ !
ମନମତାଣି ବାସ୍ନା ଭରି ତା ବୁକୁରେ
କରତକଣ୍ଟା ଦେଇ ଘେରିଲା କିଆଫୁଲର ଧାର
ଏଇ ଭୁଲଟା କାହାର ! ହାୟ ରେ !"

ଟ୍ରେନ୍‌ଟା ଚାଲିଗଲା । ନଟାଇ ବସିରହିଲା । ଚାହିଁ ରହିଲା ରେଳ ଲାଇନ୍‌ର ବାଙ୍କ ଆଡ଼େ, ଯେଉଁଠି ସମାନ୍ତରାଳ ଲାଇନ୍ ଦୁଇଟି ଗୋଟିଏ ବିନ୍ଦୁରେ ମିଳାଇ ଯାଇଛି ବୋଲି ମନେହୁଏ, ସେଇ ଜାଗାଟା ଆଡ଼କୁ । ବସନ୍ତ ତ ଚାଲିଗଲା, ଆଉ ହୁଏତ କେବେହେଲେ ଦେଖା ବି ହେବ ନାହିଁ । ଅଦ୍ଭୁତ ଝିଅ ! ଘଡ଼ି-ଘଡ଼ିକେ ଝିଅଟାର ଗୋଟିଏ ଗୋଟିଏ ରୂପ; ରାତିକ ଭିତରେ ତାକୁ ନେଇକରି ହିଁ ଛନ ଛନଟା ଗୀତ ମନକୁ ଆସିଛି । ସେ ଟିକିଏ ଉଦାସ ହୋଇ ରହିଲା । ଅକସ୍ମାତ୍ କୁଆଡ଼ୁ ଗୋଟିଏ ସଚେତନତା ଆସି ତାହାକୁ ଦୋହଲାଇ ଦେଲା । ସେଇ ଜାଗାରେଇ ବାଙ୍କର ସେହି ବିନ୍ଦୁଟିରେ କେତେବେଳେ ଗୋଟିଏ ସ୍ୱର୍ଣ୍ଣବିନ୍ଦୁ ଝକମକ କରି ଉଠିବ; ତାହାପରେ ଦେଖାଯିବ ସେହି ସ୍ୱର୍ଣ୍ଣବିନ୍ଦୁଟି ତଳେ ଚଳନ୍ତ ଗୋଟିଏ କାଶତଣ୍ଡି ଫୁଲ । ସ୍ୱର୍ଣ୍ଣବିନ୍ଦୁ-ବିଚ୍ଛୁରିତ ଜ୍ୟୋତିରେଖାଟି ବେଳେ ବେଳେ ଗୋଟିଏ ଗୋଟିଏ ଚକିତ ଚମକରେ ଆଖିରେ ଲାଗି ଆଖି ଝଲସାଇ ଦେବ । ଅସମାପ୍ତ ଗୀତଗୁଡ଼ିକ ତାହାର ଅସମାପ୍ତ ହିଁ ରହିଲା; ରାସ୍ତା ଉପରେ ସ୍ଥିର ଦୃଷ୍ଟି ପକାଇ ନଟାଇ ଯେପରି ପ୍ରତ୍ୟାଶା-ବିଭୋର ହୋଇ ବସିରହିଲା ।

ଠାକୁରାଣୀ କେତେବେଳେ ଆସିବ ? କାହିଁ, ଠାକୁରାଣୀ ଆସୁଛି କେଉଁଠି ?

ଏଇ କଣ ସେଇ ? ନା, ସେ ତ ନୁହେଁ ! ନଟାଇ ଆଖିର ଭ୍ରମ ଛଡ଼ା କିଛି ନୁହେଁ ।

ମନର ପ୍ରତ୍ୟାଶିତ କଳ୍ପନା—ଏଇ ଧନ-ଆଲୁଅରେ ବି ମରୁଭୂମିର ମରୀଚିକା ବେଳେ ବେଳେ ସ୍ପଷ୍ଟ ହୋଇ ହୋଇ ଫୁଟିଉଠୁଛି । ଏଇ ଦେଖାଯାଉଛି, ପୁଣି ମିଳାଇ ଯାଉଛି । ନିତାଇ ହସିଲା । ଏଇଲା ତ ମୋଟେ ଦଶଟା ବାଜିଛି । ଠାକୁରଝି ଆସେ ଗାଡ଼ିର କଣ୍ଟା ଭଳି ବାରଟା ଗାଡ଼ିର ଠିକ୍ ଆଗରୁ !

ତଥାପି ସେ ଉଠି ଗଲାନାହିଁ । ଗଛଗଣ୍ଡିରେ ଭରାଦେଇ ଶୋଇପଡ଼ିବାକୁ ଚେଷ୍ଟା କଲା । ଘଣ୍ଟାଗୁଡ଼ାକ ଆଜି ଯେମିତି କଟିବାକୁଇ ରାଜି ନୁହନ୍ତି ।

ହେଇ ! ହଁ, ହେଇ ସେ ଆସୁଛି । ଚଳନ୍ତ ଧଳା ଗୋଟିଏ ରେଖାର ମଥାରେ ସ୍ୱର୍ଣ୍ଣାଭ ବିନ୍ଦୁଟିଏ । କିନ୍ତୁ ନା, ସେ ତ ନୁହେଁ, ରେଖାଟିର ଗତିଭଙ୍ଗୀ ତ ସେପରି ଦ୍ରୁତ ନୁହେଁ । ରେଖାଟି ମଧ୍ୟ ସେପରି ସରଳ ଓ ଦୀର୍ଘ ନୁହେଁ ।

ହେଇ, ଆଉ ଗୋଟିଏ ରେଖା, ସେ ବି ନୁହେଁ ।

ନିତାଇର ଭୁଲ୍ ହୋଇନାହିଁ । ରେଖାଗୁଡ଼ିକ ନିକଟବର୍ତ୍ତୀ ହେଲେ ସେଗୁଡ଼ିକ ନାରୀମୂର୍ତ୍ତି ହୋଇଉଠିଲେ ଠିକ୍; ମୁଣ୍ଡରେ ତାଙ୍କର ଡାଲା ବି ଥିଲା । ସେମାନେ ବି ଏ ଗ୍ରାମକୁ ଦୁଧ ବିକି ଆସନ୍ତି । କିନ୍ତୁ ସେମାନଙ୍କ ଭିତରେ କେହି ଠାକୁରଝି ନୁହନ୍ତି । ଗୋଟି ଗୋଟି କରି ସେମାନେ ସମସ୍ତେ ଗଲେ ବାହାରି; କିନ୍ତୁ ଠାକୁରଝି କାହିଁ ? କାହିଁ ?

ବାରଟା ବେଳର ଟ୍ରେନ୍‌ଟା ଚାଲିଗଲା ।

ରାଜା ଆସି ଡାକିଲା—ଓସ୍ତାଦ୍ !

ସଚକିତ ହୋଇ ନିତାଇ ହସିକରି କହିଲା—ରାଜନ !

—କ୍ୟା ଧ୍ୟାନ କରତା ଭାଇ, ହିଆଁ ବଇଠକେ ? ନୟା କୁଛ୍ ଗୀତ୍ ବନାୟା ?

—ନାହିଁ ତ । ଅପ୍ରସ୍ତୁତ ହେଲାପରି ନିତାଇ ଖାଲି ଟିକିଏ ହସିଲା ।

—ତୁହ୍ମାରି ଉପର ହାମ ଘୋଷା କରେଗା ।

—କାହିଁକି ରାଜନ, କାହିଁକି ? କଣ ଅପରାଧ କଲି ଭାଇ ?

—ଓ ହି ଝୁମରବାଲୀ ବୋଲା ତୁହ୍ମାରେ ଦିଲ୍‌କେ ଆଦମୀ, ମନକେ ମଣିଷ —

ନିତାଇ ହା-ହା କରି ହସି ଉଠିଲା । ତାପରେ ରାଜାର ହାତ ଧରି ଟାଣି କହିଲା — ଚାଲ୍, ଚାହା ଖାଇ ଆସିବା । ଚାହାପିଆ ହେଇନାହିଁ, ଠାକୁରଝି ଆଜି ଦୁଧ ନେଇ କରି ଆସିନାହିଁ । ଝୁମରବାଲୀ କଥାରେ ତୁମେ ବିଶ୍ୱାସ କରିଛ ? ହଁ ରାଜନ—ଅଛି ଜଣେ ମୋର ମନର ମଣିଷ । ମୋର ମନର ମଣିଷ ତୁମେ ରାଜନ, ତୁମେ ।

—ହାମ୍ ? ରାଜା ବିକଟ ହସରେ ସ୍ଥାନଟି ଉଚ୍ଛଳିତ କରିଦେଲା । ସେ ତାକୁ କୁଣ୍ଢେଇ ଧରି କହିଲା—ତୁମ୍ଭୀ ଲେଗା ଓସ୍ତାଦ୍ ? ପୁଣି ସେଇ ବିକଟ ହସ । ସେ ହସର ପ୍ରତିଧ୍ୱନିରେ ଆକାଶ ହସିବାକୁ ଲାଗିଲା, ବତାସ ହସିବାକୁ ଲାଗିଲା ।

# ବାର

ଦିନେ, ଦିଦିନ, ତିନିଦିନ—

ଲଗ ଲଗ ତିନିଦିନ ଠାକୁରଝୀ ଆସିଲାନି । ଚତୁର୍ଥ ଦିନରେ ଉତ୍କଣ୍ଠିତ ହୋଇ ନିତାଇ ସ୍ଥିର କଲା, ଆଜି ଠାକୁରଝୀ ନ ଆସିଲେ ଠାକୁରଝୀର ଗାଆଁକୁ ଯାଇ ଖବର ନେଇ ଆସିବ ।

ବାରଟାବେଳର ଗାଡ଼ି ଚାଲିଗଲା । ସେଦିନ ବି ଠାକୁରଝୀ ଆସିଲା ନାହିଁ । ଅନ୍ୟାନ୍ୟ ମାଇପେ ଯିଏ ଦୁଧ ଦବାକୁ ଆସନ୍ତି, ସେମାନେ ଆସି ଫେରିଗଲେ । ନିତାଇର ବାରବାର ଇଚ୍ଛା ହେଲା—ସେମାନଙ୍କୁ ପଚାରି ଖବର ନେବ; କିନ୍ତୁ ସେଇଟା ବି ସେ କୌଣସିମତେ କରିପାରିଲାନି । କିପରି ସଙ୍କୋଚ ବୋଧ କଲା । ନିଜେ ହିଁ ସେ ଆଶ୍ଚର୍ଯ୍ୟ ହୋଇଗଲା । ଥରକୁଥର ମନେ ହେଲା, କାହିଁକି ଏ ସଙ୍କୋଚ ? କୋଉ କଥାକୁ ସଙ୍କୋଚ ? ତଥାପି ସେ ସଙ୍କୋଚ ନିତାଇ ଦବାଇ ପାରିଲା ନାହିଁ । ଚୁପ୍‌ହୋଇ ସେ ନିଜ ବସାକୁ ଆସି ଭାବିବାକୁ ଲାଗିଲା । କୌଣସି ବାହାନାରେ ଠାକୁରଝୀର ଶ୍ୱଶୁରଘର ଗାଁକୁ ଚାଲିଗଲେ ହୁଅନ୍ତାନି ? ଭାବିଚିନ୍ତି ସେ ସ୍ଥିର କଲା—ହଂସ, ମୁର୍ଗୀ ଅଥବା ଅଣ୍ଡା କିଣିବା ବାହାନାରେ ସେ ଯିବ । ଠାକୁରଝୀର ଶ୍ୱଶୁରଘର ହଂସ, ମୁର୍ଗୀ ଅଛି ସେ ଜାଣେ । ଘରକରଣାର ତୁଚ୍ଛତମ ସମ୍ବାଦଟି ବି ଠାକୁରଝୀ ତାକୁ କହିଅଛି ! କାନ୍ଥରେ କୋଉଠି ଗୋଟାଏ ଛୁଞ୍ଚି ପୋତା ହେଇଛି, ନିତାଇ ସେଇଟିକି ଯାଇ ସ୍ୱଚ୍ଛନ୍ଦରେ ଆଖିବୁଜି ଘେନି ଆସିପାରେ ।

—ଓସ୍ତାଦ୍ ଅଛ କି ହେ ? ରାଜାର କଣ୍ଠସ୍ୱର ।

ନିତାଇ ଆଶ୍ଚର୍ଯ୍ୟ ହୋଇଗଲା, ରାଜା ବଂଗଲାରେ ବାତ୍ କହୁଛି ! ବିସ୍ମିତ ହୋଇ ସେ ହିନ୍ଦୀରେ ଉତ୍ତର ଦେଲା—ରଜନ୍, ଆଓ ମହାରାଜ, କ୍ୟା ଖବର୍ ?

ରାଜା ଆସି ଖବର ଦେଲା—ବିଷଣ୍ଣ ଭାବରେ ବଙ୍ଗଲାରେଇ କହିଲା—ଖରାପ ଖବର ଓସ୍ତାଦ୍, ଠାକୁରଝୀ ନେଇ ବଡ଼ ମୁଷ୍କିଲ୍ ହେଇଛି ଭାଇ !

ନିତାଇର ଛାତି ଭିତରଟା ଧଡ଼ାସ୍ କରି ପଡ଼ିଲା । ସେ କୌଣସି ପ୍ରଶ୍ନ କରି ପାରିଲାନି, ଉତ୍କଣ୍ଠିତ ସ୍ତବ୍ଧ ମୁଖରେ ରାଜାର ମୁହଁ ଆଡ଼କୁ ଚାହିଁରହିଲା ।

—ଆଜିକି ତିନିଦିନ ହବ, କଣ ହେଇଛି ଭାଇ ! ଦେଖିଛ ତ କେମିତି ଭଲ ପିଲା—ସୁନାପିଲା ସେ, ଶାଶୁ-ଶଶୁର ନଣନ୍ଦ ମର୍ଦ ସମସ୍ତଙ୍କ ସାଙ୍ଗରେ କଳିକଜିଆ କରୁଛି—ମୁଣ୍ଡ

ପିଟୁଛି । କାଲି ରାତରୁ ପୁଣି ମୂର୍ଚ୍ଛା ହେଇଯାଉଛି । ଦାନ୍ତ ପଡ଼ିଯାଉଛି, ହାତଗୋଡ଼ ଲଠି କରି ଦେଉଛି ।

ଅପରସୀମ ଉଦ୍‌ବେଗରେ ନଟାଇର ଗୁଡ ଭିତରଟା ଅସ୍ଥିର ହୋଇପଡ଼ିଲା ! ରାଜାର ହାତ ଦୁଇଟା ଶକ୍ତ କରି ଧରି କହିଲା—ତମେ ଦେଖିବାକୁ ଯିବନି ରାଜନ ?

ରାଜା କହିଲା—ସ୍ତ୍ରୀ ଯାଇଛି ଦେଖିବାକୁ, ଫେରୁ ସେ । ମୁଁ ଉପରବେଳଆ ଯିବି ।

—ମୁଁ ବି ଯିବି ।

ନଟାଇର ଆଖିକି ପାଣି ଆସିଗଲା, ମୁଣ୍ଡ ତଳକୁ କରି ସେ ତାହା ଗୋପନ କଲା ।

ରାଜା ଗୋଟାଏ ଦୀର୍ଘନିଶ୍ୱାସ ପକାଇ କହିଲା—ବଡ଼ ଭଲ ପିଲାଟା ଓସ୍ତାଦ୍ ! ପୁଣି କିଛି ସମୟ ପରେ ରାଜା କହିଲା—ଓଃ, ଠାକୁରଝିର ଘଇତାଟି ଡହଳ-ବିକଳ ହୋଇ ଭେଁ ଭେଁ କରି କାନ୍ଦୁଛି । ପିଲାଲୋକ ତ, ଏବେ ଜାଣି ଭାବବେଭାରଟି ହେଇଚି ଠାକୁରଝି ସାଙ୍ଗରେ । ବିଚରା ! ରାଜା ଟିକିଏ ମ୍ଳାନ ହସ ହସିଲା ।

ଅପ୍ ଅପ୍ କରି ଦି' ବୁନ୍ଦା ଲୁହ ନଟାଇର ଆଖିରୁ ଏଥର ଝରିପଡ଼ିଲା । ସେ ଶୀଘ୍ର ଶୀଘ୍ର ଖେଳଛଳରେ ଆଙ୍ଗୁଠିରେ ଲୁହର ଚିହ୍ନ ଦି'ଟା ବିଲୁପ୍ତ କରିଦେଲା । ଟିକିଏ ପରେ ଗୋଟାଏ ଗଭୀର ଦୀର୍ଘନିଶ୍ୱାସ ପକାଇ ସେ ଡାକିଲା—ରାଜନ !

—ଓସ୍ତାଦ୍ !

—ଡାକ୍ତର କବିରାଜ କିଛି ଡକାହେଇଚନ୍ତି ?

ହତାଶାରେ ଓଠଟା ଦପଟକୁ ଟାଣିନେଇ ରାଜା କହିଲା—ଏଥିରେ ଆଉ ଡାକ୍ତର କବିରାଜ କରିବେ କଣ ଓସ୍ତାଦ୍ ! ଏ ହେଲା ନିଶ୍ଚେ ଜୋଉ ଅପଦେବତା; ନଇଲେ ଡାହାଣୀ ଚିରୁଗୁଣୀ, କି କୋଉ ଦୁଷ୍ଟ ଲୋକର କାମ !

କଥାଟା ନଟାଇ ମନକୁ ପାଇଲା । ଚକିତରେ ମନେ ହେଲା, ତାହେଲେ କଣ ସେଇ କ୍ଷୁରଧାର ଝିଅଟାର କାମ ! ଝୁମରିଆଦଳର ସ୍ୱୈରିଣୀ—ସେମାନଙ୍କୁ ତ କେତେ ବିଦ୍ୟା ଜଣାଥାଏ, ବଶୀକରଣୀରେ ସେମାନେ ତ ସିଦ୍ଧହସ୍ତ ।

ରାଜା କହିଲା—ମା କାଳୀଙ୍କ ପାଖରେ କାଳସୀ ଆଗରେ ଛିଡ଼ା କରାଇବେ ଆଜି ଠାକୁରଝିକି । କଥା କଣ ବାରତା କଣ ଆଜି ସବୁ ଜଣାଯିବ ଯେ !

ଆଉରି କିଛିବେଳ ବସିରହି ରାଜା ଉଠି ଠିଆହେଲା ଓ ନଟାଇର ହାତ ଧରି ଟାଣି କହିଲା—ଆଓ ଭଇୟା, ଥୋଡ଼ାସା ଗୃସ୍ତୁ ପିଏଗା ।

ଏତେବେଳେ ଯାଇ ହନୀ କହିଲା, କେତେବେଳ ପରେ ରାଜା ଯେମିତି ସହଜ ହୋଇଉଠିଛି ।

ରାଜାର ଦରବାରରେ ବସିଥିଲା ନଟାଇ । ରାଜାର ସ୍ତ୍ରୀ ଠାକୁରାଣୀର ଶ୍ୱଶୁରଘରକୁ ଯାଇଛନ୍ତି, ଏବେ ବି ଫେରିନି; କାଳସୀ ଶେଷ ହେଲେହିଁ ସମ୍ବାଦ ଘେନି ଫେରିଆସିବ —ସେହି ସମ୍ବାଦର ପ୍ରତ୍ୟାଶାରେ ଉତ୍‌କଣ୍ଠିତ ଓ ବ୍ୟଗ୍ର ହୋଇ ନଟାଇ ବସି ରହିଲା । ରାଜା—ଦୁଃଖକଷ୍ଟ ଶୋକ ସନ୍ତାପ ଭିତରେ ବି ରାଜା । ଯେ ପକୁଡ଼ି ମୁଢ଼ି, ନ ଇଗେଣି, ଆଳୁଚପ୍, କଞ୍ଚାଲଙ୍କା, ପିଆଜ, ତା ସାଙ୍ଗକୁ କିଛି ସନ୍ଦେଶ ନେଇ ହାଜର ହେଲା !

ନଟାଇ କହିଲା—ଏଗୁଡ଼ା କଣ ହେବ ? ଏଇ ସମାରୋହ ତାକୁ ଭଲ ଲାଗୁନଥିଲା ।

—ଖାନେ ତୋ ହୋଗା ଭଇୟା; ପେଟ୍ ତୋ ନେହିଁ ମାନେଗା ଜୀ ! ଲଗାଓ ଖାନା । ତାପରେ ସେ ଚିତ୍କାର ଆରମ୍ଭ କଲା—ଏଇ ଛୋକା ! ଏ ବେଟା !

ଡାକୁଥିଲା ସେ ପୁଅଟାକୁ । ରାଜାର ପୁଅଟାର ଧରଣଟା ଅନେକ ପୁରାଣମାନଙ୍କରେ ପୂର୍ବକାଳର ଯୁବରାଜଙ୍କ ପରି ଠିକ୍, ରାତି ନାହିଁ ଦିନ ନାହିଁ ସେ ମୃଗୟା ନେଇ ବ୍ୟସ୍ତ, ଗୋଟାଏ ଗୁଲେଲ ଧରି ପଡ଼ିଆବାଡ଼ିରେ ବୁଲୁଥାଏ । ବଣି, ଘରଚଟିଆ, କୋଇଲି, କାକ—ଯାହା ପାଏ, ତାହାହିଁ ହତ୍ୟା କରେ । ହତ୍ୟାର ଉଦ୍ଦେଶ୍ୟରେ ହତ୍ୟା; ଖିଆପିଆର ଲୋଭ ନାହିଁ । କେତେବେଳେ କେମିତି ଚଢ଼େଇଛୁଆ ଧରି ପୋଷେ ଏବଂ ତା ଲାଗି କଙ୍କି ଶିକାର କରି ବୁଲେ । ଯୁବରାଜ ବୋଧହୁଏ ଅଳ୍ପ ଦିନେ ଦୂରରେ କୋଉଠି ଯାଇ ପହଞ୍ଚିଛି, ଜବାବ୍ ମିଳିଲା ନାହିଁ । ରାଜା ଯାଇ ଚିତ୍କାର କରି ଡାକିଲା—ହେଇ ପୁଅର କି ବଚ୍ଚ, ହାରାମଜାଦୋଆ —

ତଥାପି କିଛି ସ୍ୱର-ଶବ୍ଦ ମିଳିଲାନି । ରାଜା ନଟାଇକୁ କହିଲା—କିଧର୍ ଗୟା ଓସ୍ତାଦ୍ ! ତାପରେ ହସି କହିଲା—ଉ ବାତ୍ ଠୋ—କ୍ୟା ବୋଲତା ତୁମ୍ ଓସ୍ତାଦ୍ ? କ୍ୟା ? ଅଗନାଅଗନ ବନସ୍ତ କା ଉଧର—କ୍ୟା ? ମାୟାବିନୀ, ନା କ୍ୟା ?

ଏମିତିକା ଡାକହାକରେ ଜବାବ ନ ପାଇଲେ ନଟାଇ କହେ—ଯୁବରାଜ ଅଗନା-ଅଗନ ବନସ୍ତ ଡେଇଁ ମାୟାବିନୀ କଙ୍କି କି ପକ୍ଷିଣୀ ପଛରେ ଧାଇଁଛି ରାଜନ ।

ଆଜି କିନ୍ତୁ ନଟାଇର ସେକଥା ବି ଭଲ ଲାଗିଲାନି । ଗୋଟାଏ ଦୀର୍ଘନିଶ୍ୱାସ ପକାଇ ସେ ଟିକିଏ ମ୍ଳାନ ହସ ହସିଲା, ତାହା ବି କେବଳ ରାଜାର ମନରକ୍ଷା ସକାଶେ ।

ରାଜା ବି ଆଉ ପୁଅର ଖୋଜଖବର ନେଲାନାହିଁ, ଦୁଇଟା ପାତ୍ର ବାହାର କରି ଆହାର୍ଯ୍ୟ ଭାଗ କରି ଗୋଟିଏ ନଟାଇକୁ ଦେଇ, ଅନ୍ୟଟି ନିଜେ ଟାଣିନେଇ ବିନା ବାକ୍ୟବ୍ୟୟରେ ଖାଇବାକୁ ଆରମ୍ଭ କରିଦେଲା । କହିଲା—ଜାନେ ଦୋ ଭଇୟା ପୁଅର୍ କି ବଚ୍ଚେ କୋ, ନସୀବ୍‌ମେ ଭଗବାନ୍ ଉସ୍ କୋ ନହିଁ ଦିଆ, ହାମ୍ କ୍ୟା କରେଗା ?

ନତାଇ ସ୍ତବ୍ଧ ହୋଇ ରହିଲା । ଯେ ଭାବୁଥିଲା ଠାକୁରାଣୀ କଥା, ଆଖିଆଗରେ ହେମନ୍ତର ବିଲ ପ୍ରାନ୍ତରରେ ଫସଲ ଓ ଘାସରେ ପୀତାଭ ରଙ୍ଗ ହୋଇଛି, ତାହାର ପ୍ରତିଚ୍ଛଟାରେ ଝରିରେ ବି ପୀତବର୍ଣ୍ଣର ଧାସ । ଆକାଶଠାରୁ ମାଟିଯାକେ ପୀତାଭ ଖରା ଝଲମଲ କରୁଅଛି । ଦୂରଆଡ଼େ ଦିଗନ୍ତର ଶୂନ୍ୟଲୋକ ଯେପରି ମୃଦୁ କମ୍ପନରେ ଥରୁ-ଅଛି ବୋଲି ମନେ ହେଲା । ତାହାର ଭିତରେ ଘରପାଖରେ ଖାଲି ନତାଇ ଦେଖିବାକୁ ପାଇଲା ସ୍ୱର୍ଣ୍ଣବିନ୍ଦୁଶୀର୍ଷ କାଶତଣ୍ଡୀ ଫୁଲ—ଏଆଡ଼େ, ସେଆଡ଼େ, ଘରଆଡ଼େ । କୁଆଡ଼କି କିଛି ବେଳ ଚାହିଁରହିଲେଇ ମନେହେଲା କମ୍ପମାନ ଦୂର ଦିଗନ୍ତ ମଧ୍ୟରେ ଗୋଟିଏ ସ୍ୱର୍ଣ୍ଣବିନ୍ଦୁଶୀର୍ଷ କାଶତଣ୍ଡୀଫୁଲ ଦୋହଲୁଛି, ଥରୁଛି ।

କ୍ଷୁଧାର୍ତ୍ତ ଗ୍ରାହକେ ରାଜା ଖାଇବା ଶେଷ କରି କହିଲା—ଖା ଲୋ ଭାଇ ଓସ୍ତାଦ୍ !

ମ୍ଳାନ ହସି ନତାଇ କହିଲା—ନା ।

—ଦୂର୍, ଦୂର୍, ଖା ଲେଓ । ପେଟ୍ ମେ ଯାନେ ସେ ଗୁଣ କରେଗା । ତବିୟତ୍ ଠିକ୍ ହୋ ଯାଏଗା ।

—ତବିୟତ୍ ବେଶ୍ ଭଲ ଅଛି ରାଜନ, କିଛି ମୁହଁକୁ ରୁଚିବନି ।

—କାହେ ? ମୁଖ ମେ କ୍ୟା ହୁଆ ଭାଇ ?

ରାଜାର ହାତ ଦୁଇଟି ଚପିଧରି ନତାଇ ଯେପରି ଅକସ୍ମାତ୍ କହିଲା—ରାଜନ, ସେଦିନ ତୁମେ ମତେ ପଚାରୁଥିଲନା ମୋର ମନର ମଣିଷ କଥା ।

—ହଁ । ରାଜା କଥାଟା ବୁଝିପାରିଲାନି, ଓସ୍ତାଦ୍ ମୁହଁକୁ ଚାହିଁରହିଲା ।

—ମୋର ମନର ମଣିଷ, ରାଜନ ! ସେଇ ଠାକୁରାଣୀଇ ! ଠାକୁରାଣୀ ମୋର ମନର ମଣିଷ ! କହୁଁ କହୁଁ ଥପ୍‌ଥପ୍ କରି ନତାଇ କାନ୍ଦିପକାଇଲା ।

ରାଜାର ଖାଇବା ବନ୍ଦ ହୋଇଗଲା, ବିସ୍ମୟ-ବିସ୍ଫାରିତ ଆଖିରେ କବିୟାଲ ଆଡ଼କୁ ସେ ଅନାଇଁ ରହିଲା । ସେ ବିଶ୍ୱାସ କରି ପାରୁନଥିଲା । ଅନ୍ୟ ସମୟ ହୋଇଥିଲେ ସେ ହୁଏତ ବିକଟ ହାସ୍ୟରେ କଥାଟାକୁ ଏଇ ମୁହୂର୍ତ୍ତକେ ପୃଥିବୀମୟ ପ୍ରଚାର କରି ଦେଇଥାନ୍ତା; କିନ୍ତୁ ଠାକୁରାଣୀ ଲାଗି ତାର ବେଦନା—ଭାରାକ୍ରାନ୍ତ ମନ ଆଜି ତାହା ପାରିଲା ନାହିଁ । ସ୍ତବ୍ଧ ହୋଇ ଦୁଇଜଣଯାକ ବସିରହିଲେ ।

କେତେବେଳ ପରେ କେଜାଣି, ଚିତ୍କାର କରି କରି ପ୍ରବେଶ କଲା ରାଜାର ସ୍ତ୍ରୀ ।

ବ୍ୟଗ୍ର ଉତ୍କଣ୍ଠିତ ନତାଇ ପ୍ରଶ୍ନ କରିବାକୁ ଯାଇ ତାହା ମନ ଭିତରେ ଗୁଞ୍ଜିତ ଶତ ପ୍ରଶ୍ନ ମଧ୍ୟରୁ କମ୍ପିତ କଣ୍ଠରେ କୌଣସିମତେ ଉଚ୍ଚାରଣ କଲା, କେବଳ ପଦେ କଥା—କଣ ହେଲା ?

ରାଜାର ସ୍ତ୍ରୀ ଯେମିତି ଅଗ୍ନିପୁଷ୍ଟ ବିସ୍ଫୋରକ ପରି ଫାଟିପଡ଼ିଲା—ଡାହାଣୀ, ଡାକୁଣୀ,

ରାକ୍ଷସ—

ତାହାପରେ ସେ ଅଶ୍ଳୀଳ କଦର୍ଯ୍ୟ ଅଶ୍ରାବ୍ୟ ବିଶେଷଣରେ ନଡାଇକୁ ବିପର୍ଯ୍ୟସ୍ତ କରି ଦେଲା ଏବଂ ନଡାଇର ମୁହଁ ଉପରେ ଆଙ୍ଗୁଠି ଦେଖାଇ କହିଲା—ଛିଇ, ଛିଇ, ଛିଇ ! ତୋ ନଜର ପଡ଼ି ପିଲ୍ଟିଙ୍ଗିଟିର ଆଜି ଏଇ ଅବସ୍ଥା ହେଇଚି । ଏତେ ଲୋଭ ତୋର ? ତୋ' ମନରେ ଏତେ ପାପ ?

ଅଜସ୍ର ଅଶ୍ରାବ୍ୟ ଗାଳିଗୁଲଜ ଭିତରୁ ବିବରଣଟା ଜଣାଗଲା । ଆଜି ଠାକୁରଝୀକୁ କାଳୀ ମାଆଙ୍କ ଆଗରେ ଛିଡ଼ା କରିହୋଇଥିଲା । ସକାଳୁ ଉପବାସୀ ରଖି ଦ୍ୱିପ୍ରହରର ଖରାରେ ତାହାକୁ ଖଣ୍ଡିଏ ମନ୍ତ୍ରପୂତ ପିଢ଼ା ଉପରେ ଠିଆକରାଇ, ପ୍ରଚୁର ଝୁଣାଧୂପ ଦେଇ କାଳୀ ମା'ଙ୍କ କାଳସୀ ଗୋଗ୍ରାଏ ଝାଡ଼ୁ ଧରି ସାମନାରେ ଛିଡ଼ାହୋଇ ପ୍ରଶ୍ନ କରିଥିଲା—କାଳୀ, କରାଳୀ, ନରମୁଣ୍ଡମାଳିନୀ ! ଭୂତ, ପେରେତ, ଡାକୁଣୀ, ଯୋଗିନୀ, ହାକିନୀ, ଶାକିନୀ, ରାକ୍ଷସ, ପିଶାଚ, ଯେ ମନ୍ଦ କରିଛି ମା, ତାକୁ ତମେ ନେଇଆଣ ଧରି ! ତାର ରକ୍ତ ତମେ ଖାଅ ମା ।

ଠାକୁରଝୀ ଥରଥର କରି ଥରିଥିଲା ।

—କି' କହୁ ? କିଏ ତତେ ଏମିତି କରିଚି କି' ? ମା କାଳୀଙ୍କ ଆଜ୍ଞା !

ଠାକୁରଝୀ ତଥାପି କୌଣସି କଥା କହୁନାହିଁ, କେବଳ ଉନ୍ମାଦଭଳି ଦୃଷ୍ଟିରେ ମୂହିଁକରି ଯେମିତି ଥରୁଥିଲା ସେଇମିତି ଥରିଲାଗିଲା । ଏଥର ବିକଟନାଦରେ ଦୁର୍ବୋଧ ଅନୁସ୍ୱାରବହୁଳ ମନ୍ତ୍ର ଉଚ୍ଚାରଣ କରି କାଳସୀ ମନ୍ତ୍ରପୂତ ଝାଡ଼ୁରେ ତାହାକୁ ପ୍ରହାର କରିଥିଲା । ସେଇଠୁ ଅଧୀର ଅସ୍ଥିର ଠାକୁରଝୀ କହିଥିଲା—କହୁଚି, କହୁଚି, ମୁଁ କହୁଚି ।

ସେ ନାଁ ଧରିଛି ନଡାଇର; କହୁଛି—ଓସ୍ତାଦ୍, କବିୟାଲ । ମତେ ନାଲିଫୁଲ ଦେଲା । ତାହାପରେ ସେ ଉଦ୍‌ଭ୍ରାନ୍ତ ମୃଦୁସ୍ୱରରେ ଗୀତ ଆରମ୍ଭ କରି ଦେଇଥିଲା—

"କାଲା କେଶେ ଦେଖିଚ କି ରଙ୍ଗଫୁଲ କମିଆଁ ?"

ରାଜାର ସ୍ତ୍ରୀର ମନେପଡ଼ିଯାଇଥିଲା—ନଡାଇର ବସାର ଝରକାବାଟେ ସେ ଯାହା ଦେଖିଥିଲା—ନଡାଇ ଠାକୁରଝୀର ବାଳରେ ଫୁଲ ଗୁଞ୍ଜିଦେଉଥିଲା । ସେ କଥାଟାକୁ ସମର୍ଥନ କରି ସତକାରେ ସବୁ ପ୍ରକାଶ କରି ଦେଇଛି ।

ବାକିଟା ଆଉ ଠାକୁରଝୀକି କହିବାକୁ ପଡ଼ିନାହିଁ । ରାଜାର ସ୍ତ୍ରୀ ଚିତ୍କାର କରି କରି

ସବୁକିଛି ପ୍ରକାଶ କରିଦେଇଛି । ଅବଶେଷରେ ଏଠାକୁ ଆସି ନିତାଇଙ୍କ ଗାଳିଗୁଳଜରେ ଶରବିଦ୍ଧ ଖ୍ରୀଷ୍ଟ ଭଳି ଜର୍ଜରିତ କରିଦେଲା ।

ଅନ୍ୟ ଦିନ ହୋଇଥିଲେ ରାଜା ସ୍ତ୍ରୀର ବାଳକୁ ମୁଠେ ଧରି ପାଞ୍ଚଣ ପ୍ରହାରରେ ତାର ମୁହଁ ବନ୍ଦ କରିଥାନ୍ତା; ଆଜି କିନ୍ତୁ ସେ ବି ଯେପରି ପଙ୍ଗୁ ହୋଇଗଲା । ନିତାଇ ମଥା ପୋତି ଯେମିତି ବସିଥିଲା, ସେଇମିତି ବସିରହିଲା । ଗାଳିଗୁଳଜ ଅଭିସମ୍ପାତ ବିଶେଷରେ ଠାକୁରଝୀ ଯାହା କହିଛି, ସେହି କଥାଗୁଡ଼ିକ ଶୁଣି ସେ ଯେପରି ପଥର ହୋଇଯାଇଛି ।

କେତେବେଳ ପରେ ଟ୍ରେନର ଘଣ୍ଟାଶବ୍ଦରେ ରାଜା ସଚେତନ ହୋଇ ଉଠିଲା । ତାହାକୁ ବି ସଚେତନ କରିଦେଲା । ଟ୍ରେନ୍‌ର ଘଣ୍ଟା ବାଜିଲାଣି । ତିନଟା ବେଳର ଟ୍ରେନ୍ । ରାଜା ଷ୍ଟେସନକୁ ଯିବ । ସେ ନିତାଇକୁ ଡାକିଲା—ଉଠୋ ଭାଇ ଓସ୍ତାଦ୍, କଣ କରିବ କୁହ ? ହମ୍ ଇଷ୍ଟେସନ ମେ ଯାତା ହେ ! ନିତାଇ ବସିରହିଲା କୃଷ୍ଣଚୂଡ଼ା ଗଛ-ମୂଳେ । ଉଦାସୀନ ସ୍ତବ୍ଧ ନିତାଇ ଭାବୁଥାଏ, ରାସ୍ତାର କଥା– ଠିକ୍ କେଉଁ ରାସ୍ତାରେ ଗଲେ ସେ ଏ ଲଜ୍ଜାରୁ ନିଷ୍କୃତି ପାଇବ, କେଉଁ ବାଟରେ ଗଲେ ଜୀବନରେ ଶାନ୍ତି ପାଇବ ସେ ?

ଠିକ୍ ଏହି ମୁହୂର୍ତ୍ତରେହିଁ ଗୋଟିଏ ଲୋକ ଆସି ଛିଡ଼ାହେଲା ତା ସାମନାରେ—ଆରେ ଏଇ ତ ଓସ୍ତାଦ୍ !

ନିତାଇ ନିତାନ୍ତ ଉଦାସୀନ ଭଳିହିଁ ତା ଆଡ଼କୁ ଚାହିଁଲା । ମୁହୂର୍ତ୍ତକେ ତାର ମୁଖ ଉଜ୍ଜ୍ୱଳ ହୋଇଉଠିଲା ।—ତମେ ?

ଲୋକଟି କହିଲା—ହଁ—ମୁଁ । ତମରି ପାଖକୁ ଆସିଛି ।

—ମୋ ପାଖୁ ?

—ହଁ । ବଡ଼ ବିପଦରେ ପଡ଼ି ଆସିଛି ଭାଇ ! ବସନ ପଠେଇଛି ।

—ବସନ ?

— ସେଇ ଝୁମୁରଆଦଲର ବସନ ।

ଲୋକଟି ସେଇ ଝୁମୁରଆଦଲର ବେହେଲାବାଦକ ।

ଆହୁରି କେତେ ଘଣ୍ଟା ପରେ ।

ହେମନ୍ତର ଧୂସର ସନ୍ଧ୍ୟା; ସନ୍ଧ୍ୟାର ମ୍ଳାନ ରକ୍ତାଭ ଆଲୋକ ସଙ୍ଗେ ପଲ୍ଲୀର ଧୂଆଁ ଓ ଧୂଳିର ଧୂସରତା ମିଶି ଚାରିଆଡ଼େ ଯେପରି ଗୋଟିଏ ଆଚ୍ଛନ୍ନତା ଘେରିରହିଛି । ଏଣେ ସନ୍ଧ୍ୟାର ଟ୍ରେନ୍‌ଟି ଆସୁଛି ପଶ୍ଚିମ ଦିଗରୁ ପୂର୍ବଆଡ଼କୁ । ଯିବ କାଟୋଆ । ସିଗନାଲ୍

ଡାଉନ୍ କରି ରାଜା ଲାଇନ୍‌ର ପଏଣ୍ଟରେ ଲାଲ ବତି ଧରି ଠିଆହୋଇଛି । ଅନ୍ଧାର ଭିତରେ ନିଃଶବ୍ଦରେ ଆସି ଠିଆହେଲା ନିତାଇ ।

—ରାଜନ !

ରାଜା ବୁଲି ଚାହିଁଲା—ନିତାଇ ! ତାର ଗୋଡ଼ରେ କାନ୍‌ଭାସ ଯୋତା ଦେହରେ ଜାମା, ବେକରେ ଚାଦର, କାଖରେ ଗୋଟିଏ ଗଣ୍ଠିଲି । ରାଜା ବିସ୍ମିତ ହୋଇ ପଚାରିଲା—କାହାଁ ଯାଏଗା ଓସ୍ତାଦ୍ ?

ପାଞ୍ଚଟା ଟଙ୍କା ତା ହାତରେ ଦେଇ ନିତାଇ କହିଲା—ଦୁଧର ପଇସା, ଠାକୁରଝିକି ଦବ ।

ରାଜା ଫୁସ୍‌ଫୁସ୍ କରି ଅତ୍ୟନ୍ତ ବ୍ୟଗ୍ରଭାବରେ କହିଲା—ଠାକୁରଝିକା ବାତ୍ ମେ ବାତ୍ ଦେଗା ଓସ୍ତାଦ୍ ?

ନିତାଇ ଆଶ୍ଚର୍ଯ୍ୟ ହୋଇ ରାଜା ଆଡ଼କୁ ଚାହିଁଲା ।

—ଠାକୁରଝିକେ ସାଦୀ ହାମ୍ ବାତଲ୍ କର୍ ଦେଖା । ତୁମାରା ସାଥ ଫିର୍ ସାଦୀ ଦେଗା । 'ମଗାଇ' ଦେ ଦେଗା ।

ନିତାଇ ମୁଣ୍ଡ ପୋତି କିଛିକାଳ ତଳକୁ ଚାହିଁରହିଲା, ତାପରେ ମୁହଁ ଟେକି ହସି କେବଳ ଗୋଟିଏ ପଦ କହିଲା—ଛି !

—ଛି କାହେ ?

—ମଣିଷର ଘର କଣ ଭାଙ୍ଗିବା ଉଚିତ ରାଜନ ? ଛି !

ରାଜା ଗୋଟିଏ ଗଭୀର ଦୀର୍ଘ ନିଶ୍ୱାସ ପକାଇ ଚୁପ୍‌ହୋଇ ରହିଲା ।

ନିତାଇ କହିଲା—ତୁମେ ବିଶ୍ୱାସ କର ରାଜନ, ମୁଁ କବିଗାଉଣା କରେ; କିନ୍ତୁ ମନ୍ତ୍ର-ଯନ୍ତ୍ର କିଛି ଜାଣେନା, କିଛି କରିନାହିଁ, ତେବେ ହଁ ଗୋଟାଏ ଦୁର୍ବଳତା—ଟିକେ ସ୍ନେହ ହୋଇଥିଲା । ତା ବୋଲି ଠାକୁରଝିକି ମୁଁ ନଷ୍ଟ କରିନାହିଁ ।

ସନ୍ଧ୍ୟାର ଅନ୍ଧକାର ଚିରି ବାଙ୍କ ପାଖରେ ଟ୍ରେନ୍‌ର ହେଡ୍‌ଲାଇଟ୍ ଜଳିଉଠିଲା । ଟ୍ରେନ୍‌ଟା ସେଆଡ଼ୁ ଷ୍ଟେସନରେ ପଶୁଅଛି । ନିତାଇ ଦ୍ରୁତପଦରେ ଷ୍ଟେସନ ଆଡ଼କୁ ଚାଲିଲା । ଏତେବେଳେ ଯାଇ ଲାଇଟ୍‌ର ଆଲୁଅରେ ନିତାଇର ବେଶଭୂଷା ଓ କାଖର ବୁଜୁଲା ଯେପରି ରାଜା ଆଖିରେ ଆଙ୍ଗୁଠି ଗେଞ୍ଜି ବୁଝାଇଦେଲା ନିତାଇ କୁଆଡ଼େ ଯାଉଛି । ଏଯାକେ କଥାଟା ତାର ଖିଆଲ ହୋଇନାହିଁ । ଏଥର ସେ ପାଟିକରି ପଚାରିଲା—କାହାଁ ଯାଏଗା ଓସ୍ତାଦ୍ ?

ତେଣେ ଟ୍ରେନ୍‌ଟା ମହାଶବ୍ଦରେ ପାଖକୁ ଆସିଯାଇଥିଲା । ସେଇ ଶବ୍ଦର ପ୍ରଚଣ୍ଡତାରେ ନିତାଇ କିଛି କହିଲା କି ନାହିଁ ରାଜା ବୁଝିପାରିଲାନି । ଟ୍ରେନ୍‌ଟା ଷ୍ଟେସନରେ ପ୍ରବେଶ

କରିବା ପରେ ପଏଣ୍ଟ ଗ୍ରୁଡ଼ ରାଜା ଧାଇଁକରି ପ୍ଲାଟ୍‌ଫର୍ମକୁ ଆସିଲା ।

—ଓସ୍ତାଦ୍ !—ଓସ୍ତାଦ୍ !

ସେତେବେଳକୁ ନିତାଇ ଗାଡ଼ିରେ ଚଢ଼ି ବସିଛି । ତବାର ଝରକାରୁ ମୁହଁ ବାହାର କରି ନିତାଇ ଜବାବ ଦେଲା—ରାଜନ !

ଉତ୍କଣ୍ଠିତ କଣ୍ଠରେ ରାଜନ ପଚାରିଲା—କାହିଁ ଯାଏଗା ଭାଇ ?

ସ୍ୱଭାବସିଦ୍ଧ ହସ ହସି ନିତାଇ କହିଲା—ବନ୍ଦନା ଆସିଛି ଭାଇ ! ଆଲେପୁର ମେଲଣକୁ ।

ଆଲେପୁରରେ ମହାଦମାବେହରେ ନୂଆ ମେଳା ହେଉଛି ? କିନ୍ତୁ ବନ୍ଦନା କେତେ-ବେଳେ ଆସିଲା ? ରାଜାର ମନରେ ଚକିତରେ ଗୋଟାଏ ସନ୍ଦେହ ଜାଗି ଉଠିଲା । ଠାକୁରଝୀର ଦୁଧର ଦାମ୍ ପାଞ୍ଚ ଟଙ୍କା ମିଟେଇଦେଇ ସେ ବନ୍ଦନା ଧରି କବିଗାଉଣା କରିବାକୁ ଗଲା ! ମିଛ କଥା । ସେ କହିଲା—ଝୁଟ୍ ବାତ୍ ।

—ନା ରାଜନ ! ଦେଖୁନ, ମଣିଷ ଆସିଛି ।

ରାଜା ଦେଖିଲା, ସେଇ ଝୁମୁରିଆଦଳର ବେହେଲାଦାର । ଦଳନେତ୍ରୀ ପ୍ରୌଢ଼ା ମେଳାକୁ ଯାଇଛି, ସେଠାରୁ ନିତାଇ ପାଖକୁ ଲୋକ ପଠାଇଛି । ତାଙ୍କ ଦଳର କବିୟାଲ ପଳାଇଯାଇଛି । ବସନ୍ତ ଝଗଡ଼ା କରି ତାକୁ ଗୋଇଠା ମାରିଛି ।

ନିତାଇ କହିଲା—ଆଲେପୁର, ଆଲେପୁରଠାରୁ କାନ୍ଦରା, କାନ୍ଦରାଠୁ କଟୱା, କଟୱାରୁ ଅଗ୍ରଦ୍ୱୀପ, ଅଗ୍ରଦ୍ୱୀପଠୁଁ—

ଟ୍ରେନ୍‌ର ସିଟି ତାର କଥାଟାକୁ ଦବାଇଦେଲା ।

ସିଟି ବନ୍ଦ ହେଲା, ଟ୍ରେନ୍ ଚାଲିବାକୁ ଆରମ୍ଭ କଲା । ରାଜା ଟ୍ରେନ୍ ସାଙ୍ଗରେ ଦଉଡ଼ି ଦଉଡ଼ି ପଚାରିଲା—ଅଗ୍ରଦ୍ୱୀପ ସେ କାହାଁ ? ଦୁନିଆଁ ଭରସେ କ୍ୟା ତୁମାରା ବନ୍ଦନା ଆୟା ହେ ? ଉତର ଆଓ ଓସ୍ତାଦ୍, ଉତର ଆଓ—ରାଜାର କଣ୍ଠର ଆର୍ତ୍ତ ମିନତି ମୁହୂର୍ତ୍ତିକ ଲାଗି ନିତାଇକୁ ବିଚଳିତ କରିଦେଲା । ପର ମୁହୂର୍ତ୍ତରେ ହିଁ ସେ ଆତ୍ମସମ୍ବରଣ କରି ହସିଲା । ମନେ ମନେ ହିଁ କହିଲା—ହାଁ, ଦୁନିଆଁ ଭରକୀ ବନ୍ଦନା ଆୟା ହେ ରାଜନ୍ ।

ଏହାରି ଭିତରେ କିନ୍ତୁ ଟ୍ରେନ୍ ପ୍ଲାଟଫର୍ମ ଡେଇଁ ଦ୍ରୁତଗତିରେ ବାହାରିଗଲା ।

# ତେର

ଟ୍ରେନ୍‌ଟା ପୂର୍ବପଟର ବାଙ୍କଟା ବୁଲି ଦକ୍ଷିଣଆଡ଼େ ମୁହାଁଇଲା । ଏ ସେଇ ବାଙ୍କ, ଯେଉଁଠି ଠାକୁରାଣୀ ଆସିଲେ ତାର ମୟୂର ଡାଳଟି ଖରାର ଛଟାରେ ଝଲମଲ କରି ଉଠୁଥାଏ । ଗାଡ଼ିଟା ଦକ୍ଷିଣମୁହାଁ ଚାଲୁଛି । ଏଥର ବାଁ ପାଖରେ ପଡ଼ିଲା ପୂର୍ବ ଦିଗନ୍ତ । ପୂର୍ବ ଦିଗନ୍ତରେ ସେତେବେଳେ ଶୁକ୍ଳପକ୍ଷର ଚତୁର୍ଦ୍ଦଶୀର ଚନ୍ଦ୍ର ଉଠୁଥିଲା । ଆକାଶରେ ପତଳା ମେଘର ଆଭାସ ରହିଅଛି, କୁହୁଡ଼ିପରି ପତଳା ମେଘର ଆବରଣ । ତା ଆଢୁଆଳରେ ଚନ୍ଦ୍ରର ରଙ୍ଗ ଠିକ୍ ହଳଦୀ ଗୁଣ୍ଡ ପରି ହୋଇଯାଇଛି । ନୂଆ ବର ପରି ଚନ୍ଦ୍ର ଯେପରି ଦେହରେ ହଳଦୀ ଲଗାଇ ବିବାହ-ବାସରକୁ ଚାଲିଛି ! ନିତାଇ ମୁଗ୍‌ଧ ଦୃଷ୍ଟିରେ ଚନ୍ଦ୍ରଆଡ଼କୁ ଖାଲି ଅନାଇଁ ରହିଲା । ଛୋଟ ଲାଇନ୍‌ର ଟ୍ରେନ୍‌ଗୁଡ଼ାକ ଖୁବ୍ ବେଶୀ ଦୋହଲେ, ଆଉ ଶବ୍ଦ ବି କରେ ବଡ଼ ଲାଇନ୍‌ର ଟ୍ରେନ୍‌ଠାରୁ ଅନେକ ବେଶୀ—ଶୂନ୍ୟ କୁମ୍ଭପରି । ଯେଉଁ ଲୋକଟି ନିତାଇକୁ ନେବାକୁ ଆସିଥିଲା, ସେ ଝୁମୁରଆଦଳର ବେହେଲାବାଲା; କିନ୍ତୁ ସେ ବି ବଜାଇ ଜାଣେ । ସେ ବେଶ୍ କିଛି ନିଶାବିଭୋର ଅବସ୍ଥାରେ ଥିଲା । ଟ୍ରେନ୍‌ର ଏଇ ଅତ୍ୟଧିକ ଶବ୍ଦରେ ଏବଂ ଦୋହଲାରେ ବିରକ୍ତ ହୋଇ ସେ କହିଲା—ମଲା ଯା, ଏ ତ ଝାଁପତାଳ ଲଗେଇଦେଲା ଓସ୍ତାଦ୍ ! ଏବଂ ଟ୍ରେନ୍‌ର ଶବ୍ଦ ସଙ୍ଗେ ମିଳାଇ ବେଞ୍ଚ ଉପରେ ତାଳ ପକାଇବାକୁ ଆରମ୍ଭ କରିଦେଲା । ତା ଦେଖାଦେଖି ସେପଟ ବେଞ୍ଚରେ ଦୁଇଟା ଛୋଟ ପିଲା ଟ୍ରେନ୍ ଶବ୍ଦର ମର୍ମାର୍ଥ ଉଚ୍ଚାର ଆରମ୍ଭ କଲେ । ଜଣେ କହିଲା—ଛ-ଛ ପଇସା ଛ-ଛ ପଇସା ଛ-ଛ ପଇସା—ଛ-ଛ ପଇସା ।

ନିତାଇର ମନ କିନ୍ତୁ କୋଉଥିରେ ଆକୃଷ୍ଟ ହେଲା ନାହିଁ । ଚନ୍ଦ୍ର ଆଡ଼କୁ ଚାହିଁ ସେ ଭାବୁଥିଲା—ଠାକୁରାଣୀକଥା, ରାଜନକଥା, ଯୁବରାଜକଥା, ବଣିକ-ମାତୁଳକଥା, ବିପ୍ରପଦ-କଥା, କୃଷ୍ଣଚୂଡ଼ାଗଛଟା କଥା, ଷ୍ଟେସନଟି କଥା, ଗାଁଖଣ୍ଡିକ କଥା । ମଝିରେ ମଝିରେ ଇଚ୍ଛା ହେଉଥାଏ—ପର ଷ୍ଟେସନରେଇ ସେ ଓହ୍ଲାଇ ପଡ଼ିବ ।

ଷ୍ଟେସନ ଚାଲିଗଲା, କିନ୍ତୁ ସେ ଆଉ ଓହ୍ଲାଇ ପାରିଲା ନାହିଁ । ହଠାତ୍ କେତେବେଳେ ସେ ଅନୁଭବ କଲା—ନିଜର ଅଜ୍ଞାତସାରରେ ହିଁ ତାହାର ଆଖି ଯେପରି ପାଣିରେ ପୂରିଉଠିଛି, ସେ କାନ୍ଦୁଅଛି । ଆଖିର ଲୁହ ପୋଛିପକାଇ ଟିକିଏ ମ୍ଳାନ ହସ ହସି ଏତେବେଳେ ଯାଇ ସେ ସଚେତନ ହୋଇଉଠିଲା । ପର ମୁହୂର୍ତ୍ତରେଇ ସ୍ୱାଭାବିକ କଣ୍ଠରେ ସେ ଗୀତ ଧରିଲା—ଆହା ! ଦ'ଅରଖଣ୍ଡେ ତା-ନା-ନା କରି ସୁର୍ ଲଗେଇ

ଗୀତ ଧରିଲା—

"ଚନ୍ଦ୍ର ଗୋ ତୁମେ ଆକାଶେ ଥାଅ, ମୁଁ ତୁମକୁ ଦେଖିବି ଖାଲି ।
ଛୁଇଁବାକୁ ମୁଁ ଚାହେଁନା ତୁମକୁ, ସୁନାର ଅଙ୍ଗେ ଲାଗିବ କାଳି ।"

ବାଜଣାବାଲାଟା ନିଶାଭିତରେ ବି ସଜାଗ ହୋଇ ବସିପଡ଼ି କହିଲା—ବାହାବା ଓସ୍ତାଦ୍ ! କଣ୍ଠଟାଏ ପାଇଥିଲ ଏକା ବଢ଼ିଆ ! କହିଦେଇ ସେ ସାମନା ବେଞ୍ଚରେ ଗୋଟାଏ ପ୍ରକାଣ୍ଡ ଚାପୁଡ଼ା ବସାଇ କହିଲା—ହେଇଁ—ତା—ଚେରେକେଟେ—ତା—ତା !

ଗାଇବାକୁ ଯାଇ ନଟାଇ ପର ପଦଟା ବଦଳାଇଦେଲା । ମନ ଯେପରି ଗୀତରେ ପୂରିଉଠିଛି, ସୁରରେ ପକାଇଲେଇ ସେ ଗୀତ ହୋଇ ବାହାରିଆସୁଛି—

"ନା-ନା, ତାଇ ବି କର ମାର୍ଜନା, ଆଜଠୁଁ ତା ବି କଲି ମନା
ଜାଣି ତ ନଥିଲି ଏଇ କୁଦୃଷ୍ଟି ବିଷ ଦିଏ ଯେ ଢାଳି ।"

ଷ୍ଟେସନ ପରେ ଷ୍ଟେସନ ଡେଇଁ ଟ୍ରେନ୍ ଚାଲୁଥିଲା । ନଟାଇ ଗୀତଟି ବାର ବାର ଫେରି ଫେରି ଗାଇଲାଗିଛି; ତଥାପି କେଜାଣି ତାର ତୃପ୍ତି ଆସୁନାହିଁ ।

ଟ୍ରେନ୍‌ଟା ଖଟ୍ ଖଟ୍ ଶବ୍ଦରେ ଲାଇନ୍‌ର ଯୋଡ଼ମୁହଁ ଅତିକ୍ରମ କରି ଗୋଟାଏ ଷ୍ଟେସନରେ ଆସି ପଶିଲା । ଷ୍ଟେସନର ଜମାଦାର୍ ଡାକ କହୁଛି—କାନ୍ଦରା, ରାମଜୀବନ-ପୁ···ର୍ । ବାଜଣାବାଲା ଝରକାବାଟେ ମୁହଁ ବଢ଼ାଇ ଷ୍ଟେସନଟାର ଚେହେରାଟା ଥରେ ଦେଖିନେଇ ବ୍ୟସ୍ତ ହୋଇ କହିଲା—ହେଇ, ଘରର ଭିତରେ ଆସିଗଲାପରି ଲାଗୁଚି । ଓହ୍ଲା, ଓହ୍ଲା—ଓସ୍ତାଦ୍ ଓହ୍ଲା ।

ନଟାଇ ଓହ୍ଲାଇଲା; କିନ୍ତୁ ଗୀତ ବନ୍ଦ କଲା ନାହିଁ । ଗଳା କମାଇ ମୃଦୁସ୍ୱରରେ ଗାଇ ଗାଇ କରି ସେ ଷ୍ଟେସନ ଡେଇଁ ରାସ୍ତାକୁ ଆସିଲା—

"ତେଣୁ ବୁଲୁଛି ଦେଶାନ୍ତରେ ଅନ୍ଧାର ଖୋଜି ବୁଲିବି ଦୂରେ
କାକମୁଖରେ ବାରତା ଦିଅ, ଷୋଳକଳାରେ ବଢ଼ୁଛ ଖାଲି ।"

ଷ୍ଟେସନରୁ ଦି'ମାଇଲ ଭଳି ବାଟ ଚାଲି ଚାଲି ଆସି ନଟାଇର ମନର ଅବସାଦ କେତେକ ପରିମାଣରେ କଟିଗଲା । ରାସପୂର୍ଣ୍ଣିମାରେ ଆଲେପୁରର ମେଳା ବର୍ଷ୍ୟାତ

ମେଳା; ଲୋକ ଯେ ଆଟପାଟାଳି ଲାଗେ । ଚତୁର୍ଦ୍ଦଶୀର ପୂର୍ଣ୍ଣଚନ୍ଦ୍ରର ଆଲୋକ ଭିତରେ ବି ଦୁଇ ମାଇଲ ମେଳାଟା ଉପରର ଆକାଶ ଆଲୋକର ଆଭାରେ ଝଲମଲ କରୁଅଛି ! ଏଥିପୂର୍ବରୁ ମଧ୍ୟ ନିତାଇ ଏ ମେଳା ଦେଖିବାକୁ ଆସିଥିଲା । କେବଳ ଆଲୁଅ ଓ ଆଲୁଅ । ସେଇ ଆଲୁଅର ଛଟାରେ ଉଜ୍ଜ୍ୱଳ ପଣ୍ୟସମ୍ଭାରପୂର୍ଣ୍ଣ ଧାଡ଼ି ଧାଡ଼ି ଦୋକାନ, ଆଉ ବାଟଘାଟ ପଡ଼ିଆ ଖାଲି ଲୋକମୟ । ମେଳାଟାର ସ୍ଥାନେ ସ୍ଥାନେ ନାନା ଆନନ୍ଦର ଆସର—ଯାତ୍ରା, କବି, ପାଞ୍ଚାଲୀ*, ଝୁମର୍ । ଚାରିଆଡ଼େ ଦର୍ଶକ ଯେ ଥାଳି ଚାଲିଯିବ ! ଏଇମିତିକା ଗୋଟିଏ ସମୟରେ ଆଜି ତାକୁ ଗାଇବାକୁ ହେବ । କବି ଓ ଝୁମରଦଳ ଏକାଠି ହୋଇ ଆଉ ଗୋଟିଏ ଏହିପରି ଦଳ ସାଙ୍ଗରେ ଲଢ଼େଇ କରି ପାରିବେ । ସାଙ୍ଗ ଲୋକଟି କହିଅଛି, ତାକୁ ହିଁ 'ମୁଖପାତ'—ଅର୍ଥାତ୍ ମୁଖପାତ୍ର ହିସାବରେ ଗାଇବାକୁ ହେବ । ସେମାନଙ୍କର ଯେଉଁ ଲୋକଟା ଏପରି ଆସରରେ ଗୀତ ବୋଲେ, ସେ ଲୋକଟା ବସନ୍ତ ସାଙ୍ଗରେ ଝଗଡ଼ା କରି ତାହାର ପ୍ରଣୟିନୀକୁ ନେଇଯାଇ ଅନ୍ୟ ଦଳକୁ ଚାଲିଯାଇଛି । ତାହାର କଣ୍ଠ ବି ଏକବାରେ ନଷ୍ଟ ହୋଇଯାଇଥିଲା; ଲୋକଟା ବି ଥିଲା ଦୁର୍ଦ୍ଦାନ୍ତ ମାତାଲ । ଗୀତ ବାନ୍ଧିବାର କ୍ଷମତା ବି ତାର ଆଉ ନଥିଲା । ଗଲା କାଲି ଗୋଟିଏ ଗୀତର ସୁର ତାଳ ନେଇ ବସନ୍ତ ସାଙ୍ଗରେ ଝଗଡ଼ା ଲାଗିଗଲା । ଦୁ'ଜଣଯାକ ଥିଲେ ମତ୍ତ ଅବସ୍ଥାରେ । ଆଖର ଲୋକଟା ବସନ୍ତକୁ ଅଶ୍ଳୀଳ ଭାଷାରେ ଗାଳି ଦେବାରୁ ବସନ୍ତ ତାହାର ପିଠିରେ ଗୋଇଠା ବସାଇ ଦେଇଥିଲା । ଫଳରେ ଲୋକଟା ତାହାର ପ୍ରଣୟିନୀ ଝିଅଟାକୁ ନେଇ ଅନ୍ୟ ଦଳକୁ ଚାଲିଯାଇଛି । କବିୟାଲ ଏବଂ ଭଲ ଗାଇବାବାଲା ନହେଲେ ମେଳାରେ ଜମିବ ନାହିଁ । ଉପାୟାନ୍ତର ନ ଦେଖି ପ୍ରୌଢ଼ା ନିତାଇକୁ ସ୍ମରଣ କରିଅଛି । ମାନସମ୍ମାନରେ ସକଳ ଭରସା ବର୍ତ୍ତମାନ ନିତାଇ ଉପରେ । ସେଥିପାଇଁ ଏକାନ୍ତ ଅନୁରୋଧ ଜଣାଇ ଝୁମରଦଳର ନେତ୍ରୀ ପ୍ରୌଢ଼ା ତାହା ପାଖକୁ ଲୋକ ପଠାଇଛି ।

ମନେ ମନେ ଗୋଟିଏ ଖୁବ୍ ଭଲ ଜୁହା ରଚନା କରି କରି ନିତାଇ ବାଟ ଚାଲୁଥାଏ—ମନଟା ଥାଏ ଜୁହାରେ ଆବଦ୍ଧ, ଦୃଷ୍ଟି ଥାଏ ଆକାଶରେ ନିବଦ୍ଧ—ସେଇ ଆଲୋକୋଜ୍ଜ୍ୱଳ ଆକାଶ ଆଡ଼େ । ଠାକୁରାଣୀ, ରାଜନ, ଯୋବରାଜ, କୃଷ୍ଣଚୂଡ଼ା ଗଛ ସବୁକିଛି ସାମନାର ସେହି ଆସରର ଆଲୋକରେ ଆଲୋକିତ ତାହାର ନିଜର ଦେହର ପଛଆଡ଼େ ଦୀର୍ଘ ଛାୟାର ଅନ୍ଧାର ଭିତରେ ଘୋଡ଼ାଇ ହୋଇ ଯାଇଛି । ସେ ଯେତେ ଆଗକୁ ଆଗେଇ ଚାଲିଛି, ପଶ୍ଚାତ୍ତର ଛାୟା ଦୈର୍ଘ୍ୟ ଓ ପରିଧିରେ ସେତେ ବଡ଼ ଏବଂ

* ବଙ୍ଗଳାର ଲୋକଗୀତବିଶେଷ ।

ଘନ ହୋଇଉଠୁଅଛି—ସେହି କ୍ରମବର୍ଦ୍ଧମାନ ଗ୍ରୁପ୍ସାର ଅନ୍ଧକାରରେ ପଛଆଡ଼ଟା କ୍ରମଶଃ ଯେପରି ବିଲୁପ୍ତ ହୋଇ ଆସୁଅଛି ।

ତାହାର ମନକୁ ଟାଣୁଛି ମେଳାର ଆସର । ଠାକୁରଝିର ଚିନ୍ତା, ମେଠାକାର ସମସ୍ତଙ୍କର ଚିନ୍ତାକୁ ଦୁଃଖକୁ ଡିଆଁଇ ମନ ମଧ୍ୟରେ ଅଦ୍ଭୁତ ଗୋଟାଏ ଉତ୍ତେଜନା ଜାଗି ଉଠୁଅଛି । ଆଜି ସେ କବିୟାଲ ହୋଇ ଆସରରେ ଠିଆ ହବ । ଚଣ୍ଡୀମାଆଙ୍କ ମେଳାରେ ମହାଦେବ ସାଙ୍ଗରେ ଲଢ଼େଇପାଲି ହେଇଥିଲି ହିଁ; କିନ୍ତୁ ସେ ଅଲଗା—ସେ୍ଟ ଅଲଗା । ଆଜି ସେ ସତସତିକା କବିୟାଲ ବୋଲି ସ୍ୱୀକୃତ ହୋଇ ମେଳାରେ ଗାଉଣା କରିବାକୁ ଯାଉଛି । ଏପରି ଭାଗ୍ୟ ଯେ ତାର କେବେହେଲେ ହେବ ସେ ଭାବିନଥିଲା ।

ସେ ଗାଇବ, ବସନ୍ତ ନାଚିବ । ଅନ୍ୟ ଝିଅମାନଙ୍କୁ ସେ ନାଚିବାକୁ ଦେବନାହିଁ । ଆସରରେ ବସି ସେମାନେ ଡ଼ୁହା ଧରୁଥିବେ । ଏଇସବୁ କଳ୍ପନା କରୁ କରୁ ତାହାର ମନକୁ ଗୋଟାଏ ପଦ ମଧ୍ୟ ଆସିଗଲା—

"ବ୍ରଜ-ଗୋକୁଳର କୂଳେ କଳା କାଳିନ୍ଦୀର ଜଳେ
ଦୋଳି ଖେଳେ ଆରେ ସୁନାର କମଳା
କଳା ହାତେ ଛୁଅଁ ନା ରେ;
ଲାଗିଯିବ କାଳି ଆରେ କୁଟିଳ କଳା ।"

ସାଙ୍ଗେ ସାଙ୍ଗେ ସ୍ୱରରେ ପକାଇ ସେ ଗୁଣୁଗୁଣୁ କରି ଗୀତ ଗାଇବାକୁ ଆରମ୍ଭ କରିଦେଲା ! ବିପକ୍ଷ ଦଳର କବିୟାଲ କୁଆଡ଼େ ବେଜାୟ ରଙ୍ଗରସିଆ ଲୋକ, ଆରମ୍ଭରୁ ହିଁ ସେ ରଙ୍ଗତାମସା ଆରମ୍ଭ କରିଦିଏ । ସେଇ ରଙ୍ଗବଳରେଇ ସେ ଆସରରେ ବାଜି ମାରି କରେ । ନିତାଇ କେବେହେଲେ ପ୍ରଥମରୁ ରଙ୍ଗରସ କରିବ ନାହିଁ । ମଣିଷ କେବଳ ମଦ ହିଁ ଭଲପାଏ; ଦୁଧକୁ ତାର ଅରୁଚି, ଏ କଥା ସେ ବିଶ୍ୱାସ କରେ ନାହିଁ । ଯେବେ ଅରୁଚି ଦେଖିବ ତେବେ ସେ ମଦହିଁ ପରଷିବ ପଛେ । ଦେଖାଯାଉନା ।

ହଠାତ୍ ଗୋଟାଏ ଲୋକ ସାଙ୍ଗରେ ସଜୋରରେ ଧକ୍କା ଲାଗି ନିତାଇକୁ ଠିଆ ହେବାକୁ ପଡ଼ିଲା । ମେଳାର ଅତି ନିକଟକୁ ଆସିଯାଇଛି, ବାଟର ଜନତା ଘନ ହୋଇଉଠିଛି । କବିୟାଲଗିରିର ଚିନ୍ତାରେ ବିଭୋର ହୋଇ ନିତାଇ ଅତ୍ୟନ୍ତ ଦ୍ରୁତଗତିରେ ଚାଲୁଥିଲା, ହଠାତ୍ ବାଙ୍କମୁହଁରେ ଲୋକଟା ସାଙ୍ଗରେ ଧକ୍କାଟା ବେଶ୍ କିଛି ଜୋରରେ ଲାଗିଗଲା । ଲୋକଟା କ୍ରୁଦ୍ଧ ହୋଇ କହିଲା—କଣା ନା କଣ ? ଏମିତି କଣା ଷଣ୍ଢପରି ଧାଉଁଛ କୁଆଡ଼େ ?

ନିତାଇ ଅବନତ ହୋଇ ହାତଯୋଡ଼ି କହିଲା—ହଉ ମୋର କସୂର ହୋଇଯାଇଛି ଭାଇ !

ଲୋକଟା ଅପେକ୍ଷାକୃତ ଶାନ୍ତ ହୋଇ କହିଲା—ଆଃ, ଏକଦମ୍ ଠାଇଁକିନା ବାଜିଛି ।

ନିତାଇ କହିଲା—ଦୋଷଟା ଏକା ମୋର ନୁହେଁ, ବିବେଚନା କରି ଦେଖିବେ ।

ଲୋକଟା ଏଥରକ ହସିପକାଇଲା ।

ଏଇ ଅନ୍ଧାରିଆ ବାଙ୍କଟା ବୁଲିଗଲେଇ ମେଳା । ସାରା ମେଳାଟାର ବିଭିନ୍ନ ପଙ୍କ୍ତି ଅତିକ୍ରମ କରି ସେମାନେ ମେଳାର ବିପରୀତ ପ୍ରାନ୍ତରେ ଆସି ପହଞ୍ଚିଲେ । ଏଠାରେ ଆଲୋକର ସମାରୋହଟା କମ୍; କିନ୍ତୁ ଲୋକଭିଡ଼ ବେଶୀ । ମେଳାର ଏହି ପ୍ରାନ୍ତରେ ଗୋଟାଏ ଗଛମୂଳେ କୁଟାର ଛୋଟ ଛୋଟ କେଇଖଣ୍ଡି ଘର ବାନ୍ଧି ଝୁମରିଆଦଳଟି ଆସ୍ଥାନ ପକେଇଛି । ଆଖପାଖରେ ଏହିପରି ଆହୁରି କେଇଟା ଝୁମରଦଳର ଆସ୍ଥାନ । ପାଖକେ ଟିକିଏ ଦୂରରେ 'ଜୁଆର' ଆସର । ତାହାର ପରେ ଚତୁଃଷ୍କୋଣ ଆକାରର ଗୋଟିଏ ଖୋଲା ଜାଗାରେ ଧାଡ଼ି ଧାଡ଼ି କୁଟାଘର ବାନ୍ଧି ବେଶ୍ୟାପଲ୍ଲି ବସିଯାଇଛି । ସେ ଯେପରି ଗୋଟାଏ ବିରାଟ ମଧୁଚକ୍ରରେ ଅବିରାମ ଗୁଞ୍ଜନ ଉଠୁଅଛି ।

ମଝିରେ ମଝିରେ ନିଶାରେ ଉନ୍ମତ୍ତ ଜନତା ଉଚ୍ଛୃଙ୍ଖଳ କୋଲାହଳରେ ଫାଟି ପଡୁଅଛି । ସେହିପରି ଗୋଟାଏ କୋଲାହଳ ଭିତରେ ନିତାଇର ଗୀତର ପଦ ଦିଟା ଗୋଳମାଳ ହୋଇଗଲା ।

ବସନ୍ତ ଇତ୍ୟାଦିଙ୍କର ଝୁମରିଆଦଳର ଆସ୍ଥାନରେ ଘରଗୁଡ଼ାକ ସାମନାରେ ଗଛମୂଳେ ଚଟେଇ ପକାଇ ଲଣ୍ଠନ ଆଲୁଅରେ ପ୍ରୌଢ଼ା ଗୁଆ କାଟୁଥିଲା—ଦିଜଣ ରନ୍ଧାବନ୍ଧାରେ ବ୍ୟସ୍ତ ଥିଲେ । ଗୋଟାଏ କୁଟାର କୋଠରିରେ ଉଜ୍ଜ୍ୱଳ ଆଲୁଅ ଜଳୁଅଛି, ମାଇପ ମିଶିପଙ୍କର ସମ୍ମିଳିତ ହସର ଉଚ୍ଛ୍ୱାସରେ ଘର ଖଣ୍ଡିକ ଉଚ୍ଛ୍ୱସିତ । ତାହାରି ଭିତରେ ନିତାଇ ଚିହ୍ନିଲା—ବସନ୍ତର ହସ । ଏପରି ଦାନ୍ତୁଆ ଖିଲଖିଲ ହସ ବସନ୍ତ ଛଡ଼ା ଆଉ କେହି ହସିପାରେନା, ଅନ୍ତତଃ ଝୁମରିଆଦଳର କୌଣସି ଝିଅ ପାରେନା ।

ନିତାଇକୁ ଦେଖିବାମାତ୍ରେ ପ୍ରୌଢ଼ା ଆନନ୍ଦରେ ଉଚ୍ଛ୍ୱସିତ ହୋଇ ଉଠି ଠିଆ-ହେଲା—ଆସ ଆସ ବାପା, ଆସ । ମୁଁ ତମରି ବାଟକୁ ଚାହିଁ ବସିଛି ।

ରନ୍ଧନରତା ଝିଅ ଦୁଇଟି ରନ୍ଧା ଗୁଡ଼ି ପାଖକୁ ଆସି ଠିଆହେଲେ,—ହସି ହସି କହିଲେ—ଆସିଯାଇଛ ପରି ଲଗୁଛି !

ନିତାଇ ହସି କହିଲା—ଆସିଲି ତ ।

ପ୍ରୌଢ଼ା କହିଲା—ଆଲୋ, ମୋ ବାପାକୁ ଗୁହାରି କରି ଦେ । ମୁହଁହାତ ଧୁଅ ବାପା !

ଗୋଟିଏ ଝିଅ କହିଲା—ଖୁବ୍ ଭଲକରି ଗୀତ ଗାଇବାକୁ ହବ ଜାଣିଥା ।

ଆଉ ଝିଅଟି ଧାଇଁଯାଇ ଆଲୋକୋଜ୍ଜ୍ୱଳ କୋଠରିଟାର ଦୁଆରେ ଠିଆହୋଇ କହିଲା—ଆଲୋ ବସନ, କବିୟାଲ ଆଇଚି ଲୋ । ତୋର କଳାମାଣିକ !

ନିତାଇ ହସିକରି ସଂଶୋଧନ କରିଦେଲା—କଳା-ମାଣିକ ନୁହେ, କୋଇଲା-ମାଣିକ ।

ବସନ୍ତ ଘର ଭିତରୁ ବାହାରି ଆସିଲା—ତାହାର ଗୋଡ଼ ଟଳମଳ ହେଉଛି, ବଡ଼ ବଡ଼ ଆଖିର ପତା ଦି'ଟା ଓଜନିଆଁ ହୋଇ ନଇଁଯାଉଛି, ନାକ ଅଗରେ ଚିବୁକରେ କପାଳରେ ଝାଳ ଦେଖାଯାଉଛି । ସେ ଆସିକରି ଦୃଷ୍ଟି ବିସ୍ଫାରିତ କରି ନିତାଇ ଆଡ଼କୁ ଚାହିଁ ତାହାର ହାତ ଧରି କହିଲା—ନା, ତମେ ମୋର କଳାମାଣିକ । ମୋର ମାନ୍ ରଖିଚ ତମେ, ହୃଦର କୁମ୍ଭେରେ ପାଣି ରଖିଛ—ତମେ କଳା-ମାଣିକ ।

ନିଶାର ପ୍ରଭାବରେ ବସନ୍ତର କଣ୍ଠସ୍ୱର ସ୍ୱଭାବତଃ ଟିକିଏ ଆବେଗ ମନରେ ଭରି-ରହିଥିଲା—କିନ୍ତୁ ସେ ଆବେଗ, ଶେଷ କଥା କେଇଟା କହିବା କେବଳ ଯେପରି ଅନେକ ଗୁଣରେ ବଢ଼ିଗଲା ।

ପ୍ରୌଢ଼ା ରହସ୍ୟ କରି କହିଲା—ତା ବୋଲି ଯେମିତି ବାହୁନ ବସନା ବସନ, ନିଶା-ବାଉଳାରେ !

ନିଶାରେ ଅର୍ଦ୍ଧନିମିଳିତ ଆଖି ଦୁଇଟି ପୁଣି ବିସ୍ଫାରିତ କରି ବସନ୍ତ ଏଥର କିଛିକ୍ଷଣ ପ୍ରୌଢ଼ା ଆଡ଼କୁ ଅନାଇ କହିଲା—ଅଲବତ୍ କାନ୍ଦିବ, କଳା-ମାଣିକର ଗଳା-କୁଣ୍ଢାଇ ଧରି କାନ୍ଦିକରି ଭସେଇ ଦେବ । ଏମିତି ଯତ୍ନ କରି କିଏ ଗୁହାରି କରିଦବ—କିଏ ଦେହରୁ ଧୂଳି ପୋଛିଦବ ? ଆଜି ରାତିସାରା କାନ୍ଦିବ— । କହୁ କହୁ ସେ ନିଜର ଘରର ଦୁଆର ପାଖକୁ ଆସି କହିଲା— ଏଇ ନାଗରମାନେ, ଯା, ଚାଲିଯା ତମେମାନେ । ଆଉ ଆମୋଦ ହେବ ନାହିଁ !

ପ୍ରୌଢ଼ା ବ୍ୟସ୍ତବ୍ୟସ୍ତ ହୋଇ ଉଠିଯାଇ ବସନ୍ତର ହାତ ଧରି କହିଲା—ଏଇ ବସନ ! ବସନ ! ଛି ! କଣ କରୁଚୁ ତୁ ? ଗରାଖ ଈଶ୍ୱର—ତଡ଼ିବାକୁ ଅଛି ?

ବସନ୍ତ ପ୍ରୌଢ଼ାର ମୁହଁ ଆଡ଼କୁ ଚାହିଁରହି ଫୁଲି ଫୁଲି କାନ୍ଦିବାକୁ ଆରମ୍ଭ କଲା—ତା ବୋଲି ମୁଁ କାନ୍ଦି ବି ପାରିବିନି ମାଉସୀ, ମୁଁ କାନ୍ଦି ବି ପାରିବିନି ?

ନିତାଇ ଉଠି ଆସି କହିଲା—ନାଇଁ, କାନ୍ଦିବ ଗୋଟାଏ କଣ ? ଛି !

—ତାହେଲେ ତମେ ବି ଆସ । ତମେ ଗାଇବ, ମୁଁ ନାଚିବି ।

—ଆଚ୍ଛା, ଆଚ୍ଛା । ପ୍ରୌଢ଼ା କହିଲା—ଶିବ ଶିବ । ଏଇ ଆସିଲି ଜାଣ, ଗୁହାରି ଟୋପେ

ଖାଇ ଆଗ ଟିକଏ ହାଲୁଆ ମାରୁ, ତାପରେ ଯିବନି କିଃ ତୁ ଯା ଏଇଲା ।

—ଗୃହା ? ନା, ଗୃହା ଗୋଟାଏ କଣ ଖାଇବ କାହିଁକି ? ଖୁବ୍ ବଢ଼ିଆ ମଦ ଅଛି—ମଦ ଖାଇବ ! ଆସ । ବସନ୍ତ ନିତାଇର ହାତ ଧରି ଭିଡ଼ିଲା ।

ନିତାଇ ହାତ ଟାଣି ନେଇ କହିଲା—ଛାଡ଼ !

—ନା ।

—ମଦ ମୁଁ ଖାଏନା ।

—ଖାଇବାକୁ ପଡ଼ିବ ତମକୁ । ମୁଁ ଖୁଆଇଦେବ ।

—ନା ।

ବସନ୍ତ ବେକ ବଙ୍କାଇ ନିତାଇ ଆଡ଼କୁ ଚାହିଁ କହିଲା—ଅଲବତ୍ ଖାଇବାକୁ ହେବ ତମକୁ ।

ପ୍ରୌଢ଼ା କହିଲା—ମାତାଲଗିରି କରନା ବସନ । ଛାଡ଼, ଘରକୁ ଯା ।

ସେହିପରି ବଙ୍କିମ ଗ୍ରୀବାଭଙ୍ଗି କରି ଚାହିଁ ବସନ୍ତ ନିତାଇକୁ କହିଲା—ଯିବନି ତମେ ? ମଦ ଖାଇବନି ?

—ନା ।

—ମୋ କଥା ତମେ ରଖିବନି ।

—ଏଇ କଥାଟି ରଖିପାରିବନି ।

ବସନ୍ତ ନିତାଇକୁ ଛାଡ଼ିଦେଲା; ତା ପରେ ଟଳିଟଳି ଘର ଭିତରକୁ ପ୍ରବେଶ କରି କହିଲା—ବନ୍ଦ କର ଦୋ ଦରଜା ।

ପ୍ରୌଢ଼ା ଆକ୍ଷେପ କରି ହିଁ କହିଲା—ଝିଅଟା ସେଇ ମଦ ଖାଇକରି ନିଜର ସର୍ବନାଶ କଲା । ଏବେ ମଦ ଖାଇଲେ ଆଉ ଦେହ ରହିବ !

ନିତାଇ ଗୋଟାଏ ଦୀର୍ଘନିଶ୍ୱାସ ପକାଇଲା । ଯେଉଁ ଝିଅଟି ଗୃହା କରିବାକୁ ଯାଇଥିଲା, ସେ ଗୋଟାଏ କଳେଇ ଗିଲାସରେ ଗୃହା ଆଣି କହିଲା—ନିଅ, ଗୃହା ପିଅ ଓସ୍ତାଦ୍ !

ହସିକରି ନିତାଇ ଗୃହା ଗିଲାସଟି ନେଇ କହିଲା—ତୁ'ନା ଅପାଟି ମୋର, ବଞ୍ଚେଇଲୁ ଭଉଣୀ !

ପ୍ରୌଢ଼ା ହସି କହିଲା—ବାଃ ବେଶ୍ ହେଲା । ନିର୍ମଳା, ତୁ ଓସ୍ତାଦକୁ ଭାଇ ଡାକିବୁ । ଭାଇଦ୍ୱିତୀୟା*ରେ ଟିପା ଦବୁ ଓସ୍ତାଦକୁ । କିନ୍ତୁ ହଁ, ଲୁଗା ଦବାକୁ ହବ !

---

* ବଙ୍ଗଳାର ପର୍ବ । ଭାଇଙ୍କୁ ଚନ୍ଦନ ଓ ଅନ୍ୟାନ୍ୟ ସୁଗନ୍ଧର ଟିପା ଦେବାକୁ ହୁଏ । ଭାଇ ବି ଲୁଗା ଦିଏ ଭଉଣୀକୁ ।

ନଡ଼ାଇ ପରମ ପ୍ରୀତ ହୋଇ କହିଲା—ନିଶ୍ଚୟ ।

ଅନ୍ୟ ଝିଅଟି ରୋଷେଇଘର ଭିତରୁଇ କହିଲା—କିନ୍ତୁ ତା ହେଲେ ମୁଁ ଠାକୁରାଣୀ (ନଣନ୍ଦ) ବନିଲି ।

ପ୍ରୌଢ଼ା ଖୁସି ହୋଇ ସେଥିରେ ମତ ଦେଇ କହିଲା—ବେଶ୍ ଭଲ କହୁଚୁ ଲଳିତା, ବେଶ୍ କଥା । ବସନ୍ତ ତତେ ଅପା ବୋଲି ଡାକେ ।

ନଡ଼ାଇର ହାତରୁ ଗୁହା ଗିଲାସଟା ଖସିପଡ଼ିଗଲା—ଠାକୁରାଣୀ ! ଠାକୁରାଣୀ !

ରାତିର ଅଗ୍ରଗତି ସଙ୍ଗରେ ତାଲ ରଖି ଗୋଟାଏ ବିଭତ୍ସ ଦୃଶ୍ୟ ଫୁଟିଉଠିଲା । ନଡ଼ାଇ ପାଖରେ ଏ ଦୃଶ୍ୟ କିଛି ଅପରିଚିତ ନୁହେଁ । ମେଳା-ମହୋତ୍ସବର ଆଲୋକୋଜ୍ଜ୍ୱଳ ସମାରୋହର ଗୋଟିଏ ବିପରୀତ ଦିଗ ରହିଛି । ସେ ଦିଗଟି ସହଜେ ମଣିଷର ଆଖିରେ ପଡ଼େନା । ଆଲୋକର ବିପରୀତ ଅନ୍ଧକାରରେ ଢଙ୍କାହୋଇ ରହିଥାଏ ସେ ଆଡ଼ଟା । ଗାଢ଼ ଅନ୍ଧାରରେ ଢଙ୍କା ହୋଇ ବିପରୀତ ଦିଗଟିରେ ମାତିଉଠେ ସରୀସୃପ ପରି ମଣିଷର ଭିତର ଆଦିମ ପ୍ରବୃତ୍ତିର ଭୟାବହ ଆତ୍ମପ୍ରକାଶ ସେଠାରେ । ଅବଶ୍ୟ ନଡ଼ାଇର ଯେଉଁ ପରିବେଶ ମଧ୍ୟରେ ଜନ୍ମ, ସେହି ପରିବେଶ ମଧ୍ଯ ଅବଷ୍ଥାପନ୍ନ ସଭ୍ୟସମାଜର ଭିତରଚଲା ଅନ୍ଧାରରେ ଥିବା ବିପରୀତ ଦିଗ । ତାହା ସଭ୍ୟସମାଜର ଆବର୍ଜନା ପକାଇବାର ସ୍ଥାନ । ସେଠାରେ ବି ଅନାବିଷ୍କୃତ ଚିର ଅନ୍ଧକାର—ମେରୁଲୋକ ଭଳି ଚିର ଅନ୍ଧକାର । ଏ ଧରଣର ବିଭତ୍ସତା ସାଙ୍ଗରେ ତାହାର ପରିଚୟ ଯେ ନାହିଁ ତା ନୁହେଁ । ତଥାପି ଏପରିଭାବରେ ପ୍ରତ୍ୟକ୍ଷ ମୁହାଁମୁହିଁ ହୋଇ ସେ କେବେହେଲେ ଠିଆହୋଇନାହିଁ । ସେ ଅଶନିଃଶ୍ୱାସୀ ହୋଇଗଲା ।

ନିର୍ମଳା ଏବଂ ଲଳିତାଙ୍କ ଘରକୁ ଆଗନ୍ତୁକ ଆସିଛନ୍ତି । ମଦ୍ୟ ଜଡ଼ିତ ଯୁବ-କଣ୍ଠର ଅଶ୍ଳୀଳ ହାସ୍ୟ-ପରିହାସ ଶୁଭୁଅଛି ।

ବସନ୍ତର ଘର ଭିତରୁ ସେହି ଲୋକ ଦି'ଜଣ ଚାଲିଗଲେଣି; ପୁଣି ନୂଆ ଆଗନ୍ତୁକ ଆସିଲେଣି ।

ପ୍ରୌଢ଼ା ଦଳର ପୁରୁଷଗୁଡ଼ିକୁ ନେଇ ମଦ ଖାଇବାକୁ ବସିଯାଇଛି । ନଡ଼ାଇକୁ ପୁଣି ଥରେ ଗୁହା ଦିଆହୋଇଛି । ସେ ଭାବୁଥିଲା ଠାକୁରାଣୀ କଥା । ଇଚ୍ଛା ହେଉଥିଲା—ଏଇକ୍ଷଣିକା ସେ ଏଠୁ ଦଉଡ଼ି ପଳାଇଯାଏ ଯେପରି । କଳଙ୍କିତ ତାର ହୋଇକରି ରହିଛି, ସେ କଳଙ୍କର ଛିଟା ଠାକୁରାଣୀର ଅଙ୍ଗରେ ବି ଲାଗିଛି । ହୁଏତ ତାହାର ସ୍ୱାମୀ ଏଥିଲାଗି

ତାହାକୁ ପରିତ୍ୟାଗ ହିଁ କରିଦେବେ—ଘରୁ ତଡ଼ିଦେବେ । ଦଶଜଣଙ୍କ ଡରରେ ତାର ବାପ ବି ହୁଏତ ତାକୁ ଘରେ ଥାନ ଦେବେନି । ଆଜି ତାହାର ସବୁକିଛୁ ଲଜ୍ଜା ଶେଷ ହୋଇଯାଇଛି । ଘର ଭାଙ୍ଗିବାକୁ ଆଉ ବାକି ରହିନାହିଁ । ଭାଙ୍ଗି ତ ପଡ଼ିଛି ପୁରାପୁରି । ତାର ଆଉ ଡର କୋଉ କଥାକୁ ? ଆଜି ତ ନିତାଇ ଯାଇ ଠାକୁରଝିଅର ହାତ ଧରିକରି କହିପାରେ—'ଆସ, ଆଜିଠାରୁ ତମର ବି ଯେଉଁ ଗତି, ମୋର ବି ସେଇ ଗତି ।' ନିତାଇ ଚଞ୍ଚଳ ହୋଇଉଠିଲା । ପୁଣି ଅନେକ ସମୟ ଭାବି ସେ ଠିକ୍ କଲା—ଯିବ ସେ ନିଶ୍ଚୟ ଏମାନଙ୍କର ଏଇ ମେଳାର ଗୀତର ଆସର ସାରି ସେ ଚାଲିଯିବ । କିନ୍ତୁ ଗାଆଁକୁ ନୁହେଁ, ଅନ୍ୟ ଯେଉଁଠି ହେଉ—ଏତେବଡ଼ ଦୁନିଆଁରେ ଯୁଆଡ଼େ ମନ ଯିବ ସେଇଆଡେ ଚାଲିଯିବ । ମୁହୂର୍ତ୍ତିକରେ ପୂର୍ବର ଚିନ୍ତା-କଳ୍ପନା ସବୁ ତାହାର ବଦଳି ଯାଇଛି—ନା ନା—ତା ହୁଏନା । ଠାକୁରଝିଅର ଭଙ୍ଗା ଘର ପୁଣି ଯୋଡ଼ିଯିବ, ତାହାର ସୁଖର ସଂସାର ପୁଣି ସୁଖରେ ଭରିଉଠିବ ।

ଠାକୁରଝି ତାହାକୁ ଭୁଲିଯାଉ । ନ ଦେଖିଲେଇ ଭୁଲିଯିବ । ସନ୍ତାନ-ସନ୍ତତିରେ ତାର କୋଳ ପୂରିଉଠୁ, ସୁଖ-ସମ୍ପଦରେ ସଂସାରଟା ଉଚ୍ଛୁଳିପଡ଼ୁ, ସ୍ୱାମୀ ସନ୍ତାନ ସଂସାର ଘେନି ସେ ସୁଖୀ ହୋଇ ରହୁ ।

## ଚଉଦ

ଗତ ରାତିସାରା ପ୍ରାୟ ବିନିଦ୍ର ହୋଇକରି ସେ ଯାପନ କରିଥିଲା । କୌଣସି ପ୍ରକାରେ ନିଦ ଆସିଲା ନାହିଁ । ଭୋରରୁ ଉଠିକରି ସେ ଝୁମର୍ ଦଳର ଆସ୍ଥାନରୁ ବାହାରି ପଡ଼ିଲା । ଗୋଟିଏ ପ୍ରକାଣ୍ଡ ପୋଖରୀକୁ ମଝିରେ ରଖି, ପୋଖରୀର ଚାରିକଡ଼ ଘେରି ମେଳା ବସିଅଛି । ରାସପୂର୍ଣ୍ଣିମାର ରାସୋତ୍ସବ ମେଳା, ପୋଖରୀର ପୂର୍ବପଟରେ ରାଧାଗୋବିନ୍ଦଙ୍କର ମନ୍ଦିର; ପାଖରେ ଅଛି ସେବାୟତ ବୈଷ୍ଣବ ବାବାଜୀଙ୍କ ଆଖଡ଼ା । ମୁହଁହାତ ଧୋଇ ନିତାଇ ସେଇ ରାଧାଗୋବିନ୍ଦଙ୍କ ମନ୍ଦିରରେ ଯାଇ ବସିଲା । ରାସମଞ୍ଚରେ ଅଷ୍ଟସଖୀ-ପରିବୃତ ରାଧାଗୋବିନ୍ଦଙ୍କୁ ଦେଖି ତାକୁ ବଡ଼ ଭଲ ଲାଗିଲା । ସେହିଠାରେଇ ବସି ସେ ଗୀତ ବାନ୍ଧିବା ଆରମ୍ଭ କରିଦେଲା—ରାଧାକୃଷ୍ଣଙ୍କର ଯୁଗଳରୂପର ସ୍ତବଗାନ । ପ୍ରଥମେ ଗୁଣୁଗୁଣୁ କରି ଗୀତଟି ରଚନା ଶେଷ କରି—ବେଶ୍ କଣ୍ଠ ଖୋଲି ଗୀତ ଆରମ୍ଭ କଲା ।

ମିଠା କଣ୍ଠର ଗୀତରେ ବେଶ୍ କିଛି ଲୋକ ବି ଜମିଗଲେ । ଅଖଡ଼ାର ମହନ୍ତ ବି ବାହାର ଆସିଲେ ।

ନିତାଇ ଗାଉଥିଲା —

"ମନଭରି ଦେଖି-ଯା ନୟନ ଯୁଗଳ-ରୂପର ମାଧୁରୀ !"

ମହନ୍ତ ଆଖି ବୁଜି ମଥା ହଲାଇ ତାଳ ଦେଉଁ ଦେଉଁ ଜଣକୁ କହିଲେ—ଖୋଳଟା ଆଣିବୁଟି ବାପା !

ମହନ୍ତ ଖୋଳ ନେଇ ନିଜେଇ ସଙ୍ଗତ ଆରମ୍ଭ କରିଦେଲେ । ଗୀତ ଶେଷ ହେବା ପରେ କହିଲେ—ବାଃ ତୁମର କଣ୍ଠଟି ତ ବଡ଼ ଭଲ ! ପଦାବଳୀ * ଜାଣ ବାବା ?

ନିତାଇ 'ପଦାବଳୀ' ଶବ୍ଦଟାର ଅର୍ଥ ବୁଝିପାରିଲା ନାହିଁ । ବିନୀତ ଭାବରେ ପଚାରିଲା —ଆଜ୍ଞା ?

—ମହାଜନ ପଦାବଳୀ ବାପା—ଚଣ୍ଡୀଦାସ, ବିଦ୍ୟାପତି, ଜ୍ଞାନଦାସଙ୍କ ପଦସବୁ ?

ନିତାଇ ହାତ ଯୋଡ଼ିକରି କହିଲା—ପ୍ରଭୁ, ଅଧୀନର ଅଧମ ନୀଚ କୁଳରେ ଜନମ । ସ୍ୱାକୁ ସବୁ କେମିତି ଜାଣିବ ବାବା ?

ହସିକରି ମହନ୍ତ କହିଲେ—ଜନ୍ମ ତ ବଡ଼ କଥା ନୁହେଁ ବାପା, କର୍ମ ହିଁ ବଡ଼ । ମହାପ୍ରଭୁ ମୋର ଆଚଣ୍ଡାଳଙ୍କୁ କୋଳେଇ ନିଅନ୍ତି ।

କ୍ଷଣକରେ ନିତାଇର ଆଖିଦୁଇଟି ପାଣିରେ ପୂରିଉଠିଲା, କହିଲା—କର୍ମ ବି ଯେ ଅତି ହୀନ ପ୍ରଭୁ; ଝୁମୁରଆଦଲରେ—ବେଶ୍ୟାମାନଙ୍କ ସାଙ୍ଗରେ ଥାଏ, କବିଗାନ କରେଁ ।

—କବିଗାନ କର ?

—ଆଜ୍ଞା ହଁ ପ୍ରଭୁ !

—ଯୋଉ ଗୀତଟି ଏଇଲା ଗାଉଥିଲ, ସେଇଟା କଣ ତମର ଗୀତ ?

ମୁଣ୍ଡ ନୁଆଁଇ ଲଜ ଲଜ ହୋଇ ନିତାଇ କହିଲା—ଆଜ୍ଞା ହଁ ।

ମହନ୍ତ ସାଧୁବାଦ ଦେଇ କହିଲେ—ବେଶ୍ । ବେଶ୍ । ଚମତ୍କାର ଗୀତ ! ତାପରେ କହିଲେ—କର୍ମ ତ ତମର ଅତି ଉଚ୍ଚ କର୍ମ ବାପା ! ତମର ଆଉ ଭାବନା କଣ ? ଯେଉଁମାନେ କବି, ସେଇମାନେ ହେଲେ ସଂସାରରେ ମହାଜନ, ସେଇମାନେଇ ତ ସାଧକ । କବିର ଗୀତରେ ଭଗବାନ୍ ବିଭୋର ହୁଅନ୍ତି । ଚଣ୍ଡୀଦାସଙ୍କ ପଦାବଳୀ ଶୁଣି ମହାପ୍ରଭୁ ଭାବରେ ବିଭୋର ହୋଇ ନାଚୁଥିଲେ ।

---

* ବଙ୍ଗଳାର ବିଖ୍ୟାତ 'ବୈଷ୍ଣବ ପଦାବଳୀ ।'

ଥପ୍-ଥପ୍ କରି କେଇ ବୁନ୍ଦା ଲୁହ ନତାଇର ଆଖିରୁ ଝରିପଡ଼ିଲା । ସେ କହିଲା—କିନ୍ତୁ ସଙ୍ଗ ଯେ ଅତି ନୀଚସଙ୍ଗ ବାବା, ବେଶ୍ୟା—

ମହାନ୍ତ ହସି ହାତ ଉଠାଇ ଇସାରାଦ୍ୱାରା ନତାଇକୁ ବାଧା ଦେଲେ, କହିଲେ—ପ୍ରଭୁଙ୍କ ଦୁନିଆଁରେ ନୀଚ ବୋଲି କେହି ନାହିଁ ବାପା ! ନିଜେ, ଆଉ କେହି ନୁହେଁ—ନିଜେ ନୀଚ ହେଲେ ସେଇ ଛୁଆଁ ଲାଗି ପରମାନେ ବି ନୀଚ ହୁଅନ୍ତି । ନୀଳ ଚଷମା କେବେ ଆଖିରେ ଦେଇଛ ବାପା ? ସୂର୍ଯ୍ୟଙ୍କ କିରଣ ନେଳି ଦେଖାଯାଏ । ତମର ଆଖିର ଚଷମା ଭଳିଆ ତମର ମନର ଘୃଣା ପରକୁ ଘୃଣ୍ୟ କରିଦିଏ । ମନର ବିକାଶ ଯୋଗୁ ଏମିତି ସୁନ୍ଦର ପୃଥିବୀ ଉପରେ ରାଗ କରି ମଣିଷ ଆତ୍ମହତ୍ୟା କରି ମରେ । ଆଉ ବେଶ୍ୟା ? ବାପା, ଚନ୍ଦ୍ରାମଣି ବେଶ୍ୟା—ସାଧକ ବିଲ୍ୱମଙ୍ଗଳର ପ୍ରେମର ଗୁରୁ । ଜାଣ ବାପା ବିଲ୍ୱମଙ୍ଗଳ କଥା ?

ନତାଇ ବିଲ୍ୱମଙ୍ଗଳ କଥାଟି ଜାଣିଥିଲା । ଗାଆଁର ବାବୁମାନଙ୍କ ଥିଏଟରରେ ବିଲ୍ୱମଙ୍ଗଳ ସମାଜଟି ସେ ଦେଖିଅଛି । ସେ କହିଲା—ହଁ । ପୁରା ଗପଟାଇ ତାର ମନେ ପଡ଼ିଗଲା ।

ମହାନ୍ତ ସସ୍ନେହେ କହିଲେ—ତା ହେଲେ ?

ନତାଇ ଫେରିଆସିଲା ଅଦ୍ଭୁତ ଗୋଟିଏ ମନ ଘେନି । ଝୁମରଦଳର ଝିଅଗୁଡ଼ିକ ଗୀତ-ବାଜଣା ସାଙ୍ଗରେ ନାଚନ୍ତି, ସୁର-ତାଳରେ ପାରଦର୍ଶିନୀ ବୋଲି କବିୟାଲ ନତାଇ ସେମାନଙ୍କୁ ବାହାରେ ବାହାରେ ଖାତିର କରୁଥିଲା; କିନ୍ତୁ ମନର ଗୋପନ କୋଣରେ ଘୃଣା ହିଁ ସଞ୍ଚିତ ଥିଲା । ଆଜି ଏହି ମୁହୂର୍ତ୍ତରେ ସେ ଟିକିକ ବି ଯେମିତି ପୋଛି ସଫା-ହୋଇଗଲା । ମନଟା ଯେପରି ତାହାର ଶୀତଳ ହୋଇଯାଇଛି । ଫେରିବା ବାଟରେ ବାରମ୍ବାର ତାହାର ଆଖିରେ ପାଣି ଜମିଗଲା । ଲୁଗାକାନିରେ ସେ ଆଖି ପୋଛିଲା ଓ ମନେ ମନେ ବାବାଜୀଙ୍କୁ ନମସ୍କାର କଲା । ମନେ ମନେ ସଂକଳ୍ପ କଲା ଗୋବିନ୍ଦଙ୍କ ପ୍ରସାଦ ସଙ୍ଗେ ସେ ବାବାଜୀଙ୍କ ପ୍ରସାଦକଣା ବି ମାଗିନେବ ।

ଝୁମରଦଳର ଆସ୍ଥାନକୁ ଆସି ସେ ଅବାକ୍ ହୋଇଗଲା । ମନେ ହେଲା, ଇଏ ବି ଯେମିତି ଗୋବିନ୍ଦଙ୍କର କୃପା ।

ଆଶ୍ଚର୍ଯ୍ୟ ! ଆଜିର ପ୍ରଭାତର ଏହି ସ୍ଥାନ ଓ ପାତ୍ରପାତ୍ରୀଗୁଡ଼ିକଙ୍କର ଚେହେରା ସାଙ୍ଗରେ ଗଲା ରାତ୍ରିର ସ୍ଥାନ ଓ ପାତ୍ରପାତ୍ରୀଙ୍କର ଟିକେହେଲେ ସାମଞ୍ଜସ୍ୟ ନାହିଁ । ପୂରା ଜାଗାଟି ଗୋବରମାଟିଦେଇ ଅତି ପରିପାଟୀ କରି ଲିପାପୋଛା କରାହୋଇଛି । ଗଛ-ମୂଳରେ ଗୋଟିଏ କଦଳୀପତ୍ରରେ ବେଶ୍ କିଛି ଫୁଲ୍ । ଝିଅମାନେ ଗାଧୋଇସାରି ଜଳସିକ୍ତ ବାଳ ପିଠିରେ ମୁକୁଳାଇ ଦେଇ ଶାନ୍ତଭାବେ ବସିଛନ୍ତି; ସମସ୍ତଙ୍କ ଦେହରେ ଅଛି

ନାଲଧଡ଼ିଆ ଶାଢ଼ୀ—ଗୋଟିଏ ନବଜ ଏବଂ ଗମ୍ଭୀର ଶାନ୍ତ ପବିତ୍ରତାର ଆଭାସ ଯେପର ସର୍ବାଙ୍ଗ ପରସ୍ଫୁଟ ।

ବସନ୍ତ ପଛ ବୁଲାଇ ବସିଥିଲ, ନର୍ମଳା ଓ ଲଳତା ବସିଥିଲେ ଏ ଆଡ଼କୁ ମୁହଁକର । ସେମାନେ ଅଭ୍ୟର୍ଥନା କର କହଲେ—ଭଲ ମଣିଷ ଯା' ହଉ ତମେ । ଏତେବେଲଯାକେ କୁଆଡ଼େ ଥିଲ କହଲ ଦେଖି ?

ବସନ୍ତ ମୁହଁ ବୁଲାଇ ଗୃହିଁଲ । ନତାଇ ମୃଦୁ ହସିଲ । ବସନ୍ତ ମୁହଁ ବୁଲାଇନେଲ ଏବଂ ପର ମୁହୂର୍ତ୍ତରେ ସେ ଉଠି ରୋଷେଇଘରକୁ ଗୃଲଗଲ । ନତାଇ ଆସି ନର୍ମଳା ଓ ଲଳତାଙ୍କ ପାଖରେ ବସି କହଲ—ବାଃ ଖୁବ୍ ଭଲଲାଗୁଚ ଜନ୍ତୁ । ଗୃଣଆଡ଼ ଲପାପୋଛା; ତମେମାନେ ଗାଧେଇଚ, ନାଲଧଡ଼ିଆ ଶାଢ଼ୀ ପିନ୍ଧଚ—

ହସିକର ନର୍ମଳା କହଲ—ଆଜ ପର ଲକ୍ଷ୍ମୀପୂଜା ଭାଇ !

—ଲକ୍ଷ୍ମୀପୂଜା ?

—ହଁ । ପୂର୍ଣ୍ଣିମା ଗୁରୁବାର, ଆମର ବାରମାସିଆ ଲକ୍ଷ୍ମୀପୂଜା ଆଜ ।

ନତାଇ ଅବାକ୍ ହୋଇଗଲ ! ଏତେଦନ ମିଳାମିଶା କର ମଧ୍ୟ ଏ କଥାଟା ସେ ଜାଣି ନଥିଲ । ଏମାନଙ୍କର ବ ଧର୍ମକର୍ମ ରହଚ୍ଛ । ସେ ପଗୃରଲ—କେତେବେଲେ ହବ ଲକ୍ଷ୍ମୀପୂଜା ?

—ସେ ଯାଇ ସନ୍ଧ୍ୟପହରକୁ । ଆଜ ତମର ପାଲ ଆରମ୍ଭ ହବାକୁ ନଅଟା ବାଜଯିବ, ତା ଆଗରୁ ନୁହଁ ।

ପ୍ରୌଢ଼ା କହଲ—ମୋ ବାପା ଭକ୍ତମାନ ଲୋକ । ଭଲ ଲୋକ !

ଲଳତା ବଚସ ହସ ହସି କହଲ—ଲୋକ ଭଲ; କନ୍ତୁ ପାଲଟା ମୋଗଲ-ମାରକା । ଖାନା—

ପ୍ରୌଢ଼ା ଇଙ୍ଗିତ କର କହଲ—ଚୁପ୍ ।

ବସନ୍ତ ଆସି ଠିଆହେଲ; ତା ହାତରେ ଗିଲାସଟିଏ । ଗିଲାସଟି ବଢ଼ାଇଦେଇ ସେ କହଲ—ନଅ ।

ନତାଇ ତା ମୁହଁକୁ ଗୃହିଁ କହଲ—କଣ ?

ମୁହଁ ମୋଡ଼ି ବସନ୍ତ କହଲ—ମଦ ନୁହେ ମ, ଧର !

ନତାଇ ଗିଲାସଟି ନେଇ ଦେଖିଲ—ସଦ୍ୟ ପ୍ରସ୍ତୁତ ଧୂମାୟିତ ଗୃହା ।

ଲଳତା ହସି କହଲ—ଦେଖିଶୁଣି ଖାଇବ ମ ଜୋଇଁ, ବଶୀକରଣ ପାଇଁ ଔଷଧ ମିଶେଇଚ ସେଥିରେ ।

ବସନ୍ତ ଗୃଲଯାଉଥିଲ । ସେ ବୁଲି ଠିଆହୋଇ ମୁହଁ ବଙ୍କେଇ କହଲ—ପୋଡ଼ା-

ମୁହଁରେ ନିଆଁ ।

ନିତାଇ ହସିକରି କଥାଟାକୁ ନିଜ ଦିହକୁ ଟାଣିନେଇ କହିଲା—ହଉ, ସେଇଆ ଦିଅ ମତେ, କୋଇଲାର ମଇଳା ଗୁଚିଯାଉ । ନିଆଁ ପରି ବରଣ ହଉ ମୋର । ଜାଣିଚ ?

"ନିଆଁ ତାର ପରଶ ଦେଲେ କଳା କୋଇଲା ରଙ୍ଗା ବରଣ ।"

ଲଳିତା ଖିଲଖିଲ କରି ହସି କହିଲା—ଯାଉନ, ନିଆଁ ର ଧାସ ତ ଜଳୁଚି ପଡ଼ି; ଦିହରେ ଦିହରେ ପରଶ ନେଇ ନିଆଁ ଧରେଇ ଦିଅନିଆସ ।

ବସନ୍ତର ଆଖିରେ ଝୁଣ୍ଟିର ଦାଢ଼ ଉଜଳି ଉଠିଲା; କିନ୍ତୁ ପରେ ପରେ ସେ ହସି କହିଲା—ମଦ ଜଳେ ଦେଖିଚୁ ତ ? କହି ନିଜର ଦେହଟା ଦେଖାଇ ସେ କହିଲା—ଇଏ ହଉଚି ମଦର ନିଆଁ । କହି ସେ ଘର ଭିତରକୁ ଚାଲିଗଲା ।

ନିତାଇର ମନେପଡ଼ିଗଲା ଗତ ରାତିର କଥା; ସେ ହସିଲା ।

ଏହାରି ଭିତରେ ନିତାଇ ବସନ୍ତର ହୋଇଯାଇଛି । ବସନ୍ତ ଜାଣିଛି ନିତାଇ ତାହାରି ।

ଝୁମୁରିଆମାନଙ୍କର ସେଦିନ ଦିନସାରା ଉପାସ । ସେ ଉପାସ ସେମାନେ ନିଷ୍ଠା ସହିତ ପାଳନ କଲେ । ସନ୍ଧ୍ୟାରେ ଫଳମୂଳ, ସନ୍ଦେଶ, ଦୁଧ, ଦହି, ନାନା ଉପଚାରରେ ଓ ଫୁଲ, ଧୂପ-ଦୀପ ନାନା ଆୟୋଜନରେ ପରମଭକ୍ତିରେ ସେମାନେ ଲକ୍ଷ୍ମୀପୂଜା କଲେ । ପୂଜାଶେଷରେ ପ୍ରୌଢ଼ାକୁ କେନ୍ଦ୍ର କରି ଗୋଟିଏ ଗୋଟିଏ ଗୁଆ ଧରି ବ୍ରତକଥା ଶୁଣିବାକୁ ବସିଗଲେ । ନିତାଇ ଅଦୂରରେ ବସିଥିଲା । ଅନ୍ୟ ପୁରୁଷମାନେ ଦୂରରେ ମଦ୍ୟପାନ କରିବାକୁ ବସିଯାଇଛନ୍ତି । ମଦ ଖାଇବା ଭିତରେଇ ସେମାନେ ରାତିର ଆସର ଲାଗି ସାଜସଜ୍ଜା କରୁଛନ୍ତି । ବେହେଲାଦାର ବେହେଲାର ପରିଚର୍ଯ୍ୟାରେ ବ୍ୟସ୍ତ; ବାର୍ଣ୍ଣିସ ଶିଶି, ତାର, ରଞ୍ଜନ ନେଇ ବସିଅଛି । ପାଳିଆଟା ଢୋଲିଆ ସାଙ୍ଗରେ ତାଳ ନେଇ ଯୁକ୍ତି ଲଗାଇଛି । ହାତରେ ତାଳ ଦେଉଛି, ଆଉ କହୁଅଛି—ଏଇ—ଏଇ—ଏଇ ଫାଙ୍କ୍ । ବାଜଣାଦାର ମନକୁ ମନ ବଜାଇ ଲାଗିଛି । ସେ ପାଳିଆ କଥା କାନକୁ ବି ନେଉନାହିଁ ।

ମହିଷିପରି ଲୋକଟା ମଦନିଶାରେ ଢୁଲାଉଅଛି । ସାମନାରେ ଜଳୁଛି ଧୁନି ! ଅଗ୍ନିକୁଣ୍ଡରେ ମୋଟା କାଠର ଫାଳିଆ ଖୋସିଦିଆ ହୋଇଅଛି । ଧୂଆଁ ସାଙ୍ଗରେ ଲାଲ ନିଆଁ ର ଶିଖା ଜଳୁଅଛି । ଲୋକଟା ଝୁମୁରଦଳର ପହରାଦାର । ଚୁପ୍ କରି ବସି

ରହିଛୁ । ଅଦୂରରେ ଝିଅଙ୍କର ଆସର ବସିଛୁ । ତାହାର କେନ୍ଦ୍ରସ୍ଥଳରେ ପ୍ରୌଢ଼ା ବ୍ରତ-କଥା ଶୁଣାଉଥାଏ ।

ବ୍ରତକଥା ଶେଷ ହେଲା । ହୁଳହୁଳି ଦେଇ ସମସ୍ତେ ଲକ୍ଷ୍ମୀଙ୍କୁ ପ୍ରଣାମ କଲେ ! ତା ପରେ ପ୍ରସାଦ ନେଇ ଚାଲିଗଲେ ଯେଝା ଘରକୁ, ଅର୍ଥାତ୍ ସେଇ କୁଟୀର କୋଠରିକୁ । ପ୍ରୌଢ଼ା ପୁରୁଷମାନଙ୍କୁ ଡାକି କହିଲା—ଯା ସଭିଏଁ ପ୍ରସାଦ ପାଇବ ଯା । ଅର୍ଥାତ୍ ଖାଇବ ଯା ।

ନିତାଇ ଗୋଟାଏ ଗଛମୂଳେ ବସିଥିଲା । ବସନ୍ତ ନିଜ ଘରଭିତରେ ପଶିବା ସମୟରେ ଦୁଆରେ ଛିଡାହୋଇ ତାକୁ ଡାକିଲା—ଶୁଣ ।

—ମତେ ଡାକୁଚ ?

—ହଁ ।

ଆଜି ଏଇ ନିଷ୍ଠାବତୀ ବସନ୍ତ ପାଖକୁ ଯିବାକୁ ନିତାଇର ଏତେ ଟିକିଏ ସଙ୍କୋଚ ହେଲା ନାହିଁ । ଘରକୁ ପଶି ସେ ପରମାତ୍ମୀୟ ଭଳି ସ୍ନେହ-ମଧୁର ହସ ହସି କହିଲା—କଣ କହୁଚ କୁହ ?

ବସନ୍ତ ତା ମୁହଁକୁ ଚାହିଁ ଅକସ୍ମାତ୍ ଆଖି ନୁଆଁଇ ମୃଦୁ ମିଠା ସ୍ୱରରେ କହିଲା—ଟିକେ ପ୍ରସାଦ ଖାଅ ।—କହିଦେଇ ସେ ପରିପାଟି କରି ଠାଆ ପକାଇ ଗୋଟିଏ ପତ୍ରରେ ଫଳମୂଳ ସନ୍ଦେଶ ସଜାଇ ଦେଲା । ବସନ୍ତର ଏଇ ନୂଆ ରୂପ ଦେଖି ନିତାଇ ମୁଗ୍ଧ ହୋଇଗଲା । ସେଇ ବସନ୍ତ ଏମିତି ହୋଇପାରେ ?

ନିତାଇ ଆସନ ଉପରେ ବସିପଡ଼ିଲା । ଖାଉ ଖାଉ କହିଲା—ତମର ଜୟ-ଜୟ-କାର ହେଉ ।

ବସନ୍ତ କହିଲା—ଟିକେନାକୁରୁ ପ୍ରସାଦ * ରଖିଦେଇଥିବ ଯେମିତି ।

ଚକିତ ହୋଇ ନିତାଇ କହିଲା—ପ୍ରସାଦ ?

— ହଁ । ନାଗରର ପ୍ରସାଦ ଖାଇବାକୁ ହୁଏ । ସେ ହସିଲା । ବସନ୍ତ ମୁହଁରେ ଏମିତି ହସ ନିତାଇ କେବେ ଦେଖିନାହିଁ । ସେ ଅବାକ୍ ହୋଇ ତା ମୁହଁକୁ ଚାହିଁ ରହିଲା । ବସନ୍ତ ଜିନିଷପତ୍ର ସଜାଡ଼ିବା ବାହାନାରେ ତା ଆଡ଼କୁ ପଛକରି ରହିଥିଲା । ଗୁଣୁଗୁଣୁ କରି ସେ ଗୀତ ଗାଉଥାଏ । ନିତାଇ ସେ ଗୀତ ଶୁଣିକରି ମୁଗ୍ଧ ହୋଇଗଲା—

* ଏଠାରେ ଅଇଣ୍ଠା ଅର୍ଥରେ ବ୍ୟବହୃତ ।

"ତମର ଚରଣେ ମୋହର ପରାଣେ ଲାଗିଲା ପ୍ରେମର ଫାଶି ।
ଜାତିକୁଳମାନ ସବୁ ବିସର୍ଜିଲି ନିଷ୍ଟସ୍ବ ହୋଇଲି ଦାସୀ ।"

—ବାହା ! ବାହା ! ବାହା ! କି ଗୀତ ! ନିତାଇ ଉତ୍କର୍ଣ୍ଣ ହୋଇ ଶୁଣୁଥିଲା ।

"କହେ ଚଣ୍ଡୀଦାସ—"

—କଣ ? କଣ ? ବସନ ! ଚଣ୍ଡୀଦାସ କଣ ?

ଦୁଇ ହାତକୁ କପାଳରେ ଲଗାଇ ପ୍ରଣାମ କରି ବସନ୍ତ କହିଲା—ମହାଜନଙ୍କ ଗୀତ; ଚଣ୍ଡୀଦାସଙ୍କ ପଦ ଯେ ଇଏ ।

ଚଣ୍ଡୀଦାସଙ୍କ ପଦ ତମେ ଜାଣ ?

—ଜାଣେ ! ବସନ୍ତ ହସିଲା ।—ଆମର ଗୀତଖାତାରେ କେତେ ପଦ ଏମିତି ଲେଖା ଅଛି ।

## ପନ୍ଦର

ରାତି ନଅଟା ପରେ ଦୁଇ ଦଳର ଲଢ଼େଇ-ପାଲା ଆରମ୍ଭ ହେଲା । କିନ୍ତୁ ତା ଭିତରେ ଚଣ୍ଡୀଦାସଙ୍କ ଗୀତ, ମହାଜନଙ୍କ ପଦ ନାହିଁ । ଆକାଶ ପାତାଳ ଫରକ୍ । ରାତିର ଆଲୋକୋଜ୍ଜ୍ୱଳ ମେଳାର ନୈଶ-ଆନନ୍ଦ-ସନ୍ଧାନୀ ମନୁଷ୍ୟଙ୍କ ଭିତରେ ନଗ୍ନ ଜୀବନର ପ୍ରମତ୍ତ ତୃଷ୍ଣାର ଗୀତ ବେଶୀ । ବନ୍ଧଖଣ୍ଡ ଭିତରେ ପ୍ରବୃତ୍ତିର ଉତ୍ତାପରେ ଆନନ୍ଦରସ ଫେନାୟମାନ ମଦ୍ୟରସ ଭଳି ଉକୁଟି ଆସୁଛି ।

ପ୍ରଥମ ଆସର ପାଇଥିଲା ବିପକ୍ଷ ଦଳ । ସେ ଦଳର କବିୟାଲଟି ରଙ୍ଗତାମସାରେ ଦକ୍ଷ ଲୋକ । ଆସରରେ ଠିଆହେଲା ମାତ୍ରକେ ସେ ନିଜେ ହେଲା ବୃନ୍ଦା ଦୂତୀ—ନିତାଇକୁ କଲା କୃଷ୍ଣ । ପାଲା ଆରମ୍ଭ କଲା ମାନଭଞ୍ଜନ । ଅଭିମାନିନୀ ନାୟିକାର ଦୂତୀ-ରୂପେ ସେ ଗୀତରେ କୃଷ୍ଣଙ୍କୁ ଗାଲିଗୁଲଜ ଦେବାକୁ ଆରମ୍ଭ କଲା ବୃନ୍ଦା । ଧରିଲା—

"କାଦୁଆ ଜାମୁର ପଙ୍କୁଆ କଷା ରସରେ ସଖି ମଜିଛୁ କାଳା
ଆମ୍ବ ଦହରେ ମିଛରେ ରଙ୍ଗ—ଧରିଲା ମିଛେ ସୁବାସ ଡାଳି
କାଦୁଆ ଜାମୁ ଚନ୍ଦ୍ରାବଳୀ—
ପାଚିଲା ଆମ୍ବ ରାଇ କିଶୋରୀ—"

ତାହାପରେଇ ସେ ଆରମ୍ଭ କରିଦେଲା ଖେଉଡ଼ * । ଚନ୍ଦ୍ରାବଳୀର ରୂପଗୁଣ କାଦୁଆ ଜାମୁ ସହିତ ତୁଳନା ଉପଲକ୍ଷ୍ୟ କରି ସେ ବସନ୍ତର ରୂପଗୁଣର ଅଶ୍ଳୀଳ ବିକୃତ ବ୍ୟାଖ୍ୟା ଆରମ୍ଭ କରିଦେଲା । ତେବେ ଲୋକଟାର ଛନ୍ଦ ଉପରେ ଦଖଲ ଅଛି, ଆସରଟାକୁ ଅଶ୍ଳୀଳରସରେ ମାତାଲି କରିଦେଲା । ଏ ଦଳର ପୁରୁଣା କବିୟାଲ, ବସନ୍ତର ଗୁପୁଡ଼ା ଖାଇ ଯେ ଦଳତ୍ୟାଗ କରିଥିଲା, ସେଇ ଲୋକଟା ବସନ୍ତର ପ୍ରତ୍ୟେକ ଦୋଷ ଓ ତ୍ରୁଟିର ସମ୍ବାଦ ସେଇ ଦଳର କବିୟାଲକୁ ଦେଇଛି । କବିୟାଲଟା ବସନ୍ତ ଆଡ଼କୁ ଆଙ୍ଗୁଠି ଦେଖାଇ ଚନ୍ଦ୍ରାବଳୀର ଖେଉଡ଼ ଗାଇଗଲା । ସଙ୍ଗେ ସଙ୍ଗେ ଅଶ୍ଳୀଳ ଭଙ୍ଗିରେ ନୃତ୍ୟ ଆରମ୍ଭ କରିଦେଲେ ବିପକ୍ଷ ଦଳର ଝିଅଯାକ । ସେମାନେ ମଧ୍ୟ ବସନ୍ତ ଆଡ଼କୁ ଆଙ୍ଗୁଠି ଦେଖାଇ ନାଚିଲେ ।

ନିତାଇ ଶଙ୍କିତ ହୋଇପଡ଼ିଲା । ଏଇ ଖେଉଡ଼ର ଆସରରେ ତା ଗୀତ ଜମିବ ନାହିଁ, ଜମାଇ ସେ ପାରିବ ନାହିଁ । ଖେଉଡ଼ ତାର ସେମିତି ହୁଏ ନାହିଁ; ମୁହଁରେ ଯେମିତି ବାଧି ଯାଏ । କିନ୍ତୁ ଶଙ୍କାଟା ତାର ନିଜର ପରାଜୟ ଲାଗି ନୁହେଁ । ସେ ବସନ୍ତ କଥା ଭାବି କରିହିଁ ଶଙ୍କିତ ହୋଇଉଠିଲା । ବସନ୍ତ ଯେମିତିକା ଝିଅ । ଦଣ୍ଡକେ ସେ ନିଆଁ ହୋଇପଡ଼େ ! ଆସର ଭିତରେଇ ସେ କିଛି କାଣ୍ଡ କରିବସିବନି ତ ! ବାରମ୍ବାର ସେ ବସନ୍ତ ମୁହଁକୁ ଚାହୁଁଥିଲା । କିନ୍ତୁ ଏଇ ପାଲସ୍ଥଳରେ ଆଶ୍ଚର୍ଯ୍ୟ ଧୈର୍ଯ୍ୟ ବସନ୍ତର; ଚୁପ୍ ହୋଇକରି ବସନ୍ତ ବସିରହିଛି—ଯେତେ ଥର ନିତାଇ ଆଖିସାଙ୍ଗରେ ଆଖି ମିଳିଲା, ସେତେଥର ତା ମୁହଁରେ ହସ ଫୁଟିଉଠିଲା । ସେ ହସର ଅର୍ଥ ବୁଝିବାକୁ ନିତାଇର ଭୁଲ୍ ହେଲାନି । ବସନ୍ତ ହସି ଇଙ୍ଗିତ କରି କହିବାକୁ ଚାହୁଁଥିଲା—ଶୁଣୁଛ ତ ? ଏହାର ପ୍ରତିଶୋଧ ନେବାକୁ ହେବ । ନିତାଇର ମନେପଡ଼ିଗଲା ଗଲା ରାତିର କେଇଟି କଥା, ବସନ୍ତ ତାକୁ ପ୍ରଥମ ସମ୍ଭାଷଣରେଇ କହିଛି—କୋଇଲି-ମାଣିକ ନୁହଁ, ତମେ ମୋର କାଲାମାଣିକ । ମୋର କଣା ମାଠିଆରେ ପାଣି ରଖିଛ, ମୋର ମାନରଖିଚ ତମେ ।

ବସନ୍ତକୁ ଆଜି ଭଲ ମାନୁଛି । ନାଚର ଆସର ପାଇ ବେଶପଟା ପିନ୍ଧିବାର ତାହାର ଅବସର ହୋଇନାହିଁ । ଖୋଲାବାଲ ହିଁ ପିଠି ଉପରେ ପଡ଼ିରହିଛି, ନାଲିଧଡ଼ିଆ ଟେସରର ଶାଢ଼ିଖଣ୍ଡିକ ସେ ଟିକିଏ ଭିଡ଼ାଭିଡ଼ି କରି ପିନ୍ଧିଅଛି; ସବୁଠାରୁ ଭଲ ଦିଶୁଚି ତାହାର ଆଖିର ସୁସ୍ଥ ଦୃଷ୍ଟି । ଝିଅଯାକ ଆଜି କେହି ହେଲେ ମଦ ଖାଇନାହାନ୍ତି, ସେ ବି ଖାଇନି । କିନ୍ତୁ ଆଶ୍ଚର୍ଯ୍ୟ ! ବସନ୍ତର ଆଖିର ଦୃଷ୍ଟିଟାଇ ସମସ୍ତଙ୍କ ଆଖିର ଦୃଷ୍ଟିଠାରୁ ଉଜ୍ଜ୍ୱଳ ମନେ

* ଅଶ୍ଳୀଳ ଗୀତ ।

ହେଉଛି । ଅଦ୍ଭୁତ ଦୃଷ୍ଟି ବସନ୍ତର । ଆଖିରେ ମଦନଶାର ରଙ୍ଗ ଧରଲେ ତାର ଦୃଷ୍ଟି ଯେପର ରକ୍ତବୋଳା ଛୁରିଭଳି ଲାଲ୍ ଓ ଦାଢ଼ୁଆ ହୋଇଉଠେ । ପୁଣି ସୁସ୍ଥ ବସନ୍ତର ଆଖି ଦେଖି ମନେ ହେଉଛି—ଏ ଆଖି ଯେମିତି ରୂପାର କଜଳପାତି ।

ବିପକ୍ଷ ଦଳର ଓସ୍ତାଦ ଗୀତ ଶେଷ କରି ବସିପଡ଼ିଲା । ଆଖପାଖରେ ଶ୍ରୋତାଙ୍କର ଭିଡ଼ ଜମିଥିଲା ପରି ମାଛହାଟରେ ମାଛି ଭଳିଆ । ପଇସା, ଅଣି, ଦୋଅଣି, ସୁକି, ଅଧୁଲିରେ ତାଙ୍କର ମାଗୁଣିର ଆଳଥାଳ ସେତେବେଳକୁ ଏକବାରକେ ଭରିଉଠିଛି; ପୁରା ଟଙ୍କା ବି ପଡ଼ିଚ ଦୁଇଗଣ୍ଡା ହେବ ! ଗୀତ ଶେଷ ହେବା ମାତ୍ରେ ଶ୍ରୋତାମାନେ ହରିବୋଲ୍ ଦେଇ ଉଠିଲେ—ହରି ହରି ବୋଲ ଭାଇ ! ବିଚାର; ଏହାହିଁ ସେମାନଙ୍କର ସାଧୁବାଦ ।

ପାଖରେ ଶସ୍ତା ବିରି-ପକୁଡ଼ି ଓ ମାଉଁସର ଦୋକାନ—ମଦ ବି ବିକି ହୁଏ ଗୋପନରେ —ସେଠାରେ ଆଉ ଦଫାଏ ଭିଡ଼ ଜମିଗଲା ଏବଂ ଦଳର ଦୁଇଟା ଝିଅଙ୍କୁ ଘେନି ଦୋକାନର ଭିତରଆଡ଼େ ଚେଆର ଟେବୁଲ୍ ଉପରେ ଆଦର କରି ବସେଇ କେତେଜଣ ସଉକିଆ ଚୁପି ଖାଇବାକୁ ବସିଗଲେ ।

କପାଳରେ ହାତ ଲଗାଇ ମା' ଚଣ୍ଡୀଙ୍କୁ ପ୍ରଣାମ କରି ନତାଇ ଉଠିଲା । କିନ୍ତୁ ହାତଗୋଡ଼ ତାର ଝାଳରେ ଓଦା ହୋଇଯାଇଛି । ଗଳାଟା ଯେମିତି ଶୁଖିଯାଉଛି— ଏଡ଼େବଡ଼ ମଦ୍ୟ-ତୃଷାତୁର ଜନତା, ଏମାନଙ୍କୁ କଣ ଦେଇକରି ସେ ତୃପ୍ତ କରିବ ? ଅନେକ ଭାବି ସେ ଗୀତ ଧରିଲା—

"ମଦ ସେ ଗ୍ଲେଟିଆ ନିଶା ନୁହେ
ଆଖିରେ ଲଗାଏ ଧଳା—କଳାକୁ କରେ ଧଳାମଳା
ରାଜା ଯେ ନର୍ଦ୍ଦମାରେ ଶୋଇ ରୁହେ ।"

କବିୟାଲଙ୍କର ସବୁଠୁ ବଡ଼ ବୁଦ୍ଧି ହେଉଛି କୂଟବୁଦ୍ଧି ଏବଂ ବଡ଼ ଶକ୍ତି ହେଲା ଗ୍ରାଟିଚୁଡ୍; ଅର୍ଥାତ୍ ଜୋର-ଜବରଦସ୍ତି କରି ଆପଣା ବକ୍ତବ୍ୟକୁ ପ୍ରତିଷ୍ଠିତ କରିବା । 'ହଁ'କୁ ନାହିଁ ଏବଂ 'ନାହିଁ'କୁ ହଁ କରି ପାଟି-ଜୋରରେଇ କବିୟାଲମାନେ ଜିତିଯାନ୍ତି । ବୁଦ୍ଧି କରି ଅଶ୍ଳୀଲରସର ଗାଳିଗୁଲଜ ବାଦ୍ ଦେଇ ନତାଇ ସେଇ ଚେଷ୍ଟାକଲା । ସେ ଗାଇଲା—

"ବୃନ୍ଦା ତୁମେ ନିନ୍ଦା ମୋର କର ଅକାରଣ
ନୁହେ ଅକାରଣ—କାରଣ ଖାଇ * ମତ୍ତ ଭ୍ରମର ମନ ।"

---

* ମଦକୁ 'କାରଣବାରି' କହନ୍ତି ।

"ନୋହଲେ ଆଗୋ ମାଉଆଲୀ ବୃନ୍ଦା, ତମେ କଷ୍ଟସ୍ୱ ଚନ୍ଦ୍ରାବଳୀର ନନ୍ଦା କର-ନଥାନ୍ତ । ଚନ୍ଦ୍ରାବଳୀ କଏ ? ଯେ ରାଧା, ସେଇ ଚନ୍ଦ୍ରାବଳୀ । ଯେ କାଳୀ, ସେଇ କୃଷ୍ଣ । ଚନ୍ଦ୍ରାବଳୀ ଆଡ଼କୁ ଭଲକର ଗୁହିଁ ଦେଖ । ଆଗେ ତନ୍ଦୁଲ ଖା, ମୁଣ୍ଡରେ ପାଣି ଢାଳ, ନଶା ଯାଉ; ତା ପରେ ଚନ୍ଦ୍ରାବଳୀ ଆଡ଼କୁ ଅନାଅ - ଦେଖିବ, ଚନ୍ଦ୍ରାବଳୀ ଭିତରେ ରାଧା ଓ ରାଧା ଭିତରେ ଚନ୍ଦ୍ରାବଳୀ । ରାଧାତନ୍ତ୍ରର ମାନଭଞ୍ଜନ ପାଲର ଦଶପୃଷ୍ଠାର ଦଶମ ଲଇନ୍ ପଢ଼ି ଦେଖିବ ।" ତାପରେ ସେ ଆରମ୍ଭ କଲ—ଚନ୍ଦ୍ରାବଳୀର ରୂପ ବର୍ଣ୍ଣନା; ଅର୍ଥାତ୍ ବସନ୍ତର ରୂପକୁ ହିଁ ସେ ବର୍ଣ୍ଣନା କଲ । ପୂର୍ବାପୂର୍ ସପ୍ତମ ସ୍ୱର୍ଗରେ ନେଇ ଉଠାଇଦେଲ । ବସନ୍ତ ନାଚୁଥିଲ ! ସୁସ୍ଥ ଦେହ-ମନରେ ଆଜ ସେ ବଡ଼ ଭଲ ନାଚୁଥିଲ;—କିନ୍ତୁ ରୂପଯୌବନ ଆଜ କାମନାମୟ ଲସ୍ୟରେ ତୀବ୍ର ହୋଇ ଉଠିନାହିଁ । ସେଇଟା ନଶାର ଅଭାବରେ ବ ଯେମିତ, ନଡାଇର ଗୀତରେ ସେଇ ରସର ଅଭାବରେ ବ ସେମିତ । ଖାଲ ବସନ୍ତର ନାଚ ନୁହେ, କ୍ରମେ କ୍ରମେ ଆସରଟା ଧୀରେ ଧୀରେ ଧିମେଇ ଯିବାକୁ ଆରମ୍ଭ କଲ; ଭିଡ଼ କମିଆସିବାକୁ ଲଗିଲ । ଦ ଗୁରଜଣ ଯିବାବେଳେ କହିଗଲେ—ଧେତ୍ !

ସେମାନଙ୍କ ଥାଳରେ ପଇସା ପଡ଼ଲନ କହଲେ ଚଳେ ।

ପ୍ରୌଢ଼ା କେତେ ଥର ନମ୍ନ ସ୍ୱରରେ ନଡାଇକୁ କହଲ—ରଙ୍ଗ ଲଗାଅ ଓସ୍ତାଦ୍, ରଙ୍ଗ ଲଗାଅ ।

ଢୋଲଆ ବସନ୍ତ ପାଖକୁ ଯାଇ କହିଲ—ଟିକଏ ଧଇ ହଲେଇ, ଆଖିଟା ଟିକିଏ ଖେଳା ମ !

ବସନ୍ତ ଆଖି ଖେଳେଇବ କଣ, ଆଖି ତାର ବାରମ୍ବାର ପାଣିରେ ଉଚ୍ଛୁଳ ପଡ଼ୁଛି । ମୁଖଛଟା ମାର ହିଲ୍ଲୋଳ ଉଠାଇବ କଣ, ଦେହ-ମନ ଯେ ଅବସାଦରେ ଭାଙ୍ଗି ପଡ଼ୁଛି । ଆସରକୁ ଆସି ଶ୍ରୋତାଙ୍କର ଏପର ଅବହେଳା ତାକୁ ବୋଧହୁଏ କେବେ-ହେଲେ ସହ୍ୟ କରବାକୁ ହୋଇନାହିଁ । ନଡାଇର ଗୀତର ତତ୍ତ୍ୱକଥାରେ ବରକ୍ତ ହୋଇ ତାହା ଆଡ଼କୁ ଲୋକମାନେ ଥରେ ଅପାଙ୍ଗରେ ବ ଗୁହୁଁନାହାନ୍ତ । ନଡାଇର ଧର୍ମକଥାର ପାଣିଚିଆ ରସରେ ତାହାର ନାଚ ରଙ୍ଗ ଧରୁନାହିଁ । ସର୍ବୋପର ଦଳର ପରାଜୟଟା ହିଁ ତା ପାଖରେ ମର୍ମାନ୍ତକ ହୋଇପଡ଼ୁଛି । ନମ୍ନଶ୍ରେଣୀର ଦେହ-ବ୍ୟବସାୟିନୀ ରୂପାଜୀବା ସେମାନେ । ଦେହ ଓ ରୂପ ଯେନ ସେମାନଙ୍କର ଅହଙ୍କାର ଅଛି; କନ୍ତୁ ସେ କେବଳ ଅହଙ୍କାର ମାତ୍ର—ଜୀବନର ମର୍ଯ୍ୟାଦା ନୁହେଁ । କାରଣ ସେମାନଙ୍କର ଦେହ ଓ ରୂପର ଅହଙ୍କାରକୁ ପୁରୁଷଗଣ ଆସି ଅର୍ଥବନମୟରେ ଗୋଡ଼ରେ ଦଳଦେଇ ଗୁଲଯାଆନ୍ତ । ପୁରୁଷ ପରେ ପୁରୁଷ ଆସେ, ଦେହ ଓ ରୂପକୁ ଏତେ ଟିକଏ ସମ୍ଭ୍ରମ

ହୁଏନାହିଁ, ରାକ୍ଷସଭଳି ଭୋଗ ମାତ୍ର କରେ; ଚାଲିଗଲାବେଳେ ଅଇଣ୍ଠାପତ୍ର ଭଳି ଫୋପାଡ଼ି ଦେଇଯାଏ । ସେଇଥିପାଇଁ ଏମାନଙ୍କର ଜୀବନର ସକଳ ମର୍ଯ୍ୟାଦା ପୁଞ୍ଜୀଭୂତ ହୋଇ ଆଶ୍ରୟ କରିଛି ନୃତ୍ୟଗୀତର ଅହଙ୍କାରଟିକକ । ସେଇ ଦୁଇଟି ଜିନିଷ ଯେ ତାଙ୍କ ଜୀବନର ଏକମାତ୍ର ସତ୍ୟ—ସେ କଥା ସେମାନେ ବୁଝନ୍ତି । ସେମାନେ ବେଶ୍ ଭଲରୂପେ ଜାଣିଥାନ୍ତି ଯେ, ଭଲ ନାଚଗୀତର ଯେଉଁ ସମ୍ମାନ, ତାହା କିଛି ନକଲି ନୁହେଁ । ହଜାର ହଜାର ଲୋକ ଚୁପ୍ ହୋଇ ଶୁଣନ୍ତି ତାଙ୍କର ଗୀତ, ବିସ୍ଫାରିତ ମୁଗ୍ଧ-ଦୃଷ୍ଟିରେ ଦେଖନ୍ତି ତାଙ୍କ ରୂପ ଭିତରେ ବିଚିତ୍ର ଗୋଟିଏ ଅପରୂପର ଅଭିବ୍ୟକ୍ତି । ମରୁଭୂମିଭଳି ଜୀବନର ସେଇ ଟିକକ ମାତ୍ର ତାଙ୍କର ଏକମାତ୍ର ଶ୍ୟାମଳ ସଜଳ ଆଶ୍ରୟ-କୁଞ୍ଜ । ଏହି ଶ୍ରେଷ୍ଠତ୍ୱବୋଧରେ ହିଁ ସେମାନେ ଅଗଣିତ ଶ୍ରୋତାଙ୍କର ଉପସ୍ଥିତିକୁ ନଗଣ୍ୟ କରି ମୁଣ୍ଡଟେକି ନାଚନ୍ତି, ଗାଆନ୍ତି । ସମାଜରେ ଗଣ୍ୟମାନ୍ୟ ପ୍ରତିଷ୍ଠାସମ୍ପନ୍ନ ଲୋକଙ୍କ ସଙ୍ଗରେ ମଧ୍ୟ ଅକୁଣ୍ଠିତ ଦାବୀରେ ଗୀତର ତାଳ-ମାନ ଘେନି ଯୁକ୍ତିତର୍କ କରନ୍ତି । ଖେଉଡ଼ଟା କବିଦଳର, ବିଶେଷରେ ଝୁମରଯୁକ୍ତ କବି ପକ୍ଷରେ ଅପରିହାର୍ଯ୍ୟ ଅଙ୍ଗ । ଖେଉଡ଼ ନ ଜାଣିଲେ ଏ ଦଳରେ ଗାଉଣା କରିବାର ଅଧିକାର ବି ରହେନାହିଁ । ମାଉସୀ କହନ୍ତି—କେତେ ବଡ଼ ବଡ଼ ମୁନିଋଷି କାମଶାସ୍ତ୍ରରେ ହାରି ମାନି ଶେଷକୁ ସେମାନଙ୍କ ପାଖେ ଶିଷ୍ୟତ୍ୱ ନେଇଛନ୍ତି । ତାହେଲେ ଖେଉଡ଼ଟା ଚେଟିଆ ଜିନିଷ ହବ କାହିଁକି ? ଆଜି ଦଳର ପରାଜୟ ସଙ୍ଗରେ ସେହି ମର୍ଯ୍ୟାଦା ଧୂଳିରେ ଲୋଟୁଅଛି ବୋଲି ଅବସାଦରେ ବସନ୍ତ ଯେପରି ଭାଙ୍ଗିପଡ଼ୁଅଛି । ଜିତିବାକୁ ହେଲେ କବିସ୍ଥଳ ଓ ନାଚବାଲି ଉଜଣିଆଙ୍କୁ ଏକାଠି ଜିତିବାକୁ ହବ । ଜଣେ ଜିତିବ, ଜଣେ ହାରିବ —ତା ହୁଏନା ।

କୌଣସିମତେ ଗୀତ ଶେଷ କରି ପରାଜୟର ବୋଝଭାରରେ ମଥା ପୋତି ନିତାଇ ବସିଲା । ଢୋଲ-ବାଜଣାର ତିହାଇ ପଡ଼ିଲା—ବସନ୍ତ ବି ନାଚ ଶେଷ କରିଦେଲା । ନାଚ ସାରି ଆଜି ସେ ଆସରରେ ବସିଲା ନାହିଁ, ଶ୍ରାନ୍ତ ଅଥଚ କ୍ଷୁବ୍ଧ ପଦକ୍ଷେପରେ ବାହାରି ଚାଲିଗଲା । ପ୍ରୌଢ଼ା ଦଳନେତ୍ରୀ ତା ଆଡ଼କୁ ଚାହିଁ କେବଳ ପ୍ରଶ୍ନବାଚକ ସ୍ୱରରେ ଡାକିଲା—ବସନ ?

ବସନ୍ତ ବୁଲିପଡ଼ି ଠିଆହୋଇ କହିଲା—ଦେହ ଖରାପ ଲାଗୁଚି, ମାଉସୀ !

ପ୍ରୌଢ଼ା ହସିଲା, କହିଲା—ଦେଖୁଥା, ଦୁସରା ଆସର ଆସୁ—ମୋ ବାପା କଣ କରୁଚି ଦେଖ୍ ।

ବସନ୍ତ ନିତାଇ ଆଡ଼କୁ ଥରେ ବୁଲି ଚାହିଁଲା । ନିତାଇ ଦେଖିଲା, ସେ ଚାହାଣୀରେ ତାର କ୍ଷୁରଧାର । ପରମୁହୂର୍ତ୍ତରେ ହିଁ ବସନ୍ତ ବାହାରିଗଲା ।

ପ୍ରୌଢ଼ା କିନ୍ତୁ ଅଭୂତ । ସେ ଯେପରି ଏତେଟିକେ ବିଚଳିତ ହୋଇନାହିଁ । ଦଳର ବେହେଲାଦାରକୁ ନିର୍ବିକାର ଭାବରେ କହିଲା—ଆଣିଚୁଟି ପଇସାଥାଳିଟା ।

ଲୋକଟି ପଇସାଥାଳିଟା ଆଣି ଥୋଇଦେଇ କହିଲା—କେଇଟା ଦୋଅଣିରୁ ବେଶୀ ଆଉ କିଛି ପଡ଼ିନି । ସବୁ ମିଶେଇ ଦ'ଟଙ୍କା ହବ କି ନାଇଁ ।

ପ୍ରୌଢ଼ା କହିଲା—ଗଣିକରି ଦେଖ କେତେ ଅଛି । ତାପରେ ସେ ପାନବଟାଟା ଟାଣି-ନେଇ କହିଲା—ମେଳାର ଆସର, ରଙ୍ଗ-ତାମସା, ଫେଉଡ଼-ଖୋରାକୀ ଲୋକଙ୍କର ଖାଲି ଭିଡ଼ । ନଇଲେ ମୋ ବାପର ଗୀତ ଆଉ ସେଇ ବଗୁଲିଆ ଟୋକାଟାର ଗୀତ ? ଗୀତ ତ ଭୁ ବୁଝୁ; କହୁନୁ, ମୁଁ ନାକରି କଥା କହିଲି ?

ବେହେଲଦାର କହିଲା—ସେଇଟା ଠିକ୍ କଥା, ତେବେ ରଙ୍ଗତାମସାର ଯୋଉଠି କାରବାର, ସେଠି ନ ଗାଇଲେ ଚଳିବ କମିତି କହନି ? ରଙ୍ଗ-ଗୀତ ବି ତ ଗୀତ, ନା ନାଇଁ ?

ପ୍ରୌଢ଼ାକୁ ସ୍ୱୀକାର କରିବାକୁ ପଡ଼ିଲା । ସେ କହିଲା—ତା ଆଉ ପଚ୍ଚରିବାକୁ ଅଛି ? ରଙ୍ଗ ନହେଲେ ପୁଣି ଗୀତ, ନା ଗୀତ ନହେଲେ ପୁଣି ରଙ୍ଗ ! ଗୋଟାଏ ମୋଟାକରି ପାନ ପାଟିରେ ପୁରାଇ ସେ ପୁଣି କହିଲା—ଓସ୍ତାଦ୍‌ର ମାଡ଼ ଶେଷ ଆସରର ! ଦେଖୁଥା, ବାପା ମୋର କଣ କରୁଚ ଦେଖନା ।

ନିତାଇ ଚୁପ୍‌କରି ବସି ଶୁଣୁଥିଲା ।

ନିର୍ମଳା, ଲଳିତା ଝିଅ ଦୁଜଣଙ୍କ ମୁହଁରେ ବି ହସ ନାହିଁ । ପରସ୍ପର ଭିତରେ ସେମାନେ ବେଶ୍ ଗମ୍ଭୀର ହୋଇ କଥାବାର୍ତ୍ତା ହେଉଛନ୍ତି—ବୋଧହୁଏ ସେଇ ହାରଜିତ୍ କଥା ହିଁ ଚାଲିଛି । ଦୀର୍ଘନିଃଶ୍ୱାସ ପକାଇ ନିତାଇ ମୁଣ୍ଡ ନୁଆଁଇଲା । ସମସ୍ତଙ୍କର ଲଜ୍ଜା ଯେପରି ଜମି ଜମି ବୋଝ ହୋଇ ତାହାର ମୁଣ୍ଡ ଉପରେ ପ୍ରଚଣ୍ଡ ଓଜନରେ ମାଡ଼ି ବସିଅଛି । ଖାଲି ତ ଲଜ୍ଜା ନୁହେ, ଦୁଃଖର ବି ଯେ ତାର ସୀମା ରହିଲା ନାହିଁ । ଫେଉଡ଼ ଯେ ତା ମୁହଁକୁ କୌଣସିମତେ ଆସୁନାହିଁ !

ତେଣେ ବିପକ୍ଷ ଦଳର ଢୋଲିଆ ବାଜଣା ଆରମ୍ଭ କରିଦେଲା; ଲୋକଟାର ବାଜଣା ଭିତରେ ଯେପରି ବିଜୟ-ଘୋଷଣା ରହିଛି । ବଜାଇବାର ଭଙ୍ଗିରେ ବି ହାତର ସଦମ୍ଭ ଆସ୍ଫାଳନ । ସେ ଦଳର କବିୟାଲ ହୁଏତ ବାହାରେ ଥିଲା—ସେ ଏକବାର ନାଟକୀୟ ଭଙ୍ଗିରେ ଗୋଟାଏ ଡଗ ମେଲୁ ମେଲୁ ଧାଇଁଆସି ଆସରରେ ପ୍ରବେଶ କଲା !

"ହାସ୍ତୁ--ହାସ୍ତୁ- ହାସ୍ତୁ--ହାସ୍ତୁ କଳା ଗୁନ୍ଦ କହିଗଲା କିସ ?"

"କୁକୁରୀ ଆଉ ମୟୂରୀ, ସିଂହୁଣୀ ଆଉ ଶୂକରୀ, ଶିମିଳି ଆଉ ବଉଳ, କୁଆ ସାଙ୍ଗରେ କୋଇଲି, ଓଢ଼ଣା ଆଉ ନାମାବଳୀ, ରାଧା ଆଉ ଚନ୍ଦ୍ରାବଳୀ—ତଫାତ୍ ନାହିଁ, ସମାନ ?" ଏହା ପରେ ପରେ ସେ ଆରମ୍ଭ କଲା ଅଶ୍ଳୀଳତମ ଉପମା । ସଙ୍ଗେ ସଙ୍ଗେ ଆସରରେ ଯେମିତି ବୈଦ୍ୟୁତିକ ପରଶ ଖେଳିଗଲା । ଲୋକମାନେ ହରିବୋଲ ଦେଇ-ଦେଲେ । ଏଥର ଲୋକଟା ଟିକିଏ ରହି ସୁର ମେଳି ଗୀତ ଧରିଲା—

"ଆହା — କଳାଗୁନ୍ଦର କଳା ମୁଖେ ନିଆଁ ଲଗେଇ ଦିଅ ଗୋ,
ଚିଲମ ଦେଇ ସେଇ ନିଆଁରେ ଗଞ୍ଜେଇ ଟାଣି ନିଅ ଗୋ ।"

ଅର୍ଥହୀନ ଉପମାରେ ଯେକୌଣସି ପ୍ରକାରେ କେତେଗୁଡ଼ିଏ ଗାଳିଗୁଲଜ ଦେଇ ଏବଂ ଅଶ୍ଳୀଳ କଦର୍ଯ୍ୟ ଭାବ ଓ ଉପମାର ଅବତାରଣା କରି ସେ ଆସରଟାକୁ ଅଳ୍ପ ସମୟ ମଧ୍ୟରେ ହିଁ ଜମାଇଦେଲା ।

ନତାଇ ଆସର ଛାଡ଼ି ଉଠି ଚାଲିଗଲା ।

ଆରଦଳର ଗୋଟିଏ ଝିଅ ନାଚି ନାଚି ଆସି ତାକୁ ଧରି ନଜେଇ ଆଖର ଦେଇ ଗାଇଉଠିଲା—

"ଧରି ଧରି କଳାଗୁନ୍ଦେ ପଳାଇ ସେ ଯାଏ ଗୋ!,
ମିଳିମିଶି ଧରି ସଭିଏଁ ଏକା ମୁଁ ନ ପାରେ ଗୋ !"

ଆସର ଭିତରେ ଗୋଟାଏ ବଡ଼ ହସ-ଲହରୀ ଖେଳିଗଲା । ନତାଇ କିନ୍ତୁ ସେଥିରେ ବି ରାଗିଲା ନାହିଁ । ସେ ହସ ହସ ହୋଇ ହିଁ ଝିଅଟିର ଏହି ତାତ୍କ୍ଷଣ ଉପସ୍ଥିତ ବୁଦ୍ଧି ସକାଶେ ଆନ୍ତରିକ ପ୍ରଶଂସା କରି କହିଲା—ଭଲ, ଭଲ ! ଭଲ କହୁଚ ତମେ ।

ଆସର ଭିତରୁ ବାହାରି ଆସି ନତାଇ ଝୁମରଦଳର ଆସ୍ଥାନରେ ବସନ୍ତର କୁଡ଼ିଆ ଦୁଆରେ ଠିଆହେଲା । କୁଟାର ଭିତରଟା ଦରମେଲା ଅବସ୍ଥାରେ ରହିଅଛି । ଭିତରେ ଗୋଟିଏ ଲଣ୍ଠନ ମୃଦୁଶିଖାରେ ଜଳୁଅଛି । ପଦାରେ ଖୋଲା ଆକାଶତଳେ ଅଗଣାର ବିସ୍ତୀର୍ଣ୍ଣ ଅନ୍ଧକାର ମଧ୍ୟରେ ସେହି ଗୋଟିଏ ଅଗ୍ନିକୁଣ୍ଡ ହିଁ ଉଜ୍ଜ୍ୱଳତର ହୋଇ ଜଳୁଅଛି

ଏବଂ ତାହାର ସମ୍ମୁଖରେ ମଇଁଷି ଭଳି ପ୍ରଚଣ୍ଡକାୟ ଲୋକଟା ପୂର୍ଣ୍ଣ-ଉଦର ହିଂସ୍ର ପଶୁଭଳି ବସା ଓଗାଳି ଚୁପ୍‌ହୋଇ ବସିରହିଅଛି । ପାଦଶବ୍ଦ ଶୁଣି ସେ ବୁଲି ଚାହିଁଲା ଏବଂ ନିତାଇକୁ ଦେଖି ନିଶ୍ଚିନ୍ତ ହୋଇ ପୁଣି ମୁହଁ ଘୂରାଇ ଧୂମାଇ ଲାଗିଲା । ନିତାଇ ବସନ୍ତର ଘର ଦୁଆରରେ ଯାଇ ଠିଆହେଲା । ପଶିବାକୁ ସାହସ କଲା ନାହିଁ । ଦେହ-ବ୍ୟବସାୟିନୀର ଘର । ସେ ବାହାରୁ ହିଁ ଡାକିଲା— ବସନ ?

—କିଏ ? ଘର ଭିତରୁ ବିରକ୍ତିଭରା କଣ୍ଠସ୍ୱରରେ ବସନ୍ତ ଜବାବ ଦେଲା ।

—ମୁଁ ନିତାଇ । ରସିକତା କରି 'କୋଇଲି-ମାଣିକ' କହିବାକୁଇ ତାର ମନ ହେଲା ନାହିଁ ।

—କଣ ?

—ଭିତରକୁ ଯିବ ?

—କଣ ଦରକାର !

—ଟିକେନାକୁ କାମ ଥିଲା ।

ମୁହୂର୍ତ୍ତିକେ ବସନ୍ତ ନିଜେ ପଦାକୁ ଆସି ଠିଆହେଲା । ଅଧୀର ଅସ୍ଥିର କ୍ଷୁବ୍ଧ ପଦ-କ୍ଷେପରେ ସେ ଘର ଭିତରୁ ନିତାଇର ସାମନାକୁ ଆସି ଝଲସି ଉଠିଲା, ଠିକ୍ ଖୋଲ ଭିତରୁ ଏକା ଟଣାକେ ବାହାର ଆସିଥିବା ତଲୁଆର ଭଳି । ବାହାରର ଅଗ୍ନିକୁଣ୍ଡର ଆଲୁଅର ଲାଲ ଆଭା ପୂର୍ଣ୍ଣ ଦୀପ୍ତିରେ ତାହାର ସର୍ବାଙ୍ଗରେ ଯେପରି ଝାମ୍ପ ଦେଇ ଝଲକି ଉଠିଲା । ନିତାଇ ଦେଖି ଶଙ୍କିତ ହେଲା । ଆଜିକାର ଦୁଇପ୍ରହରର ପୂଜାରଣୀ, ଶାନ୍ତ ସ୍ନିଗ୍ଧ ନମ୍ର ସେ ବସନ୍ତ ଆଉ ନାହିଁ, ଏ ସେଇ ପୁରୁଣା ଚହ୍ଲା ବସନ୍ତ । ତାହାର ସର୍ବାଙ୍ଗରେ କ୍ଷୁରଧାର ଝଲସି ଉଠୁଅଛି । ଲାଲ ଆଲୁଅର ପ୍ରତିଚ୍ଛଟାରେ ସେ ଯେପରି ରକ୍ତାକ୍ତ । ସେ ଫେରିଆସି ମଦ ପିଇଛି । ଆଖିରେ ଛଟା ଦେଖାଯାଉଛି ।

ବସନ୍ତ କହିଲା—ମୁଁ ଯିବିନି—ଯିବିନି । କାହିଁ ଆସିଚୁ ରୁ ?

ନିତାଇ କିଛି ଜବାବ ଦେଇ ପାରିଲାନି । ଶଙ୍କିତ ଦୃଷ୍ଟିରେ ବସନ୍ତର ମୁହଁଆଡ଼େ ଚାହିଁ ଚୁପ୍ କରି ଠିଆହୋଇ ରହିଲା ।

ଅକସ୍ମାତ୍ କଠିନତମ ଆକ୍ରୋଶରେ ବସନ୍ତ ତାହା ଗାଲରେ ସଜୋରରେ ଗୋଟାଏ ଚାପୁଡ଼ା ବସେଇଦେଲା, କହିଲା—ଗ୍ରେପରି ପିଠ ମୋ ଆଗରେ ଠିଆଟା ହେଉଚୁ କାହିଁକି ? କାହିଁକି, କାହିଁକି ? ପ୍ରଶ୍ନଟି କଲା ସିନା; କିନ୍ତୁ ଜବାବ ଲାଗି ଅପେକ୍ଷା କଲାନି । କ୍ଷଣକେ ଯେଉଁ ଅଧୀର ଅସ୍ଥିର ଗତିରେ ବାହାର ଆସିଥିଲା, ସେହି ଗତିରେଇ ସେ ଭିତରକୁ ପଶିଗଲା । ଏହି ଆଘାତ କରି ମଧ୍ୟ ଯେପରି ତାହାର କ୍ଷୋଭ ମେଣ୍ଟିନାହିଁ । ଘର ଭିତରକୁ ପଶି ସେ ନିଜ କପାଳରେ କେଇଟା ଚାପୁଡ଼ା ମାରିଲା, ତାହାର

ଶବ୍ଦଟାଇ ସେକଥା ଜଣାଇଦେଲା ।

ନତାଇ କିଛି ସମସ୍ତ ଚୁପ୍ ହୋଇ ଠିଆହୋଇ ରହିଲା, ତାହା ପରେ ସେଇ ଜଗୁଆଳ ଲୋକଟା ପାଖକୁ ଆସି ଡାକ କହିଲା—ପହିଲମାନ !

ଲୋକଟା ଦଳ ଭିତରେ ପହିଲମାନ ବୋଲି ପରିଚିତ । ନିଶାରେ ଚୂର୍ ଲୋକଟା ନାଲି ଆଖି ଉଠାଇ ତାହା ଆଡ଼କୁ ଖାଲି ଚାହିଁଲା; ମାତ୍ର କଥାର ଜବାବ ଦେଲା ନାହିଁ । ସାମନାର ଗ୍ରମୁଦାନ୍ତ କେଇଟା ଖାଲି ବାହାରିପଡ଼ିଲା ।

ନତାଇ କହିଲା—ତମ ପାଖରେ ମାଲ୍ ଅଛି ? ମଦ ?

ନିରୁତ୍ତର ଲୋକଟା ଇଆଡ଼େ ସିଆଡ଼େ ଅଣ୍ଡାଳି ଗୋଟାଏ ବୋତଲ ବାହାର କରି ବଢ଼ାଇଦେଲା । ବୋତଲଟା ହାତକୁ ନେଇ ମଧ୍ୟ ନତାଇ ଥରେ ଭାବିଲା—ତା'ପରେ ଏକାନିଃଶ୍ୱାସକେ କିଛିଟା ଗିଳିପକାଇଲା । ଗ୍ରୀବ ଭିତରଟା ଯେମିତି ଜଳିଗଲା; ପୂର୍ବ ଅନ୍ତରାତ୍ମା ଯେମିତି ଚିତ୍କାର କରିଉଠିଲା; ଦୁର୍ଦମନୀୟ ବାନ୍ତିର ଆବେଗରେ—ପୂର୍ବ ଦେହଟା ମୋଡ଼ି ମୋଡ଼ି ହୋଇଗଲା, କିନ୍ତୁ ପ୍ରାଣପଣ ସେ ଆବେଗ ରୋଧ କଲା । ଧୀରେ ଧୀରେ ଆବେଗଟା ଯେତେବେଳେ ନିଃଶେଷିତ ହେଲା, ସେତେବେଳେ ଗୋଟାଏ ଦୁର୍ଦାନ୍ତ ଅଧୀରତାମୟ ଚଞ୍ଚଳ ଅନୁଭୂତି ତାହା ଭିତରେ ସଦ୍ୟ ଜାଗିଉଠୁଅଛି । ସେ ଯେମିତି ଆଉ ଗୋଟାଏ ମଣିଷ ହୋଇଯାଉଛି ସେତେବେଳକୁ । ତା' ସଙ୍ଗେ ସଙ୍ଗେ ପୃଥିବୀଟା ବି ଆଉ ଗୋଟାଏ ପୃଥିବୀ ହୋଇଯାଉଛି । —ଆଶ୍ଚର୍ଯ୍ୟ !

ସବୁ କିଛି ଯେପରି ଦୋହଲୁଛି; ଭିତରଟା ଜଳୁଛି; ଦୁନିଆଁଟା ଯେପରି ତୁଚ୍ଛ ହୋଇ ଯାଉଛି । ଏଥର ସେ ସବୁକିଛି ପାଇବ ! ସେକାଳର ଭୀଷଣ ବୀରବଂଶୀ-ବଂଶର ରକ୍ତର ବଙ୍କରିତର ମୃତପ୍ରାୟ ବୀଜାଣୁଗୁଡ଼ିକ ମଦର ସ୍ପର୍ଶରେ—ପାଣିର ସ୍ପର୍ଶରେ ମହାମାରୀର ବୀଜାଣୁ ଭଳି ପୁରାଣବର୍ଣ୍ଣିତ ରକ୍ତବୀଜ ହୋଇ ଅଧୀର ଚଞ୍ଚଳତାରେ ଜାଗିଉଠିଲେ ।

ପୁଣି ସେ କିଛି ମଦ ଗଳାରେ ଢାଳିଦେଲା ।

ଦ୍ୱିତୀୟଥର ଆସରରେ ଯେତେବେଳେ ସେ ପ୍ରବେଶ କଲା, ସେତେବେଳକୁ ତାହାର ଚେହେରାଟାଇ ବଦଳିଯାଇଛି । ସେ ଆଉ ଗୋଟିଏ ମଣିଷ ହୋଇଯାଇଛି । ନୀତିକଥା-ଗୁଡ଼ିକ ଭୁଲିଛି, ପାପପୁଣ୍ୟ ଯେମିତି ହିସାବ-ନିକାଶ ଭୁଲିଅଛି, ହା-ହା କରି ଅଶ୍ଳୀଳ ଭଙ୍ଗିରେ ହସିବାକୁ ଚାହୁଁଅଛି ।

ଚାହିଁବନି କାହିଁକି ? ସାମାଜିକ ଜୀବନରେ ମନୁଷ୍ୟର ଯାହା କିଛି ପାପ, ଯାହା

କଦର୍ଯ୍ୟ, ଯାହା କିଛି ଉଲଙ୍ଗ ଅଶ୍ଳୀଳ, ତାହାହିଁ ଆବର୍ଜନାସ୍ତୂପ ଭଳି ଯେଉଁଠାରେ ଜମା ହୁଏ, ସେହି ବସ୍ତିର ପରିବେଶ ଭିତରେ ତାହାର ଜନ୍ମ । ଦାରିଦ୍ର୍ୟ ଓ କଠିନ ଦାସତ୍ୱର ଅନୁଶାସନର ଗଣ୍ଡି ଭିତରେ ବହୁ ଯୁଗ ଯେଉଁମାନେ ବାସ କରି ଆସିଛନ୍ତି, ସେ ସେହିମାନଙ୍କର ସନ୍ତାନ । ମା ସେଠି ଅଶ୍ଳୀଳ ଗାଳିଗୁଲଜ ଦେଇ ଶାସନ କରେ; ଉଚ୍ଛ୍ୱସିତ ସ୍ନେହରେ ଅଶ୍ଳୀଳ କଥାରେ ଆଦର ଦିଏ, ସନ୍ତାନକୁ ସକୌତୁକେ ଅଶ୍ଳୀଳତା ଶିକ୍ଷା ଦିଏ । ଅଶ୍ଳୀଳତା, କଦର୍ଯ୍ୟ ଭାଷା-ଭାବ କିଛି ନିତାଇର ଅଜଣା ନୁହେଁ; କିନ୍ତୁ ଜୀବନରେ ସାମାନ୍ୟ ଶିକ୍ଷା ଏବଂ କବିୟାଲୀର ଚର୍ଚ୍ଚା କରି ସେସବୁ ସେ ଏଯାକେ ଭୁଲିବାକୁ ବସିଥିଲା । ସେସବୁ ଉପରେ ଗୋଟାଏ ଅରୁଚି, ଗୋଟାଏ ଘୃଣା ତାର ଜନ୍ମିଥିଲା । କିନ୍ତୁ ଆଜି ବସନ୍ତ ପାଖରୁ ଆଘାତ ଖାଇ ସେହି ଆଘାତର କ୍ଷୋଭରେ ନିର୍ଜ୍ଜଳା ମଦ ଗିଳିକରି ସେ ଉନ୍ମତ୍ତ ହୋଇଗଲା । ମଦନିଶା ଭିତରେ ଦୁରନ୍ତ କ୍ଷୋଭରେ ଅର୍ଜନ କରିଥିବା ସବୁକିଛିକୁ ଭୁଲି ସେ ଉଦ୍‌ଗୀରଣ କରିବାକୁ ଆରମ୍ଭ କଲା ଜାନ୍ତବ ଅଶ୍ଳୀଳତାକୁ । ଛନ୍ଦ ଓ ସୁର ଉପରେ ତାର ଦଖଲ ତ ଥିଲା; କଣ୍ଠସ୍ୱର ବି ତାହାର ଅତି ସୁମିଷ୍ଟ—ଦେଖୁ ଦେଖୁ ଆସର ଜମିଉଠିଲା ।

ଆସରରେ ପଶିବାର ଠିକ୍ ପୂର୍ବରୁ ସେ କବିୟାଲସୁଲଭ ନାଟକୀୟ ଭଙ୍ଗୀରେ ଠିଆ ହୋଇ ଉଚ୍ଚକଣ୍ଠରେ ପାଳିଆମାନଙ୍କୁ ଡାକି କହିଲା—ପାଳିଆଏ ।

ସବିସ୍ମୟରେ ସମସ୍ତେ ତାହା ଆଡ଼କୁ ମୁହଁ ବୁଲାଇ ବସିଲେ । ଏପରି ଅପ୍ରସ୍ତୁତ ହେବା ପରେ ନିତାଇ ଯେ ପୁଣି ଫେରିବ, ଏ ପ୍ରତ୍ୟାଶା କେହି କରିନଥିଲେ । ସେମାନେ ଜବାବ ଦବାକୁ ଭୁଲିଗଲେ ।

ଭୁଲିନି ଖାଲି ମାଉସୀ, ସେ ଚତୁରୀ । ସେ ଦଣ୍ଡକେ ଜବାବ ଦେଲା—କୁହ ଓସ୍ତାଦ୍ !

ନିତାଇ ବୋଲିଲା—

"ଯେବେ ଧର୍ମକଥାରେ ମନ ମାନେନା, ବୋଲ ଶୁଣେନା
ତେବେ ଦବାକୁ ହବ ଗାଳି
ଛୁଞ୍ଚିମୁନେ ମୁନିଆଁ ଦାଢ଼େ କାମ ନଚଳିଲେ ଚଳେଇଦବ ଫାଳି
ଯେବେ ଥଣ୍ଡା ପାଣିରେ ନ ସିଝେ ଡାଲି
ତେବେ କସିକରି ଯୋଗାଡ଼ିଦବ କଇଁଆ-କାଠ ଜାଳି ।"

ସେପଟର କବିୟାଲଟା ଅଟ୍ଟ କରି କହିଉଠିଲା—ବାହାରେ କଳା ଭୃଙ୍ଗ, ଚଳିମରେ ନିଆଁ ତେଜିଲା ପରି ଲାଗୁଚି; ତାପରେ ?

ନତାଇ କହିଲା—ସ୍ୱେ ଯେମିତ ସେମିତ ଡାଉ ନୁହେ ବୁରୁନେ, ଜାଣୁଛୁ ! ସେଇ ଜ୍ୱାଳାରେ ତତେ କହୁଚି – ଶୁଣ୍ ! ସହଜେ ତ ତୁ ଶୁଣିବୁନି । ପାଳିଆଏ !

—ହଁ—ହଁ !

ନତାଇ ଆରମ୍ଭ କଲା—

"ବୁଢ଼ୀ ଦୂତୀ ବୁଲି-କୁଲି ଯୋଉ ଛଡ଼ା ନୁହେ ସାବାଡ଼୍
ଛଡ଼ର ବାଡ଼ି ବାଜିଲେ ଘୁଟିବେ ଏଇ ମୋର ସୁଖ ଯୋଗାଡ଼ !"

ବୁଢ଼ୀକି ଛଡ଼ି ମାରି କିଛି ହେଲା ନାହିଁ । ଏଥର ଲଗାଅ ଯୋତା—ଲଗା ଗୋଇଠା ! ତାପରେ ପ୍ରୌଢ଼ ଲୋକଟା ମୁହଁକୁ ଆଙ୍ଗୁଠି ଦେଖାଇ କହିଲା—ବୁଢ଼ୀର କୁଞ୍ଚ ମୁହଁରେ ଦୁଣି ଟେଗାର ଭଙ୍ଗଟା ଦେଖନ୍ତୁ, ଢଳକର ଛଟକଟା ଦେଖନ୍ତୁ—

"ଏ ବୁଢ଼ୀ ବୟସେ ବୃନ୍ଦେ ଶୁକୁଟା ମୁହେଁ ଆଉ ରସକାଳ କାଟେନା ଲୋ
ରସର ଛୁଆଣ ଲାଗିଲୁ ନାଇଁ ଏବେ ଗନ୍ଧଆ ତାଡ଼ି ଦାଣ୍ଟେନା ଲୋ ।"

ତା'ପରେ ତାହାର ମୁହଁ ପାଖରେ ଆଙ୍ଗୁଠି ହଲେଇ କହିଲା—

"(ଆଉ) ପାଳୁଆ ପାଟି ଲମ୍ବ କାଉରେ ଛେପର ଲାଳ ଗୁଟେନା ଲୋ ।"

ଆସରରେ ହୋ-ହୋ ପଡ଼ିଗଲା । ଆସର ଜମିଯାଇଛି । ସେ ନଜେ ବି ସେଇ ଜମଜମାଟ ଭିତରେ ହଜିଯାଇ ମିଶି ଏକାକାର ହୋଇଯାଇଛି ।

ସେ ଗୀତ ଧରିଲା—

"ବୁଢ଼ୀ ମରେନା—ମରଣ ନାଇଁ
ହାଇରେ ହାଇ ।"

ଗୀତ ସାଙ୍ଗରେ ମେ ନାଚଗଲା ବୁଢେ ।

"ଖାଜକ ବୁଢ଼ୀ ଆଣ୍ଠୁ କୁଡ଼ୀ ମର ନାଇଁ ମର ନାଇଁ
ହାଇରେ ହାଇ, ତାର ମରଣ ନାଇଁ ମରଣ ନାଇଁ !"

ତାହା ପରେ ଗୋଟିକ ପରେ ଗୋଟିଏ ଅଶ୍ଲୀଳ ବିଶେଷଣ ତା ମୁହଁରୁ ବାହାରିବାକୁ ଲାଗିଲା । ଶ୍ରୋତାଙ୍କର ଅଟ୍ଟହାସ୍ୟରେ ଘରଟା ଯେମିତ କମ୍ପମାନ, ପୁରା ଆସର ଆଉ

ଆଳୁଅ ତାର ଆଖିଆଗରେ ଦୋହଲୁଚି । ଗୋଟିଏ ମଣିଷ ଦୁଇଟା ପରି ଲାଗୁଚି । ଏଇ ତ ଦୁଇଟା ନିର୍ମଳା, ହେଇ ଦ'ଟା ଲଳିତା । ହେଇ ତ ବଳଭଦ୍ର ଦଟା ବାଆଣ, ମାଲତୀ ବି ଦ'ଟା ହେଇ ମୃଦୁ ମୃଦୁ ହସୁଅଛି । କେତେବେଳ ପରେ ସେ ଦେଖିଲା, ବସନ୍ତ ବି ଦ'ଟା ହେଇ ନାଚୁଅଛି ! ବାହାବା—ବାହାବା—ସେ ପୁଣି କି ନାଚ ! ବସନ୍ତ ସ୍ୱାଭ ଭିତରେ କେତେବେଳେ ଆସି ଆସରରେ ନାଚିବାକୁ ଆରମ୍ଭ କରିଦେଇଛି ।

ଚରମତମ ଅଶ୍ଳୀଳତାରେ ଆସରଟାକୁ ଆକଣ୍ଠ ପଙ୍କନିମଗ୍ନ କରିଦେଇ ଟଳିଟଳି ସେ ବସିଲା । ଏଥରକ ସେମାନଙ୍କର ମାଗୁଣିର ଆକାଂକ୍ଷା ପୂରିଉଠିଛି । ତାହାର ଗୀତ ଶେଷ ହେବା ସଙ୍ଗେ ସଙ୍ଗେ ଏଥର ବିପୁଳ କରତାଳିରେ ହାତଧ୍ୱନି ଉଠିଲା ।

ପ୍ରୌଢ଼ା ତାହାର ପିଠିରେ ହାତ ବୁଲାଇ କହିଲା—ବାପା ମୋର ! ଦେଖିଲୁ, ମାଲ ନ ପଡ଼ିଲେ କଣ ମେଳା-ମଉଚ୍ଛବରେ ଗୀତ ହୁଏ ? ଯୋଉ ବାହାକୁ ପ୍ରେଇ ମନ୍ତ୍ର ପଢ଼ାଯାଏ । ବସନ୍ତ, ବାପାକୁ ମୋର ଆଉ ଗୋଟେ ଗିଲାସ ଦେ । ଗଳାଟା ଶୁଖିଯାଇଛି ।

ବସନ୍ତ ! ଏତେବେଳକେ ନିତାଇ ସ୍ଥିରଦୃଷ୍ଟିରେ ବସନ୍ତ ମୁହଁକୁ ଚାହିଁଲା ।

ନିତାଇର ଆଖି ରକ୍ତବର୍ଣ୍ଣ । ଗୋଲାପଫୁଲ ପୂରା ଫୁଟିଥିବାଟା ଦୋହଲୁଛି । ଶଙ୍କା-ସଙ୍କୋଚ, ସବୁକିଛି ଭୁଲିଯାଇଛି ବରଂ ଆନନ୍ଦର ଉଚ୍ଛ୍ୱାସରେ ! ବସନ୍ତ ଅସଙ୍କୋଚ ଦୃଷ୍ଟିରେ ନିତାଇ ଆଖିରେ ଆଖି ମିଳାଇ ଅନାଇ ରହିଲା । ସେ ଆଖିରେ ତାହାର କାମନା ଝରୁଥାଏ । ନିତାଇର ହୃଦୟରେ ବି କାମନା ଜେଗିଉଠିଅଛି । କାହିଁ ଆସ୍ତେ ବସନ୍ତ ! ସେ ହସୁଥାଏ । କିଛି ସମୟ ଆଗରୁ ସେ ନିତାଇ ଗାଲରେ ଘୁସୁଡ଼ା ମାରି ଯେ ନିଷ୍ଠୁର ଅପମାନ କରିଅଛି, ତାହାଲାଗି ବର୍ତ୍ତମାନ ସେ ଟିକିଏ ହେଲେ ଲଜ୍ଜାବୋଧ କରୁନାହିଁ; ବରଂ ଉଚ୍ଛ୍ୱସିତ ଆନନ୍ଦରେ ତାହାର ଆଖି ଓ ମୁହଁ ଝଲମଲ କରୁଅଛି । ନିତାଇର ଗରବରେ ସେ ଗରବଣୀ ହୋଇ ଉଠିଅଛି ।

—ଦିଅ, ପାତର ଦିଅ । ନିତାଇ ହସିଲା ।

—ଆସ, ଘରକୁ ଆସ, ଭଲ ମଦ ଅଛି—ବିଲତି । ବସନ୍ତ ତାହାର ହାତ ଧରି ଗରବଣୀ ସ୍ୱୀପରି ତାକୁ ନେଇ ଚାଲିଗଲା ।

ଘରେ ଯାଇ କାଚ ଗିଲାସରେ ବିଲତି ମଦ ସଙ୍ଗରେ ପାଣି ମିଶାଇ ବସନ୍ତ ନିତାଇକୁ ଦେଲା । ନିଃଶବ୍ଦରେ ଗିଲାସଟି ଶେଷ କରି ନିତାଇ ବସନ୍ତ ଆଡ଼କୁ ଚାହିଁ ହସିଲା । ଏ ବସନ୍ତ ଯେମିତି ନୂଆ ବସନ୍ତ; ନିତାଇକୁ ମଦନିଶା ଖୁବ୍ ଜୋର ଧରିଲା ।

ସେ ପୁଣି ହାତ ବଢ଼ାଇଲା । ତାହାକୁ ଶୋଷ କରୁଛି । କହିଲା—ଦିଅ ତ, ମତେ ଆଉ ଗିଲାସେ ଦିଅ ।

ବସନ୍ତ ହସି ପୁଣି ଅଳ୍ପ ଟିକିଏ ତାହାକୁ ଦେଲା । ସେ ଟିକକ ବି ପାନକରି ନିତାଇ

କହିଲା—ଚୁପ୍, ତମକୁ କିଏ ଦେଖିବ ।

ବସନ୍ତ ହସି କହିଲା—ନା, ଚାଲ ଆସରକୁ ଚାଲ ।

—ନା । ଚୁପ୍ । ସେ ବସନ୍ତର ହାତ ଚପିଧରିଲା ।

ବସନ୍ତ ଠିଆହେଲା । ନିମ୍ନଶ୍ରେଣୀର ଦେହ-ବ୍ୟବସାୟିନୀ; ବାଟେଘାଟେ ବ୍ୟବସାୟର ବିପଣୀ ଖୋଲି ଯାହାଙ୍କୁ ବ୍ୟବସାୟ କରି ଚଳିବାକୁ ହୁଏ—ଲଜ୍ଜା ତାଙ୍କର ଥାଏନା, ଥିଲେ ଚଳେନା । ବାଟକୁ ଗୋଡ଼ କାଢ଼ି ଲଜ୍ଜାକୁ ପ୍ରଥମରୁ ରାସ୍ତାଧୂଳି ସାଙ୍ଗରେ ମିଶାଇ-ଦେଇ ଯାତ୍ରା ଆରମ୍ଭ କରନ୍ତି । ବସନ୍ତ ପୁଣି ତାଙ୍କ ଭିତରେ ବି ଲଜ୍ଜାହୀନା । ସେଇ ବସନ୍ତର ମୁହଁଟା ତଥାପି ଆଜି ଲାଲ ହୋଇଥିଲା ।

ଏବଂ ଆହୁରି ଆଶ୍ଚର୍ଯ୍ୟ କଥା, ମୁହୂର୍ତ୍ତିକ ପରେ ହିଁ ତାହାର ଆଖିରେ ପାଣି ଦେଖାଗଲା । ସେ କାନ୍ଦି ପକାଇଲା । ନିତାଇ ସବିସ୍ମୟରେ କହିଲା—ତମେ କାନ୍ଦୁଚ କାହିଁକି ବସନ ?

ମୁହଁ ବୁଲାଇ ନେଇ ବସନ୍ତ କହିଲା—ନା, ମୋତେ ତମେ ଛୁଅଁନା । ପାଦେ ସେ ପଛେଇ ବି ଗଲା । ସଙ୍ଗେ ସଙ୍ଗେ ଦୁଇପାଦ ଆଗେଇ ଆସି ନିତାଇ କହିଲା—କାହିଁକି ?

ବସନ୍ତ କହିଲା—ମୋର କଣ ରୋଗ ଅଛି । ମଝିରେ ମଝିରେ କାଶ ସାଙ୍ଗରେ ରକ୍ତ ପଡ଼େ । ସନ୍ଧ୍ୟା-ସନ୍ଧ୍ୟାକୁ ଜର ହୁଏ ଦେଖିନ ? ଅପ୍ ଅପ୍ କରି ବସନ୍ତର ଆଖିରୁ ପାଣି ଝରିପଡ଼ିଲା; କିନ୍ତୁ ସଙ୍ଗେ ସଙ୍ଗେ ସେ କାନିରେ ଆଖି ପୋଛି ହସିଲା ।

—ଆଃ ! ନିତାଇର ଗୁଣଟା ସେତେବେଳକୁ ଫୁଲିଉଠିଅଛି; ଉଚ୍ଛୃଙ୍ଖଳ ବର୍ବର ବୀରବଂଶୀ-ସନ୍ତାନ ରୂଢ଼ତମ ପୌରୁଷର ଭୟଙ୍କର ମୂର୍ତ୍ତି ଯେପରି ଆଗେଇ ଆସିଲା । ସେ ମୂର୍ତ୍ତି ଠାକୁରଝୀ କେବେ ସହ୍ୟ କରିପାରି ନଥାନ୍ତା । କିନ୍ତୁ ବସନ୍ତ ଝୁମୁରଦଳର ଝିଅ, ତା' ରକ୍ତ ମଧ୍ୟରେ ବର୍ବରତମ ମନୁଷ୍ୟର ଖୁଆପଣତମ ଭୟଙ୍କର ମୂର୍ତ୍ତି ସହ୍ୟ କରିବାର ସାହସ ରହିଛି । ନିତାଇକୁ ଅଗ୍ରସର ହେବାର ଦେଖି ବିଷଣ୍ଣ ଦୃଷ୍ଟିରେ ପ୍ରସନ୍ନ ମୁଖରେ ସେ ତାହାର ପ୍ରତୀକ୍ଷା କରି ରହିଲା ଏବଂ ନିତାଇର ବାହୁବନ୍ଧନ ମଧ୍ୟରେ ନିର୍ଭୟରେ ନିଜକୁ ସମର୍ପଣ କରି ପିଷ୍ଟ ହେଉଁ ହେଉଁ ସେ ମୃଦୁସ୍ୱରରେ ଗାଇଲା—

"ବନ୍ଧୁ ତମରି ଗରବେ ଗରବିଣୀ ମୁହିଁ ଗରବ ଭାଙ୍ଗିବ କେହି,
ତେଜି କୁଳମାନ କରିଲି ବରଣ ତୁମକୁ ସଅଁପି ଦେଇ ।"

ନିତାଇର ବାହୁବନ୍ଧନ ଶିଥିଳ ହୋଇଗଲା । ଗୀତ ଶୁଣି ସେ ମୁଗ୍ଧ ହୋଇଗଲା—ଏ କି ଗୀତ ? ତାହାର ନିଶା ଯେପରି ଫିକା ପଡ଼ିଆସୁଛି । ଏ କି ସ୍ୱର ! ତାହାର ସ୍ଖଳିତ ହାତ ଦୁଇଟି ବସନ୍ତ ନିଜେଇ ନିଜ ବେକରେ ଗୁଡ଼ାଇ ନେଇ ପୁଣି ଗାଇଲା—

"ପରାଣବନ୍ଧୁ ଗୋ ତୁହି
ତୋହର ଗୁମୁରେ ମରଣ ହେଉ ଗୋ ଏଇ ବର ମାଗେ ମୁହିଁ ।"

ଅପୂର୍ବ, ଅପୂର୍ବ ଲାଗିଲା ନିତାଇଙ୍କୁ; ଆଖି ତାର ପାଣିରେ ଭରିଉଠିଲା । ଗଦ୍‌ଗଦ ଗଳାରେ ସେ ପଚାରିଲା—କୋଉଠୁ ଶିଖିଲ ସ୍ୱେ ଗୀତ ବସନ ? ଏ କୋଉ କବିସ୍ୱାଳର ଗୀତ ?

ହସିକରି ବସନ୍ତ ହାତ ଦୁଇଟି ଯୋଡ଼ି ପ୍ରଣାମ କରି ଗାଇଲା—

"ଯା ହେବାର ହେଲା—ସବୁ କ୍ଷମାକର କହିଣ ଧରେ ପଯୂର
ରସର ସାଗରେ ନଜାଣି ପଶିରେ ଡୁବିଲା ରାୟ ଶେଖର ।"

ଗୀତ ଶେଷ କରିସାରି ସେ କହିଲା—ମହାଜନଙ୍କ ପଦ ଗୋ !

ଅଧୀର ମତ୍ତତା ମଧ୍ୟରେ ବି ନିତାଇର ଅନ୍ତରର କବିସ୍ୱାଳ ଚେଇଁଉଠିଲା । ସେ ବସନ୍ତର ଦୁଇ ହାତ ନିଜ ଗଳାରେ ଗୁଡ଼ାଇଆଇ ନେଇ କହିଲା—ମତେ ଶିଖେଇବ ?

ବସନ୍ତ ଆବେଗଭରେ ନିତାଇର ମୁହଁ ଚୁମାରେ ଭରିଦେଲା ।

## ଷୋହଳ

ସକାଳେ ଯେତେବେଳେ ନିତାଇ ଉଠିଲା, ସେତେବେଳକୁ ତାର ଜିଭ ଅଗରୁ ଗ୍ରୁଡ ଭିତରଯାକେ ପିତା ହୋଇଯାଇଛି; ତାଳୁରୁ ତଳିପାଯାକେ ପୋଡ଼ାଜଳା କରୁଛି । ନିଜର ନିଃଶ୍ୱାସରେଇ ଗୋଟାଏ ବୀଭତ୍ସ ଦୁର୍ଗନ୍ଧ ନିଜର ନାକରେ ଆସି ପହଞ୍ଚୁଛି । ସର୍ବାଙ୍ଗ ଯେପରି କ୍ଳେଦାକ୍ତ ଉତ୍ତାପରେ ଉତ୍ତପ୍ତ, ଝପରେ ବିଷାକ୍ତ ! ଶୀତର ପ୍ରାରମ୍ଭ—ତହିଁକୁ ସକାଳ ପହର—ଏଇ ଶୀତର ସକାଳେ ବି ତାର ମୃଦୁ ମୃଦୁ ଝାଳ ବୋହି-ଯାଉଛି । ମୁଣ୍ଡ ଭିତରେ ଅତ୍ୟନ୍ତ ରୂଢ଼ ଗୋଟିଏ ଯନ୍ତ୍ରଣା । ସବୁ ଚେତନା ଯେପରି ଗ୍ରୀଷ୍ମ ଦ୍ୱିପ୍ରହରର ଉତ୍ତପ୍ତ ପ୍ରାନ୍ତର ଧୂଳିପଟଳରେ ଆଚ୍ଛନ୍ନ ଆକାଶ ପରି ଧୂମ୍ରର ଏବଂ ପ୍ରାନ୍ତରର ମରୀଚିକା ଭଳି କମ୍ପମାନ । ପେଟ ଜଳୁଛି, ଗ୍ରୁଡ ପୋଡ଼ୁଛି । ଭିତରଟା ଶୁଖିକରି ଯେପରି କାଠ ହୋଇଯାଇଛି ।

ବସନ୍ତ ଘର ଭିତରେଇ ଥିଲା । ସେ ଆପଣାର ଅନ୍ୟ କାମ କରିଯାଉଥିଲା । କେତେକ ଦିନର ବସବାସ ସକାଶେ ଢଆର କୁଟୀର ଘର, ସେଇ ଘରକୁ ସେ ସଜେଇ-ସାଜେଇ ପରିପାଟି କରିବାକୁ ଅକସ୍ମାତ୍ ବ୍ୟସ୍ତ ହୋଇଉଠିଅଛି । ଭୋରରୁ ଉଠି କରି ଘରକରଣାର କାମଗୁଡ଼ାକ ଯେପରି ତାକୁ ଦୁଇହାତ ମେଲି ହାତଠାରି ଡାକୁଅଛି । ମେଳାରୁ ସେ କେତେ ଖଣ୍ଡି ଛବି କିଣିଥିଲା । ନୂଆ ଅମଳର ଦେଶୀୟ ଲବ୍ଧପ୍ରତିଷ୍ଠ ଶିଳ୍ପୀଙ୍କ ହାତରେ ବିଲାତି ବର୍ଣ୍ଣସମାବେଶରେ ଅଙ୍କା—ଜର୍ମାନୀରେ ଛପା ରାଧାକୃଷ୍ଣଙ୍କର ପ୍ରେମଲୀଳାର ଛବି । ଦୁଇଖଣ୍ଡି ଉଲଗ୍ନ ମେମ୍‌ସାହେବଙ୍କ ଛବି । ଛବିଗୁଡ଼ିକ ସେ ଘରଭିତରେ ବାଉଁଶ ଖୁଣ୍ଟି ଦିହରେ ଟଙ୍ଗାଉଥିଲା । ନିତାଇକୁ ଉଠିବାର ଦେଖି ସେ ମୃଦୁ ହସି କହିଲା—ଉଠିଲ ?

ସେଇ ହସ ଏବଂ ଏଇ ପ୍ରଶ୍ନରେଇ ନିତାଇର ଆଜି ରାଗ ହୋଇଗଲା—ରଙ୍ଗ ଆଖିରେ କଠିଣ ଦୃଷ୍ଟିରେ ଚାହିଁ ସେ ରୁକ୍ଷକଣ୍ଠରେ ଜବାବ ଦେଲା—ହିଁ ।

କଣ୍ଠସ୍ୱରର ରୂଢ଼ତାରେ ବସନ୍ତ ପ୍ରଥମ ପ୍ରଥମ ତା ଆଡ଼େ ସବିସ୍ମୟରେ ଚାହିଁରହିଲା । ତାପରେ ହସିଲା, କହିଲା—ଦିହ ଖରାପ ହେଇଚି, ନା ? ହବନି ? ପ୍ରଥମ ଦିନ ତ ମଦଟା ଖାଇଲ ! ମୁହଁହାତ ଧୁଅ, ଚାହା ଖାଇ ଗାଧୋଇପଡ଼ । କଞ୍ଚା ଚାହା କରିଦଉଚି । ତମେ ସେଦିନ ଦେଇଥିଲ ମତେ, ଖାସା ଉପକାର ହେଇଥିଲା ।

ନିତାଇ କଥାର ଜବାବ ଦେଲାନି, ଟଳାଟଳି ବାହାରିଗଲା । ତାହାର ଗୋଡ଼-ତଳର ମାଟିଟା ଏବେ ବି ଯେମିତି ଥରୁଚି ।

ପ୍ରାତଃକୃତ୍ୟ ସାରି ସେ ଯେତେବେଳେ ଫେରିଲା, ସେତେବେଳେ ସେ ଅପେକ୍ଷାକୃତ ସୁସ୍ଥ ହୋଇଛି । ପୋଖରୀଘାଟରେ ମୁଣ୍ଡର ଯନ୍ତ୍ରଣା ଉପଶମ ସକାଶେ ବାରମ୍ବାର ମୁଣ୍ଡ ଧୋଇ ଦେଇଥିଲା । ଓଦା ବାଳରୁ ତାହାର ସର୍ବାଙ୍ଗରେ ଜଳଧାରା ଝରୁଥାଏ । ସେହି ଧାରାଗୁଡ଼ିକ ପଡ଼ୁଥିଲା ଯେପରି ଉତ୍ତପ୍ତ ଲୁହା ପାତ୍ରରେ ଜଳବିନ୍ଦୁ ଭଳି । ବସନ୍ତ ସେତେବେଳେ ଗୋଛାଏ ଲୁଗା ଧରି କାଚିବା ସକାଶେ ବାହାରୁଥିଲା । ନିତାଇକୁ ଦେଖି ସେ ଲୁଗା ଥୋଇ ଶୀଘ୍ର ଚାହା କରିଦେଲା । ଲେମ୍ବୁରସ ମିଶା କଞ୍ଚା ଚାହା ନିତାଇକୁ ବେଶ୍ ଭଲ ଲାଗିଲା । ଚାହାଟିକକ ଶେଷ କରିଦେଇ ସେ ପୁଣି ଘରଚଟାଣରେ ଛଡ଼ା-ହୋଇଥିବା କୁଟା ଉପରେଇ ଶୋଇପଡ଼ିଲା । ଶୋଇବା ମାତ୍ରେ ନିତାଇ ପୁଣି ନିଦେଇ ଯାଇଥିଲା । ଠିକ୍ ନିଦ ନୁହେଁ, ଅଶାନ୍ତ ତନ୍ଦ୍ରା । ତାହାରି ଭିତରେ ନିତାଇ ଶୁଣିପାରିଲା ବସନ୍ତ କହୁଛି—କୁଟାଟା ଉପରେଇ ଶୋଇଲ ।

ସେ ଆଖି ମେଲି ଚାହିଁଲା । ଗଦାଏ ଓଦା କଚା ଲୁଗା କାନ୍ଧରେ ପକାଇ ଆପାଦମସ୍ତକ ସିକ୍ତ ବସନ୍ତ ଦୁଆରବନ୍ଧରେ ଠିଆହୋଇ ତାକୁ ଡାକୁଛି ।

—ଉଠ । ସଉପ ପକେଇ ଗୋଟେ ତକିଆ ଦିଏ । ଆଲୋ ନିର୍ମଳା, ସୁନାଟା ପରି,

ତୋ ଭାଇଙ୍କି ସଉପ ଆଉ ତକିଆଟା ଦେଇଯା, ମୋର ସର୍ବାଙ୍ଗ ଓଦା ।

ନିତାଇ ଆଖି ବୁଜିକରି ଜଡ଼ିତ କଣ୍ଠରେ କହିଲା—ନା ।

ବସନ୍ତ ଏଥର ଆସି ତାହାର ହାତ ଧରି ଉଠାଇ ଶାସନ କଲାପରି କହିଲା—ନା କଣ ? ଉଠ, ଉଠ ।

—ନିତାଇ ଏଥର ଉଠି ବିସ୍ଫାରିତ ଆଖିରେ ବସନ୍ତ ଆଡ଼କୁ ଚାହିଁଲା ।

—କାହାନ୍ତି ? ଭାଇ କାହାନ୍ତି ? କହି ହସି ହସି ନିର୍ମଳା ଝିଅଟି ଆସି ଘରେ ପଶିଲା । ଯତ୍ନରେ ସଉପ ଓ ତକିଆ ପକାଇ ଦେଇ ଦେଇ କହିଲା—ଓହୋ, ଭାଇ ମୋତେ କେତେ ଖୋସା ଭାଇ ! ଯୋଉ ଗୀତ କାଲି ଗାଇଲେ ।

ନିତାଇର ଏତେବେଳେ ଯାଇ ଗଲା ରାତି କଥା ମନେ ପଡ଼ିଲା । ମସ୍ତିଷ୍କ ଭିତରେ ଗୋଟାଏ ବିଦ୍ୟୁତ୍ ଚମକ ଖେଳିଗଲା ।

ଏଇ ମୁହୂର୍ତ୍ତରେଇ ସେପଟର କୁଟାଘର ଭିତରୁ ଦଳର ନେତ୍ରୀ ପ୍ରୌଢ଼ା ବାହାରି ଆସିଲା ।—ବାପା ମୋର ଉଠିଛ ? ପରମୁହୂର୍ତ୍ତରେ ହିଁ ସେ ଶିହରି ଉଠି କହିଉଠିଲା —ଆଲୋ ବୋଉ ଲୋ ! ତୋର ଏ କି କାଣ୍ଡ ବସନ ? ଏଇ କେତେ ଦିନ ହେଲା ଜର ଛାଡ଼ିଛି । ଆଜି ଆଜି ଏଇ ସକାଳପହରୁ ତୁ ଏମିତି ପାଣିରେ ଘାଣ୍ଟି ହେଉଛୁ ।

ମୃଦୁ ହସି ବସନ୍ତ କହିଲା—ସବୁଗୁଡ଼ା କାଚିବାକୁ ପଡ଼ିଲା ମାଉସୀ । ଏଥର ଗାଧୋଇବି ।

—କାଚିବା କଣ ଦରକାର ଥିଲା କି ?

ନିର୍ମଳା ଖିଲଖିଲ କରି ହସି ଉଠିଲା—ପୀରତି ସାମାନ୍ୟ ନୁହେ ମାଉସୀ ! ଭାଇ କାଲି ବାନ୍ତି କରି ବିଛଣାପତର ଭସେଇ ଦେଇଛି ।

ପ୍ରୌଢ଼ା ବି ଏଥରକ ମୃଦୁ ହସିଲା, ବସନ୍ତକୁ କହିଲା—ଯା ଯା —ଓଦା ଲୁଗା ଥୋଇ ଯାଇ ଗାଧୋଇକରି ଆ । ଲୁଗା ବଦଳେଇ ବରଂ ସେଗୁଡ଼ା ଶୁଖେଇଦବୁ ।

ଦୁଇ ଆଖି ବିସ୍ଫାରିତ କରି ନିତାଇ ପଚାରିଲା—ମୁଁ ବାନ୍ତି କରିଛି ?

ନିର୍ମଳା ପୁଣି ଖିଲଖିଲ କରି ହସିଉଠିଲା ।

ମୁଣ୍ଡପାତି ନିତାଇ ଭାବୁଥିଲା—ଘରର ଏଇ ଦୁର୍ଗନ୍ଧ ତା ହେଲେ ତାହାର ବାନ୍ତିର ଦୁର୍ଗନ୍ଧ ! ଅନୁଭବ କଲା, ତାହାର ସର୍ବାଙ୍ଗରେ ସେଇ ବାନ୍ତିର କ୍ଲେଦ ଲାଗିରହିଛି । ସେହି ଗନ୍ଧ ହିଁ ନିଶ୍ୱାସ ସାଙ୍ଗରେ ତାହାର ଭିତରଟାକୁ ଅସ୍ଥିର କରିଦେଉଛି ! ନିଜ ଅଙ୍ଗର କ୍ଲେଦ ଏଇଥର ଦଣ୍ଡକେ ତାହାର ଅସହ୍ୟ ହୋଇଉଠିଲା ।

—ମୁଣ୍ଡ ଧରିଛି ନା ଭାଇ ? ତମେ ଶୁଅ; ମୁଁ ଟିକେ ମୁଣ୍ଡ ଚିପିଦିଏ । ନିର୍ମଳା ତାହାର କପାଳରେ ହାତ ଦେଲା । ବଡ଼ ଥଣ୍ଡା ଓ ନରମ ନିର୍ମଳାର ହାତଟି । କପାଳ

ଯେପରି ଶୀତଳ ହୋଇଗଲା । ଭାରି ଆରାମ ଲାଗୁଛି । କିନ୍ତୁ ନିତାଇ ନ ଗାଧୋଇ ଆଉ ରହିପାରୁନାହିଁ । ସେ ଉଠି ଠିଆହେଲା, କହିଲା—ନା ଗାଧୋଇ ଆସେଁ ।

ବସନ୍ତ ଲୁଗାଗୁଡ଼ିକ ରଖୁଥିଲା, ସେ କହିଲା—ନିର୍ମଳା—ହେଇଟି, 'ବାକ୍ସ' ପାଖରେ ଫୁଲର ତେଲର ବୋତଲଟା ଅଛି, ଦେ'ନ ବାହାର କରି । ତାପରେ ସେ ନିତାଇକୁ କହିଲା—ବେଶ୍ ଭଲକରି ତେଲ ଲଗାଅ । ଦେହଟା ଥଣ୍ଡା ହବ; ଦେହକୁ ଆରାମ ଲାଗିବ । ଆଉ ସାବୁନ ନଗେଇବ ତ ଘିନଯା ।

—ନା । କହି ସେ ବାହାରିଗଲା । ଇଚ୍ଛା ହେଉଛି, ସେ ପାଣିରେ ବୁଡ଼ିମରିବ ! ଚିତ୍କାର କରିବାକୁ ଇଚ୍ଛା ହେଉଛି ।

ସେ ଯେତେବେଳେ ଗାଧୋଇ ଫେରିଲା, ସେତେବେଳକୁ ବସନ୍ତ ଗାଧୋଇ-ପାଧୋଇ ଲୁଗାପଟା ବଦଳାଇ ବାକ୍ସ ନେଇ କିଛି କରୁଥିଲା । ନିତାଇ ଘରେ ପଶିବାମାତ୍ରେ ସେ ହସି କହିଲା—ଆଜି କେମିତି ଭେସ ହେବ ଦେଖିବ । ହେଇଟି, ଆଇନା ପାଉଁଆଁ ଅଛି ସ୍ନୋ ଅଛି; ମୁହଁରେ ଘିନ କିଛି ନେଇ ।

ଗାଧୋଇସାରି ନିତାଇ ସୁସ୍ଥ ହୋଇଛି ଠିକ୍; କିନ୍ତୁ ମନର ଅଶାନ୍ତ ଇତ୍ୟବସରରେ ଅତ୍ୟନ୍ତ ତୀକ୍ଷ୍ଣ ହୋଇଉଠିଛି ! ଛି ! ଏ କଣ କଲା ସେ—ଛି ! ଛି ! ଛି ! ଗାଧୋଇ ସାରି ଫେରିବା ବାଟରେ ସେ ସଂକଳ୍ପ କରି ଆସିଛି, ଆଜି ସେ ପଳାଇଯିବ । ଏମାନେ ଯିବାକୁ ଦେବେନାହିଁ; ସୁତରାଂ ପଳାଇଯିବା ଭିନ୍ନ ଗତି ନାହିଁ । ଜିନିଷପତ୍ର ପଡ଼ିଥାଉ, 'ବଜାରରୁ ବୁଲିଆସେ' କହି ସେ ବାହାରି ଚାଲିଯିବ । ଅନ୍ୟ ଜିନିଷପତ୍ର ଲାଗି ଦୁଃଖ ନାହିଁ । କଣ ବା ଜିନିଷପତ୍ର ! କେଇଖଣ୍ଡ ଲୁଗା, ଦୁଇଟା ଜାମା, ଗୋଟାଏ କମ୍ବଳ, ଦି'ଟା କନ୍ଥା ତକିଆ । ଦୁଃଖ କେବଳ ତାର ବସ୍ତାନିଟି ସକାଶେ । ବସ୍ତାନିଟି ତ ଆଉ ତାର ଏଇଲା ନିହାତି ଛୋଟିଆଟିଏ ନୁହେଁ ଯେ ଦେହର ଆଲୁଆନତଳେ ଲୁଚେଇ କାଖରେ ଯାକି ପଳାଇବ । ରାମାୟଣ, ମହାଭାରତ ଏବଂ ଆହୁରି ଅନେକ ପୁରାଣ ନେଇ ତାର ବସ୍ତାନିଟା ବର୍ତ୍ତମାନ ଅନେକ ବଡ଼ ହୋଇଯାଇଛି । ମେଲାକୁ, ବଜାରକୁ ଯୁଆଡ଼େ ସେ ଯାଇଛି—ଖଣ୍ଡେ ଦିଖଣ୍ଡ କରି ବହି କିଣିଛି ! କବିଗାନ, ପାଞ୍ଚାଲି, ତର୍ଜା ଗୀତ *, କୃତିବାସୀ ରାମାୟଣ, କାଶୀଦାସଙ୍କ ମହାଭାରତ,

* ଅଶ୍ଳୀଳ ଛଗଛମାଳୀର ଯୋଡ଼ପାଲା ।

ମନସା ଭସାଣ, ଚଣ୍ଡୀ ସାହିତ୍ୟ, ସତ୍ୟପୀରଙ୍କ ଗୀତ, କବିକଙ୍କଣ ଚଣ୍ଡୀ, ଅନ୍ନଦାମଙ୍ଗଳ—ଅନେକ ବହି ସେ କଣିଛି । ବାବୁସାହିରେ ଛିଣ୍ଡା କାଗଜ ଗୋଟାଇ ପଢ଼ି ଭଲ ଲଗିଲେ ସଂଗ୍ରହ କରିବା ତାହାର ଗୋଟାଏ ରୋଗ ଥିଲା । ସେଗୁଡ଼ିକ ବି ରହିଛି । ବାବୁଘର ଥିଏଟର୍‌ର ଆଖପାଖରେ ବୁଲି କେଇଖଣ୍ଡ ଆଦ୍ୟ-ଅନ୍ତହୀନ ନାଟକ ମଧ୍ଯ ତାହାର ସଂଗ୍ରହରେ ରହିଛି । ଏହାଛଡ଼ା ନିଜର ଲେଖା ଗୀତର ଖାତା—ସେ ବି ତ ଏଇଲା ଅନେକ ହେଲାଣି—ସବୁ ଗୀତ ସେହି ଖାତାରେ ଲେଖିରଖିଛି ।

ଖଣ୍ଡିଏ ଲୁଗା ଟେକିଧରି ଦେଖାଇ ବସନ୍ତ କହିଲା—ଉଲଙ୍ଗବହାର୍ ଶାଢ଼ୀ । ଏଇ ଲୁଗାଟା ଆଜି ପିନ୍ଧିବି ।

କଥାଟାର ଇଙ୍ଗିତ ନିତାଇ ବୁଝିଲା; ଅର୍ଥାତ୍ ବସନ୍ତ ଆଜି ପ୍ରାୟ ନଗ୍ନ ରୂପରେ ନୃତ୍ୟ କରିବ । ସେ ଶିହରି ଉଠିଲା ।

ବସନ୍ତ କହିଲା—ଦେଖିବା ଆଜି କାହାର ଜିତ୍ ହେବ; ତମ ଗୀତର, ନା ମୋ ନାଚର ।

ନିତାଇ ଆଇନା-ପାନିଆଁ ରଖିଦେଇ ଜାମା ପିନ୍ଧିବାକୁ ଆରମ୍ଭ କଲା । ମୁହୂର୍ତ୍ତକେ ସେ ଦ୍ୱିଧାଶୂନ୍ୟ ହୋଇଛି, ଆଉ ତା ବସ୍ତାନି ଏଠି ପଡ଼ିଥାଉ—ସେ ଚାଲିଯିବ । ଏଠି ସେ ରହିପାରିବନି ।

—ଜାମା ପିନ୍ଧୁଚ ଯେ ! ଯିବ କୋଉଠିକି ?

—ଏଇ ଆସୁଚି ।

—ବସନ୍ତ ନିତାଇର ଆକସ୍ମିକ ବ୍ୟସ୍ତତା ଦେଖି ବିସ୍ମିତ ହେଲା, କହିଲା—ମାନେ ?

—ଏଇ ଟିକିଏ ବଜାରରୁ ବୁଲିଆସୁଚି ।

—ନା, ଏଇଲା ବଜାର ଯିବା ଦରକାର ନାହିଁ । ଟିକିଏ ଶୋଇପଡ଼ । ହେଇଟି, ଟିକିଏ ମଦ ଢାଳି ରଖିଚି । ପିଅ, ସରପୀଡ଼ା ଛାଡ଼ିଯିବ ।

—ନା, ମୁଁ ଟିକିଏ ଦେଉଳକୁ ଯିବି ।

—ଦେଉଳକୁ ?

—ହଁ ।

—ଏଇଲା କହୁଚ ବଜାର, ଏଇଲା କହୁଚ ଦେଉଳ ! କୁଆଡ଼େ ଯିବ ଠିକ୍ କରି କହୁନ ?

—ବଜାରକୁ ଯିବି । ରାଧାଗୋବିନ୍ଦଙ୍କ ଦେଉଳକୁ ବି ଯିବି ।

—ଚାଲ ! ମୁଁ ବି ଯିବି ।

ନିତାଇ ବିବ୍ରତ ହୋଇ ଚୁପ୍ ହୋଇ ବସନ୍ତ ମୁହଁକୁ ଚାହିଁରହିଲା ।

ରୂପଜୀବନୀର କନ୍ତୁ ଅଦ୍ଭୁତ ତୀକ୍ଷ୍ଣ ଦୃଷ୍ଟି—ନତାଇର ମୁହଁକୁ ସେ ଚାହିଁଥିଲା, ହସିକରି କହିଲା—କଣ ଭାବୁଚ କହିଲ ଦେଖି ?

ନତାଇ ଜବାବ ଦେଲା ନାହିଁ ।

ବସନ୍ତ ଏଥର କହିଲା—ମତେ ସାଙ୍ଗରେ ନେଇ ଯିବାକୁ ମନ ହଉନାଇ ନା ? ଲାଜ ମାଡ଼ିବ ପରା ?

ନତାଇ ଏ ପ୍ରଶ୍ନଟା ଲାଗି ପ୍ରସ୍ତୁତ ନଥିଲା । ଅତର୍କିତ ଆକସ୍ମିକ ପ୍ରଶ୍ନରେ ସେ ଚମକି ପଡ଼ିଲା; ଅତି ବ୍ୟସ୍ତ ହୋଇ କହିଲା—ନା—ନା—ନା । କଣ କହୁଚ ତମେ ବସନ ! ଆସ—ଆସ ।

ବସନ୍ତ କହିଲା—ମୁହଁ ଦେଖି କନ୍ତୁ ସେଇଆ ମନେ ହଉଚି ମୋର, ତମେ ଯେମିତି ପଳେଇ ପାରିଲେ ବଞ୍ଚିଯିବ । କିଏ ଯେମିତି ତୁମକୁ ଦଉଡ଼ିରେ ବାନ୍ଧି ରଖିଚି । ଆଚ୍ଛା, ବାହାରକୁ ଯାଅ ତମେ, ମୁଁ ଲୁଗା ପାଲଟି ଆସୁଚି ।

ନତାଇ ଅବାକ୍ ହୋଇଗଲା । ବସନ୍ତର ଆଖିର ଦୃଷ୍ଟି ତ ଛୁରୀ ନୁହେଁ—ଛୁଞ୍ଚି, ପୂରାପୂରି ଗୁଡ଼ି ଭିତରେ ବିନ୍ଧି ଭିତରଟାକୁ ତନ୍ନତନ୍ନ କରି ଦେଖିପାରେ । ସେ ବାହାରକୁ ଆସି ଛିଡ଼ାହେଲା । କପରି ଭାବରେ ବସନ୍ତକୁ ଏଡ଼ିଦେଇ ସେ ଚାଲିଯାଇ ପାରିବ, ସେଇ କଥା ଭାବିବାକୁ ଆରମ୍ଭ କଲା ।

ତେଣେ ନିର୍ମଳା ଓ ଲଳିତା ତାଙ୍କ ପ୍ରିୟଜନ ବେହେଲାଦାର ଓ ଶିରପାଲାଆଙ୍କୁ ନେଇ ସେତେବେଳକୁ ମଦ ଆଡ଼୍ଡା ଜମେଇ ବସିଗଲେଣି । ମଇଁଷି ପରି ବଡ଼ଟାକାୟ ଲୋକଟା—ପ୍ରୌଢ଼ା ଦଳନେତ୍ରୀର ମନର ମଣିଷ । ଲୋକଟା ଅଦ୍ଭୁତ । ଠିକ୍ ସେଇ ଠାଆକେ ବସିଥାଏ ସେଇମିତି—ଅନାଦି ଅନନ୍ତଭଳି । ତାକୁ ଦେଖି ନତାଇ ତାର ସବୁକଥା ସ୍ମରଣ ନକରି ରହିପାରେନା । ଲୋକଟା କଥାବାର୍ତ୍ତା କରେନାହିଁ, ଆମ୍ବୁଡ଼ା ଟାକୁଆ ଭଳି ସୌଷ୍ଠବହୀନ ଲାଲ ଆଖି ମେଲି ଚାହିଁରହେ । ରାକ୍ଷସ ଭଳିଆ ଖାଏ ! ପ୍ରାୟ ଦିନସାରା ଶୋଇଥାଏ । ରାତିରେ ଆକଣ୍ଠ ମଦ ଗିଳି ମଝି ଠାଆକେ ତେଇଁ ବସିଥାଏ । ତାହାର ସାମନାରେ ହିଁ ରହେ ଗୋଟାଏ ଆଲୁଅ—ଆଉ ଗୋଟାଏ ପ୍ରଜ୍ଜ୍ୱଳିତ ଅଗ୍ନିକୁଣ୍ଡ । ଏହି ଭ୍ରାମ୍ୟମାଣ ପରିବାରଟିର ବାଟରେ ଉଆରି ଘରର ଗଣ୍ଡି ଭିତରେ ରୂପ ଓ ଦେହର ଖରିଦ୍‌ଦାର ଯେଉଁମାନେ ଆସନ୍ତି, ସେମାନଙ୍କର ଦୃଷ୍ଟି ତାହା ଉପରେ ନପଡ଼ି ରହିପାରେନା । ଅଧିକାଂଶ କ୍ଷେତ୍ରରେ ଦୁର୍ଦାନ୍ତ ମାତାଲମାନେ ଚକ୍ଷୁ ବିସ୍ଫାରିତ କରି ତାହାକୁ ଦେଖି—ଅନେକ ପରିମାଣରେ ଶାନ୍ତ ପ୍ରକୃତିସ୍ଥ ହୋଇ ଭଦ୍ର ଓ ସୁବୋଧ ହୋଇଯାଆନ୍ତି । ଲୋକଟା ଗୁମ୍ ମାରି ଗୋଟାଏ ମଦ ବୋତଲ ନେଇ ବସିଚି ନିର୍ବିକାର ଉଦାସୀନଭାବେ । ରନ୍ଧାଘରର ଚାଳରେ ପ୍ରୌଢ଼ା ପକୁଡ଼ି ଭାଜିବସିଚି ।

ସେ ବି ଗୋଟାଏ ଅଦ୍ଭୁତ ମାଇପି ! ମୁହଁରେ ହସ ଲାଗିକରି ରହିଛି । ପୁଣି ମୁହୂର୍ତ୍ତିକେ ଆଖିପତା ଲାଲ କରି ଏପରି ଗମ୍ଭୀର ହୋଇପଡ଼େ ଯେ, ଦଳର ସମସ୍ତେ ତ୍ରସ୍ତ ହୋଇପଡ଼ନ୍ତି । ପୁଣି ପରମୁହୂର୍ତ୍ତିରେଇ ସେ ହସେ ! ଗୀତର ଭଣ୍ଡାର ତା ପେଟରେ । ଅନର୍ଗଳ ଢଗ, ଗୀତ ମୁଖସ୍ଥ କହିଯାଏ । ଘଡିଶୀଗିରି ଯେନ ତବଲି ଘଣ୍ଟା ବ୍ୟସ୍ତ । ଉନ୍ମତ୍ତ ପଲେ ବନ୍ୟ ଘୋଡ଼ାଙ୍କୁ ଲଗାମ ଟାଣି ଚଳାଇ ନେଇ ଚାଲିଛି । ରଥ—ରଥୀ—ସାରଥୀ ସବୁ ଏକାଧାରେ ସେ ନିଜେ ।

ନିର୍ମଳା ହସି ଡାକିଲା—ଆସ ଗୋ ଭାଇ, ଗରିବ ଭଉଣୀ ଘରକୁ ଥରେ ଆସ ।

ହସି ନଟାଇ କହିଲା—କଣ ହେଉଛି ତମମାନଙ୍କର ?

—କାଲି ଲକ୍ଷ୍ମୀବାର ଗଲା, ପାରଣା କରୁଚୁ ସକାଳେ । ବସନ କାହିଁ ? ସେ ଆସୁନି କାହିଁକି ? ମଦ ବୋତଲଟା ଉଠାଇ ଦେଖାଇ ସେ ଖିଲ୍‌ଖିଲ କରି ହସିଉଠିଲା ।

ନଟାଇ ସବିନୟରେ ନୀରବରେ ଖାଲି ହାତ ଦୁଇଟି ଯୋଡ଼ି କରି କ୍ଷମା ଚାହିଁଲା !

ବେହେଲାଦାର ହସି କହିଲା—ହଁ, ହଁ । ଡାକୁଛି ଡାକ । କାନ ଟିଙ୍କିଲେ ମୁଣ୍ଡ ଆପେ ଆସିବ ।

ନଟାଇର ପଛରେଇ ବସନ୍ତର ସକୌତୁକ କଣ୍ଠସ୍ୱର ଧ୍ୱନିତ ହୋଇଉଠିଲା—ମୁଣ୍ଡ ଏବେ ଧର୍ମ ଅର୍ଜିବାକୁ ବାହାରିଚି, ତା ସାଙ୍ଗରେ କାନକୁ ବି ଯିବାକୁ ହବ । ତେବେ ଯେବେ କାଟିନେବ କାନକୁ, ସେ ଭିନେ କଥା !

ବସନ୍ତର କଥା କେତୋଟି ନଟାଇକୁ ବଡ଼ ଭଲ ଲାଗିଲା । ବାଃ, ଚମତ୍କାର କଥାଟି କହୁଛି ବସନ୍ତ । ଖୁସି ହୋଇ ନଟାଇ ପଛକୁ ବୁଲି ଦେଖିଲା—ଗତ କାଲିର ଭକ୍ତିମତୀ ପୂଜାରିଣୀବେଶରେ ସଜହୋଇ ବସନ୍ତ ଠିଆ ହୋଇଛି । ବସନ୍ତ ହସି କହିଲା—ଚାଲ ।

ରାସ୍ତାର ଦୁଇକଡ଼ରେ ଦୋକାନର ଧାଡ଼ି ।

ବସନ୍ତ ସାମଗ୍ରୀ କିଣିଲା ଅନେକ । ଫଳମୂଳ ମିଠେଇରେ ପୂରା ଗୋଟାଏ ଟଙ୍କାଇ ସେ ଖରଚ କରିପକେଇଲା । ଗୋଟାଏ ସୁଜକା ଭଙ୍ଗେଇ ଚାରି ଅଣାର ଅଧଲା ନଟାଇ ହାତରେ ଦେଇ କହିଲା—ପକେଟରେ ରଖ ।

ନଟାଇ ପୁଣି ଚିନ୍ତାକୁଳ ହୋଇଉଠିଥିଲା । ସେ ଭାବୁଥାଏ—ଏ ବନ୍ଧନ କପରି କାଟି ଦେଇହେବ, ସେଇ କଥା । ଦେଉଳରୁ ଫେରିଲେଇ ତାକୁ ଯେନ ପୁଣି ସମସ୍ତେ ଟଣାଟଣି ଆରମ୍ଭ କରିଦେବେ ! ବସନ୍ତ ବି ସେତେବେଳେ ଆଉ ଏ ବସନ୍ତ ହେଇକରି

ରହିବନି । ହଂସ୍ ଖିପ୍ରିରେ ସେତେବେଳେ ବସନ୍ତ କ୍ଷୁରଧାର ହୋଇଉଠିବ । ବସନ୍ତର ଚାନ୍ଦିବେଳର ସେ ରୂପ ତାର ଆଖିରେ ଭାସୁଅଛି । ସେ ଠିକ୍ କଲା, ଫେରିବା-ବାଟରେ ବସନ୍ତକୁ ବସାକୁ ପଠାଇଦେଇ ବାଟରୁଇ ସେ ଫେରିଯିବ । ବାହାନାର ଅଭାବ ହେବ ନାହିଁ । ତାହାର କେଉଁ ଗ୍ରାମବାସୀର ସନ୍ଧାନ କରିବାଲାଗି ମେଳାଟା ବୁଲିବାର ଗୋଟାଏ ବାହାନା ହଠାତ୍ ତାହାର ମନକୁ ଆସିଗଲା । ସେ ସେଇଟାକୁ ଆଙ୍କୁଶ କରି ଧରିଲା । ଏଇ ଅବସ୍ଥାରେ ବସନ୍ତ ଅଧଲାଗୁଡ଼ାକ ତାହାର ହାତକୁ ଦେଉ ଦେଉ ସେ ଭ୍ରୂ ଉଠାଇ ପଚାରିଲା—କଣ ହବ ଏଗୁଡ଼ା ?

—ମାଆ ଲୋ ! ଦୁନିଆଯାକର କଣା-ଖୋଟା ଦେଉଳ-ବାଟରେ ବସିଛନ୍ତି । ଦାନ କରିବ । ମୃଦୁ ହସି ନିତାଇର ମୁହଁକୁ ଚାହିଁ ସେ ବିସ୍ମୟରେ ଭ୍ରୂ କୁଞ୍ଚିତ କରି କରି ପ୍ରଶ୍ନ କଲା—କଣ ଭାବୁଚ ତମେ କହନି ?

ବ୍ୟସ୍ତ ହୋଇ ନିତାଇ ଅଭିନୟ କରି ହସି କହିଲା—କିଛି ନାହିଁ ।

—କିଛି ନାହିଁ ?

ନିତାଇ ପୁଣି ଅଭିନୟ କରି କହିଲା—ଭାବୁଚ ତମକୁ ଚିହ୍ନି ପାରିନି । ନିତାଇ ହସିଲା ।

ସେ ଅଭିନୟରେ ବସନ୍ତ ଭୁଲିଲା, କହିଲା— ମୋର ଭାଗ୍ୟ ମାସ୍ତା ହୁଏ ଗୋ ! ଆହା, କି କଷ୍ଟ କୁହନି ସେମିତି କଣା-ଖୋଟା ରୋଗିଆଙ୍କର ? ବାପ୍‌ରେ ! କହୁ କହୁ ସେ ଯେପରି ଶିହରି ଉଠିଲା । ନିତାଇ ସତରେ ଏଥରକ ଅବାକ୍ ହୋଇଗଲା । ଏ କଣ ! ବସନ୍ତର ଅଖି ଦ'ଟା ପାଣିରେ ପୂରିଉଠି ଯେ ଟଳମଳ କରୁଛି !

ଆଖି ପୋଛି ବସନ୍ତ ପୁଣି ହସିବାକୁ ଲଗିଲା—ସେ ହସ ଅତି ବିଚିତ୍ର । ଏମିତି ହସ ନିତାଇ ଜୀବନରେ ଦେଖିନାହିଁ । ହସିକରି ବସନ୍ତ କହିଲା—ମୋ କପାଳରେ ବି ଅନେକ କଷ୍ଟ ଅଛି ଗୋ ! କାଲି ତ ତମକୁ କହିଚି, ମୋର କାଶ ସଙ୍ଗରେ ରକ୍ତ ପଡ଼େ । କାଶ ବେମାରି ! ଏତେ ପାନଗୁଣ୍ଡି ଖାଏଁ ତ ସେଇଥିପାଇଁ । ରକ୍ତ ବାହାରିଲେ କେହି ବୁଝି-ପାରିବେନି । ଆଉ ମୁଁ ବି ବୁଝିପାରିବିନି; ଦେଖିଲେ ଖାଲି ଡର, ନ ଦେଖିଲେ ବେଶ୍ ଭଲ ଥାଏ । ଦଳରେ ବି କେହି ଜାଣନ୍ତିନି ଖାଲି ମାଉସୀ ଛଡ଼ା । କିନ୍ତୁ ଏଯାକେ ନାଚ-ପାରୁଚ, ଗାଇପାରୁଚ, ଛଟକ ଅଛି, ପାଞ୍ଚଟା ଲୋକ ଚାହାନ୍ତି ବୋଲିକରି ଦଳରେ ରଖିଚନ୍ତି । ଯୋଉ ଦିନ ଅଥର୍ବ ହେଇକରି ପଡ଼ିବି, ସେଦିନ ଆଉ ରଖିବେନି, ନହାନ୍ତି ଭଲମଣିଷ ହେଲେ ଅବା ନୋକ ଦେଇ ଘରକୁ ପଠେଇଦେବେ । ନଇଲେ ଯୋଉଠି ଦେଖିବେ ରୋଗ ବେଶୀ ହେଉଚି, ସେଇ ଜାଗାରେଇ ଫୋପାଡ଼ି ଦେଇ ଚାଲିଯିବେ । ଗଛମୂଳେ ପଡ଼ି ମରିବାକୁ ହବ । ଜଅନ୍ତାରେ ହୁଏତ ବିଲୁଆ-କୁକୁର ଟାଣି ଖାଇବେ ।

ନିତାଇ ଶିହରି ଉଠିଲା—ବସନ !

ବସନ୍ତ କହିଲା—ସତରେ କବସ୍ଥାଳ ! ଏଇ ତ ଆମର କପାଳ-ଲିଖନ । ତେବେ ମୋର ଆହୁରି ଖରାପ । ତୁମେ ସେଇ ଇଷ୍ଟିସନରେ ଗାଇଥିଲ—'ଫୁଲର ଧୂଳିର ପ୍ରେମ ।'—କବସ୍ଥାଳ, ସେତେବେଳେ ଧୂଳି ସଙ୍ଗେ ମାଟି ସଙ୍ଗେ ପ୍ରେମ ହବ ମୋର । ଆହୁରି କିଛି ସମୟ ଚୁପ୍ କରି ରହି ସେ ପୁଣି କହିଲା—ଦୂବଘାସର ରସରେ ଆଉ କେତେ ଧନ ବା ଉପକାର ହବ !

ରୋଜ ସକାଳେ ବସନ୍ତ ଦୂବଘାସ ଛେଚି ରସ ପିଏ । ଅତ୍ୟନ୍ତ ଗୋପନରେ ସେ ଏଇ କାମଟି କରେ । ତାହା ବି ନିୟମିତ ହୁଏନା; ତାହାର ଅନିୟମିତ ଉଚ୍ଛୃଙ୍ଖଳ ଜୀବନଯାତ୍ରା ଫଳରେ ସମ୍ଭବ ହୋଇପାରେନା । ମଝିରେ ମଝିରେ ପ୍ରୌଢ଼ା ମନେ ପକେଇଦିଏ— ବସନ, ସକାଳୁ ଦୂବଘାସର ରସ ଖାଉଛୁ ତ ?

ବସନ୍ତ କେବେ କେବେ ସଜାଗ ହୋଇଯାଏ, କେବେ କେବେ ଓଠ ନେଫେଡ଼ି କହେ —ମଲେ ଫୋପାଡ଼ି ଦବ ମାଉସୀ । ଆଉ ମୁଁ ଏସବୁ ପାରିବିନି ।

ପୁଣି କାଶ ବେଶୀ ହେଲେଇ ସେ ସଭୟରେ ଗୋପନରେ ଦୂବଘାସ ସଂଗ୍ରହ କରିବାକୁ ଧାଏଁ; ଘାସ ଛେଚୁ ଛେଚୁ ମନକୁ ମନ କାନ୍ଦେ ।

ଦେଉଳ ଯିବା-ବାଟରେ ଚାଲୁ ଚାଲୁ କଥାବାର୍ତ୍ତା ପଡ଼ିଥିଲା । ସବୁକଥା ଶୁଣି ନିତାଇର ମନଟା ଉଦାସ ହୋଇଗଲା । ଗୋଟାଏ ସୁଗଭୀର ଦୀର୍ଘନିଃଶ୍ୱାସ ତାହାର ଛାତିରୁ ବାହାରି ପଡ଼ିଲା । ଏପରି ହସ ହସି ବସନ୍ତ ତାର କାଶ ରୋଗକଥା କହିଗଲା ଯେ ନିତାଇର ମନେ ହେଲା, ବସନ୍ତର ସେଇ କ୍ଷୀଣ ହସରେ ଈଷତ୍ ବିସ୍ଫାରିତ ଓଠ ଦୁଇଟିର କୋଣେ କୋଣେ ନାଲି ସ୍ୟାହିର ଅଙ୍କା ରେଖାଭଳି ରକ୍ତର ଉଜ୍ଜ୍ୱଳ ରେଖା ଫୁଟି ଦିଶୁଅଛି— 'ଫୋପାଡ଼ି ଦେଇ ଚାଲିଯିବେ, ଗଛମୂଳେ ମରିବାକୁ ହବ, ଜୀଅନ୍ତାରେ ହୁଏତ ବିଲୁଆ-କୁକୁର ଝୁଣି ଖାଇବେ !' ସେ ଛବିଗୁଡ଼ା ଯେପରି ତାହାର ମନ ଭିତରେ ଫୁଟିବାକୁ ଲାଗିଲା । ଆଗପଛ ତାହାର ସବୁ ଭୁଲଭାଲ୍ ହୋଇଗଲା । ପଚାରିଯିବା କଥାଟା ଆଉ ତାର ମନେ ରହିଲାନି । ବାହାନା କଥାଟା ବି ଭୁଲିଗଲା । ଖାଲି ନୀରବରେ ମୁଣ୍ଡ ତଳକୁ ପୋତି ବସନ୍ତ ସାଙ୍ଗରେ ଦେଉଳ ଆଡ଼କୁ ଚାଲିବାକୁ ଆରମ୍ଭ କଲା ।

କିଛି ସମୟ ପରେ ବସନ୍ତ ପୁଣି କହିବାକୁ ଲାଗିଲା—ତାହାର ସେ ବିଷଣ୍ଣ କଣ୍ଠସ୍ୱର ଆଉ ନାହିଁ । କୌତୁକ-ସରସ କଣ୍ଠରେ ମୃଦୁ ହସି କହିଲା—ହାତଗଣ୍ଠି ବାନ୍ଧିବ ନା କଣ ? ହାତଗଣ୍ଠି ?

କଥାଟା ବସନ୍ତ ତୁଚ୍ଛା ଟାପରା କରି କହିଲା । ଆଶ୍ଚର୍ଯ୍ୟ ବସନ୍ତ ! ଏଇମାତ୍ର ନିଜର ମରଣ କଥା ଏତେ ବଢ଼େଇ କହି ଏହାରି ଭିତରେ ସେସବୁ ସେ ଭୁଲିବସିଛି ।

ନିତାଇ ତା ମୁହଁକୁ ଆଖି ଉଠାଇ ନେଲା । ସ୍ଥିରଦୃଷ୍ଟିରେ ବସନ୍ତକୁ କିଛି ବେଳ ସେ ଚାହିଁଲା । ଶାଣିତ କ୍ଷୁରଭଳି ଚକ୍‌ମକ ଦାନ୍ତୁଆ ବସନ୍ତର ଦାନ୍ତ କ୍ଷୟ ହୋଇ ଦିନେ ଖଣ୍ଡ ଖଣ୍ଡ, ହୁଏତ ଚୂନା ହୋଇଯିବ ଶାଣରେ ଘଷାହୋଇଥିବା ଇସ୍ପାତ୍ ଗୁଣ୍ଡ ଭଳିଆ ।

ବସନ୍ତ ହସି କହିଲା—ଦେଖୁଚ ?

—ହୁଁ ।

—କଣ ଦେଖୁଚ ? କଇଁଫୁଲ ବି ଶୁଖିଯାଏ । ଆଖିକଣରେ କାଳି ପଡ଼ିଲାଣି !

ବସନ୍ତ ମୁହଁରେ ସେତେବେଳେ ସୂକ୍ଷ୍ମ ହସର ରେଖା । ସେ ହସ ଆଶ୍ଚର୍ଯ୍ୟ ହସ ।

ନିତାଇ ମୁହଁରେ କିଛି ଜବାବ ଦେଲା ନାହିଁ । ହାତ ବଢ଼ାଇ ବସନ୍ତର କାନିଟି ଟାଣିନେଇ ନିଜର ଚାଦରକାନିରେ ବାନ୍ଧିବାକୁ ଆରମ୍ଭ କଲା ।

ବସନ୍ତ ଚମକି ଉଠିଲା—ଏ କଣ କରୁଚ ? ସେ ଗୋଟାଏ ବିଚିତ୍ର ବେଦନାର୍ତ୍ତ ଉତ୍ତେଜନାରେ ନିଜର ଲୁଗାକାନିଟି ଭିଡ଼ିଧରି କହିଲା—ନା, ନା, ନା । ଛି ! ସେକଥା ମୁଁ ଟାପରା କରି କହିଥିଲି । ତମେ ସତ ଭାବିଲ ନା କଣ ?

ପ୍ରସନ୍ନ ହସରେ ନିତାଇର ମୁହଁଟି ଉଦ୍‌ଭାସିତ ହୋଇଉଠିଲା । ସେ କହିଲା—ଗଣ୍ଠି ଆଗରୁ ପଡ଼ିଯାଇଚି ବସନ୍ତ ! ଟାଣନା । ମୁଁ ଯେବେ ଆଗେ ମରେ, ତାହେଲେ ତମେ ସେଦିନ ଖୋଲିନେବ ଏ ଗଣ୍ଠି; ଆଉ ତମେ ଯେବେ ଆଗେ ମର, ତେବେ ସେଇ ଦିନ ମୁଁ ଗଣ୍ଠି ଖୋଲିନେବି ।

ବସନ୍ତର ମୁହଁଟି ମୁହୂର୍ତ୍ତେ କେମିତିକା ହୋଇଗଲା ।

ଓଠ ଦି'ଟା, ଶୀତ ଶେଷର ପାଣ୍ଡୁର ଅଶ୍ୱତ୍ଥ ପତ୍ର ଉଡ଼ିଲା ବତାସରେ ଯେମିତି ଥରଥର କରି ଥରେ, ସେମିତି ଥରିଲାଗିଲେ । ତାହାର ରକ୍ତାଭ ସୁଗୌର ମୁହଁଟା ଯେପରି ସଙ୍ଗେ ସଙ୍ଗେ ଶେତା ପଡ଼ିଯାଇଚି । ଗରବିଣୀ ଦର୍ପିତା ବସନ୍ତ ଯେପରି ଏକ ମୁହୂର୍ତ୍ତରେ କାଙ୍ଗାଳୁଣୀ ହୋଇଗଲା ।

ନିତାଇ ଏଥରକ ହସି କହିଲା—ଆସ ଆସ—ମୋର ଆଉ ଡର ସହୁନାହିଁ । ଠାକୁରଙ୍କ ଛାମୁରେ ରାଗନ୍ତୁ ନାହିଁ ।

—ରାଗ ? ବସନ୍ତ କହିଲା—ମୋ ରାଗ ସହିପାରିବ ତମେ ?

—ଗୋଡ଼ ଧରି ରାଗ ଭାଙ୍ଗିବି ! ନିତାଇ ହସିଲା ।—ଆସ ଆସ ।

ବସାକୁ ଫେରିବା ମାତ୍ରେ ଗୋଟାଏ କଳରବ ପଡ଼ିଗଲା । ନିର୍ମଳା, ଲଳିତା ପ୍ରଭୃତିଙ୍କର

ମଦାନଗାଟା ସେତେବେଳକୁ ବେଶ୍ ଜମିଆସିଛୁ । ଫୁଲମାଳ ବେକରେ ପକେଇ ଗଣ୍ଠି ବାନ୍ଧି ନିତାଇ ଓ ବସନ୍ତ ଫେରିବା ମାତ୍ରେ ସେମାନେ ହୁଲହୁଲି ଦେଇ ହୋ-ହା କରି ଉଠିଲେ । ଗଣ୍ଠିଟା ଖୋଲିବା କଥା ନିତାଇ ବା ବସନ୍ତ ଦୁଇଜଣଙ୍କର କାହାରି ମନେ ପଡ଼ିନାହିଁ ।

ନିତାଇ ହସିଲଗିଲା । ଆଶ୍ଚର୍ଯ୍ୟ, ସେ ଲଜ୍ଜା ବୋଧ କଲା ନାହିଁ—କୌଣସି ଗ୍ଲାନି ବି ଅନୁଭବ କଲାନାହିଁ ।

ଆଶ୍ଚର୍ଯ୍ୟ ଉପରେ ଆଶ୍ଚର୍ଯ୍ୟ—ଲାଜ ମାଡ଼ିଲା ବସନ୍ତକୁ । ଗଣ୍ଠିବନ୍ଧା ନିତାଇର କାନ୍ଧର ଚଦରଖଣ୍ଡିକ ଟାଣିନେଇ ସେ ଲାଜରେ ମଥା ନୁଆଁଇ ମୃଦୁ ମୃଦୁ ହସି ଘର ଭିତରକୁ ପଶିଗଲା ।

## ସତର

ଭ୍ରାମ୍ୟମାଣ ନାଚ-ଗୀତର ଦଳ । ନାଚ ଓ ଗୀତର ବ୍ୟବସାୟ ସାଙ୍ଗରେ ଦେହର ବେପାର କରି ବୁଲେ—ଗ୍ରାମରୁ ଗ୍ରାମାନ୍ତରରେ, ଦେଶରୁ ଦେଶାନ୍ତରରେ । କେବେ କେଉଁ ପର୍ବରେ କୋଉଠି କୋଉ ମେଳା ହୁଏ, କୋଉ ବାଟେ କୋଉଠୁ କୋଉଠିକି ଯିବାକୁ ହୁଏ—ସେସବୁ ଏମାନଙ୍କର ନଖଦର୍ପଣରେ । ବୀରଭୂମଠାରୁ ମୁର୍ଶିଦାବାଦ ପଦବ୍ରଜରେ, ଶଗଡ଼ରେ, ଟ୍ରେନରେ; ତାପରେ ନାଆରେ ଗଙ୍ଗା ପାରିହୋଇ—ରାଜସାହି, ମାଲଦହ, ଦିନାଜପୁରଯାକେ ବୁଲି ଆଷାଢ଼ ଆରମ୍ଭ ହେଉଁ ହେଉଁ ଘରକୁ ଫେରନ୍ତି ।

ପ୍ରୌଢ଼ା କହେ—ଆଗେ ଆମେମାନେ ପଦ୍ମା ସେପାରି ଜଲହଟିକି ବି ଯାଉଥିଲୁ ପଦ୍ମା ସେପାରି ବାଙ୍ଗାଲ୍ * ଦେଶରେ ଆମର ଭାରି ଖାତିର ଥିଲା ।

ନିର୍ମଳା ପଚାରେ—ପଦ୍ମା ସେପାରି ତମେ ଯାଇଛ ମାଉସୀ ?

ନିର୍ମଳାର କଥା ସରୁ ନସରୁଣୁ ମାଉସୀ ପଦ୍ମା ସେପାରିର ଗପ କହିବାକୁ ବସିଯାଏ । କହେ—ଯାଇଛ ? ବାପ୍‌ରେ, ସେ କି ଧୂମ୍‌ଧାମ୍ ।

---

* ପୂର୍ବବଙ୍ଗର ଲୋକଙ୍କୁ ଏହି ନାମରେ ପଶ୍ଚିମବଙ୍ଗର ଲୋକମାନେ ଡାକିଥାନ୍ତି । ପୂର୍ବବଙ୍ଗୀୟମାନେ ପଶ୍ଚିମବଙ୍ଗଳାର ଲୋକଙ୍କୁ କହନ୍ତି—'ଘଟି' ।

ତାପରେ ବେଶ୍ ଆରାମ କରି ଗୋଡ଼ ଲମ୍ବେଇ ବସି ଗୁଆ କାଟୁ କାଟୁ କହେ—ବାଡ଼ର ତେଲ୍ଲୁଟା ଟିକିଏ ମାଲିସ କରିଦେ'ନ, ପଦ୍ମା ସେପାରି କଥା କହିବି, ଶୁଣ ।

ଅବଶେଷରେ ଦୀର୍ଘନିଃଶ୍ୱାସ ପକାଇ କହେ—ଆଃ ମା, ତମେ ସବୁ ଆଉ କଣ ଦେଖିଲ, କଣ ବା ରୋଜଗାର କଲ, ଆଉ କଣଟା ଖାଇଲ ? ସେ ଦେଶ ଜାଣ ସୁନାର ଦେଶ ! ମାଟି ! ବାରମାସ ମା' ଲକ୍ଷ୍ମୀ ଯେମିତି କାନି ପତେଇ ବସିରହିଚନ୍ତି । ଗୁଆ କିଣିବାକୁ ହୁଏନା ମା । ଗୁଆ ବଣ; ଯା—ଗୋଟେଇ ନେଇ ଆସେ । ପଇଡ଼, ନଡ଼ିଆ—ଆମ ଦେଶର ତାଲଭଳିଆ । ଗୁରିଆଡ଼େ ନଲିତା ବଲି ।

ସେ ହାତ ଦ'ଟା ଦୀର୍ଘ ଭଙ୍ଗିରେ ବଢ଼େଇ ଦେଇ ସୁବିସ୍ତୀର୍ଣ୍ଣ ନଲିତା ବୃକ୍ଷ କଥା ବୁଝାଇଦେବାକୁ ଚେଷ୍ଟା କରେ । ତାପରେ ପୁଣି କହେ—ଗୋଟା ଗୋଟା ନଲିତା-ବେପାରି କଥା ! କେତେ ପଇସା ! ଇସ୍ସ୍ ବଡ଼ ବଡ଼ ନାଆ । ବେପାରୀଙ୍କର ନଜର କଣ—କେମିତି ଖୋଲା ହାତ । ଥାଳରେ ପଡ଼ିବ ଅଧୁଲି, ଟଙ୍କା; ସୁକିରୁ କମ୍ ତ ନୁହେଁ । ଆଉ ସେମିତି କଣ ଦେଖିବ ସେ ଖାଇବାର ସୁଖ ! ମାଛ ଖାଲି କେତେ ରକମର । ଇଲିଶି ଭେଟକି—କେତେ ମାଛ ମା'—ଏକବାରେ ଅସଲି ମାଛ । ଆଃ ସେମିତି ଲଙ୍କା ଖାଇବାର କି ଧୂମ୍ ।

ଲଳିତା କହେ—ଆମକୁ ଥରେ ନେଇ ଗ୍ଲଲ ମାଉସୀ ସେଇ ରାଇଜକୁ ।

ମାଉସୀ କହେ—ମା, ସେ ରାମ ନାଇ, ଆଉ ସେ ଅଯୋଧ୍ୟା ବି ନାଇ ! ସେ ରାଇଜରେ ଆଉ ଆମର ସେ ଆଦର ବି ନାଇ ମା ! ସେ କାଳେ ଆମେ ଯାଉଥିଲୁ, ପାଲା ଗାଉଥିଲୁ । ପଦାବଳୀ ଗୀତସବୁ—ଆମର ସେକାଳର ଓସ୍ତାଦ୍‌ମାନେ ପୁଣି ବେଶ୍ ରସ ଦେଇ ପାଲା-ଗୀତ ଲେଖୁଥିଲେ । ସେସବୁ ଗୀତ ଆମେ ଗାଉଥିଲୁ । ଯୋଉଠି ଯେମିତି ଆସର ନା ! ଢଲକ ଚଡ଼ା ଘିନିବ, ଗଳାରେ କଣ୍ଠି ପିନ୍ଧିବ । ପୁଣି ବଜାର-ହାଟରେ ହାଲଫେସନୀ ଗୀତ ହବ । ଆଜକାଲି ଆଉ ପାଲା କିଏ ଶୁଣୁଚ କହ ? ନହେଲେ ପାଲାଗୀତ ଯେମିକରି ତ ଝୁମର !

ବେହେଲାବାଲା ମାଉସୀ କଥା ଶୁଣି ଶୁଣି କହିଲା—ସେ ଦେଶର ମାଝିଙ୍କ ଗୀତ ଶୁଣିଚ ମାଉସୀ ?

—ଶୁଣିନି ? ଭାରି ମିଠା ସୁର । ପ୍ରୌଢ଼ା ନିଜ ମନେ-ମନେଇ ଗୁଣୁ ଗୁଣୁ କରି ସୁର ଖେଳାଇବାକୁ ଆରମ୍ଭ କଲା । ଥରେ ଦ'ଥର ଆବୃତ୍ତି କରି ନିଜେ ମୁଣ୍ଡ ହଲାଇ କହିଲା—ଉଁ—ହୁଁ, ଠିକ୍ ହଉନି ।

ବେହେଲାବାଲା କଣ ଭାବି ଥରେ ଦ'ଥର ବେହେଲାରେ କମାଣିଟା ଟାଣିଲା । ପ୍ରୌଢ଼ା କହିଉଠିଲା—ହଁ ହଁ ! ସେଇ ! କିନ୍ତୁ ବେହେଲାବାଲା ସାଙ୍ଗେ ସାଙ୍ଗେ ବନ୍ଦ କରିଦେଲା ।

ନିର୍ମଳା ସୁରଟି ଶୁଣିବାଲାଗି ଉଦ୍‌ଗ୍ରୀବ ହୋଇଥିଲା । ବେହେଲାଦାର ବନ୍ଦ ହୋଇ ଯିବାମାତ୍ରେ ସେ ଅତ୍ୟନ୍ତ ବିରକ୍ତ ହୋଇ କହିଲା—ଏଇରକମ ମଣିଷ ! ବଜେଇବାକୁ ଆରମ୍ଭ କରି ବନ୍ଦ କରିଦେଲା ।

ନିର୍ମଳାର ପ୍ରିୟଜନ ବେହେଲାଦାର ଟିକିଏ ଅଦ୍ଭୁତ ଧରଣର ମଣିଷ; ସାରା ଦିନ ବେହେଲା ଘେନି ବ୍ୟସ୍ତ । କମାଣିରେ ରଞ୍ଜନ ଘଷୁଥିବ, ବେହେଲାର କାନ ଟାଣି ଟାଣି ତାର ଛୁଣ୍ଡାଉଥିବ; ପୁଣି ତାର ପିନ୍ଧାଉଥିବ । କେତେବେଳେ ଝାଡ଼ୁଚି, କେତେବେଳେ ପୋଛୁଚି । ମଝିରେ ମଝିରେ କେତେବେଳେ ସଯତ୍ନ-ସଞ୍ଚିତ ବାର୍ଣ୍ଣିସ ଶିଶିରୁ ବାର୍ଣ୍ଣିସ ନେଇ ଲଗାଇବାକୁ ବସେ । କିନ୍ତୁ ଖୁବ୍ ଗୁଡ଼ାଏ ବଜାଏନା । ଆସରରେ ବଜାଏ, ବସାରେ ନୂଆ ଗୀତର ତାଲିମ ବସିଲେ ବଜାଏ, ସେ ଅଲଗା କଥା । କିନ୍ତୁ ସାରା ଦିନ ଯେଉଁ ଲୋକଟା ବେହେଲା ନେଇ କରି ବସିଥାଏ, ସେ କେବେହେଲେ ଆପଣାଗ୍ରହେଁ କୋଉ ଗୀତ ବଜାଏନା । ଏହାହିଁ ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଲାଗେ । ଛଅଟା ଟାଣି ସୁର ବାନ୍ଧି ବାନ୍ଧି ଜୀବନ ବିତିଗଲା । ତେବେ ଦିନେ ଦିନେ, ସେ ବି କ୍ୱଚିତ୍, ଗମ୍ଭୀର ରାତିରେ ସମସ୍ତେ ଯେତେବେଳେ ଶୋଇଥାନ୍ତି, ସେ ବେହେଲା ବଜାଇବାକୁ ବସେ । ତାହା ବି ଗୋଟିଏ ଗୀତ ! ଏବଂ ସେମିତିକା ଦିନର ବି ଗୋଟିଏ ଲକ୍ଷଣ ଅଛି । ସେ ଦିନର ସେହି ଲକ୍ଷଣ ନିତାଇ ଆବିଷ୍କାର ବି କରିପକାଇଛି । ନିତାଇ ଆଗରୁ ହିଁ ବୁଝିପାରେ, ନିର୍ମଳା ଘରେ ଆଗନ୍ତୁକ ଆସି ଯେଉଁ ଦିନ ସାରା ରାତିର ମହୋତ୍ସବ ଲଗାଇଦେବ—ସେଇ ଦିନ; ନିତାଇ ବୁଝିପାରେ ଯେ ଆଜି ବେହେଲାଦାର ବେହେଲା ବଜାଇବ ।

ସେ ଗୋଟାଏ ଅଦ୍ଭୁତ ଗୀତ । ନିତାଇ ବାଜଣାରେ ସେ ଗୀତ ଶୁଣିଛି । ଅନ୍ଧାରରେ କେଉଁ ଗଛମୂଳେ ଏକାକୀ ବସି ବେହେଲାଦାର ସେ ଗୀତ ବଜାଏ; କିନ୍ତୁ କେହି ପାଖକୁ ଆସି ବସିଲେଇ ବେହେଲାଦାର ବେହେଲାଖଣ୍ଡି ତଳେ ଥୋଇଦିଏ । ଏପରି ରାତିରେ, ଅର୍ଥାତ୍ ନିର୍ମଳା ଘରେ ମହୋତ୍ସବ ରାତିରେ ନିତାଇ ଏଇ ଗୀତଟି ଶୁଣିବା ପାଇଁ ନିଜ ଭିତରେ ବି ଉଦ୍‌ଗ୍ରୀବ ହୋଇଥାଏ । ନିସ୍ତବ୍ଧ ରାତିରେ ବେହେଲାର ସୁର ଉଠିବା ମାତ୍ରକେ ତା ନିଦ ଭାଙ୍ଗିଯାଏ, କିନ୍ତୁ ସେ ଉଠେନା, ଶୋଇ ଶୋଇ ଶୁଣୁଥାଏ । କେବଳ ମଇଁଷି ପରି ଲୋକଟାକୁ ହିଁ ବେହେଲାଦାର ଖାତିର କରେନା । ଲୋକଟା ଯେମିତି ମଣିଷଇ ନୁହଁ; ଗୋଟାଏ ଜଡ଼ ପଦାର୍ଥ । ଲୋକଟା ବି ଚୁପ୍‌ଚାପ୍ ନାଲି ଆଖି ଦୁଇଟା ମେଲି ନିଶାବିଭୋର ଦୃଷ୍ଟିରେ ଅନ୍ଧାର ଆଡ଼କୁ ଅନାଇ ବସିଥାଏ ।

ଲଳିତାର ପ୍ରିୟଜନ ପାଳିଆ ଲୋକଟି ଅତ୍ୟନ୍ତ ତାର୍କିକ । ତର୍କ ତାର ଅଧିକାଂଶ ସମୟରେ ସେଇ ବାଜଣାଦାର ଲୋକଟି ସାଙ୍ଗରେ, ବାଜଣାର ବୋଲ୍ ଓ ତାଳ ଘେନି ତର୍କ ସେମାନଙ୍କର ଲାଗିରହିଥାଏ । ମଝିରେ ମଝିରେ ଲଳିତା ସାଙ୍ଗରେ ବି କଳିଆ

ଲାଗିଯାଏ । ଲଳିତା ତାକୁ ଘରୁ ବାହାର କରିଦିଏ । ଲୋକଟା ମାଉସୀ ପାଖରେ ଫେରାଦ ହୁଏ । ମାଉସୀର ବିଚାରରେ ପରାଜୟ ଯାହାର ହୋଇଥାଉ ପଛେ, ସେ ହିଁ ଲଳିତା ପାଖରେ କ୍ଷମା ପ୍ରାର୍ଥନା କରି କହେ—ଦୋଷ ହୋଇଯାଇଚି ମୋର, କସୁର୍ ମାନୁଚି ମୁଁଇ । ଆଉ କେବେହେଲେ ଏମିତି କରିବିନି । କାନ ମୋଡ଼ି ଦଉଚି । ଲୋକଟା ସତରେ କାନ ମୋଡ଼ିହୁଏ ।

ନିର୍ମଳା ଓ ବସନ୍ତ ଲୋକଟାର ନାଁ ଦେଇଚନ୍ତି—'ଚୁଚୁନ୍ଦ୍ରା' । ଶ୍ରୀ ଚରଣ-ଚୁଚୁନ୍ଦ୍ରା । କଥାଟା ଅବଶ୍ୟ ଲୁଚେଇ କହିବାକୁ ହୁଏ, ନୋହିଲେ ଲଳିତା କନ୍ଦଳ ଲଗାଇ ତୁମୁଳ କାଣ୍ଡ କରି ବସିବ । ପାଳିଆ ଲୋକଟି କିନ୍ତୁ ରାଗେନା—ହସେ ।

ବଜଣାଦାରଟିର ପ୍ରିୟତମା କେହି ନାହିଁ । ଜୁଟିଲେ ବି ରହେ ନା । ଲୋକଟିର କେମିତି ସ୍ୱଭାବ—ଯେଉଁ ନାରୀଟି ସହିତ ସେ ପ୍ରେମ କରିବ, ତାହାରି ଟଙ୍କାପଇସା ସେ ଚୋରି କରି ବସିବ । ଲୋକଟି ପ୍ରୌଢ଼ । ନିର୍ମଳା, ଲଳିତା ଦି'ଜଣଯାକ ଥରେ ଲେଖାଁ ତାର ପ୍ରିୟତମା ଥିଲେ; କିନ୍ତୁ ସେଇ ଗୋଟିଏ କାରଣରୁଇ ବିଚ୍ଛେଦ ଘଟିଯାଇଛି । ଲୋକଟି କିନ୍ତୁ ବଜାଏ ଖୁବ୍ ଭଲ—ଯେମିତି ତାର ତାଳଜ୍ଞାନ, ବାଜଣାର ହାତଟି ବି ସେଇମିତି ମିଠା । କେତେ ଥର ଚୋରି କରି ଝଗଡ଼ା କରି ଦଳରୁ ଚାଲିଯାଇଛି, ପୁଣି କିଛି ଦିନ ପରେ ଫେରିଆସିଛି । ଲୋକଟା ଅଭିସାରରେ ଚିରନବୀନ । ରାତିରେ ବାଜଣା ବଜାଏ, ଦିନରେ ସେ ଘୂରିବୁଲେ ନାରୀର ସନ୍ଧାନରେ ।

ନିର୍ମଳା ଓ ଲଳିତା ନିତାଇର ଗୋଟାଏ ନାଁ ଦେଇଚନ୍ତି । କହନ୍ତି—'ବସନ୍ତର କୋକିଳ' ।

ବସନ୍ତ, ନିତାଇ ଦି'ଜଣଯାକ ହସନ୍ତି ।

ନୂଆ ଜୀବନର ଏଇ ପରିବେଶ ଭିତରେ ନିତାଇର ଦିନ ବିତିବାକୁ ଲାଗିଲା । ଜୀବନସ୍ରୋତର ତୋଡ଼ରେ କୋଉଠିକି ଆସି ପହଞ୍ଚିଲା, ଠାକୁରଝି କୁଆଡ଼େ ଭାସିଗଲା, ରାଜା କୋଉଠି ରହିଲା—ଏସବୁ ଭାବିବସିଲେ ତାର ଛାତି ଭିତରଟା କେମିତି କରି ଉଠେ, ଧାଇଁପଳାଇବାକୁ ଇଚ୍ଛା ହୁଏ; କିନ୍ତୁ ବସନ୍ତ ମୁହଁକୁ ଚାହିଁ ସେ ତାହା କରି ପାରେନା । ଯେଉଁ ଗଣ୍ଠିଟା ସେ ବାନ୍ଧିଥିଲା, ସେ ଗଣ୍ଠିଟା ଯେମିତି ଅହରହ ବନ୍ଧା ହୋଇକରି ରହିଛି, ଖୋଲୁନାହିଁ କେବେହେଲେ । ଘାତ-ପ୍ରତିଘାତ ସହ୍ୟ କରି ଗୋଟିଏ ହାତରେ ଲୁହ ପୋଛୁ, ଅନ୍ୟ ହାତଟି କବିଗୀତ ସାଙ୍ଗରେ ଦର୍ଶକଙ୍କ ଆଡ଼କୁ ବଢ଼ାଇ

ଦେଇ ସେ ନିଷ୍ପୃହ ନିର୍ବିକାରର ଏପରି ଗୋଟିଏ ଆବରଣ ତିଆରି କରିନେଇଛି ଯେ, ସବୁକିଛି ତାର ସହ୍ୟ ହେଲା; ଅଥଚ ସହନଶୀଳତାର ଗଣ୍ଡି ତାକୁ କୌଣସି ପ୍ରକାର ସଙ୍କୁଚିତ କଲାନାହିଁ । ବସନ୍ତକୁ ସେ ଭଲ ପାଇଲା । ଦୁଇହାତ ନେଇ ଗୁଡ଼ରେ ଜାକି-ଧରିଲା, କିନ୍ତୁ ଠାକୁରଝିଅଙ୍କୁ ସେ ଭୁଲିଲା ନାହିଁ । ବସନ୍ତ ଘରକୁ ଯେଉଁ ଦିନ ମଣିଷ ଆସନ୍ତି ସେଦିନ ଏକା ଗଛମୂଳେ ଶୋଇ ମନେ ମନେ ଠାକୁରଝିଅ ସାଙ୍ଗରେ କଥା କୁହେ ଅଥବା କବିତାର ଗୀତ ବାନ୍ଧେ । ଅହରହ ତାହାର ମନ ଭିତରେ ଘୂରୁଥାଏ ଗୀତର ପଦ । 'ବସନ୍ତର କୋକିଳ' ନାମ ଦେବାରେ ସେ ଗୋଟିଏ ଗୀତ ବାନ୍ଧିଛି । କବି-ଗାଉଣାର ପାଲି ଆସରରେ ସେ କେଉଁ କନ୍ଦରରେ ଖପାଇନେଇ ସେଇ ଗୀତଟି ଗାଇବଇ ଗାଇବ—

"ସଖୀ, ଶୁଣିଚୁ କି ବସନ୍ତର କୋକିଳ ଝଙ୍କାର
ବଇଁଶୀ ସିତାର—ତା ପାଖେ ଛାର
ସେ ଗୀତ ପାଖରେ ସବୁ ଗୀତର ହାର ।"

'କୋକିଳ' ନାମଟି ହିଁ ତାର ସ୍ଥିରଆଡ଼େ ରଟିଯାଇଛି । 'କଳା-କୋକିଳ' ନାମରେଇ ସେ ଏଇଲା ସବୁଠିଁ ପରିଚିତ ।

ଏହାରି ଭିତରେ ସେ ଅନେକ କିଛି ଶିଖିଛି, ଅନେକ ସଂଗ୍ରହ କରିଛି । ପ୍ରାଚୀନ ପ୍ରସିଦ୍ଧ କବିୟାଲଙ୍କର ,ଅନେକ ପ୍ରସିଦ୍ଧ ପାଲିଗୀତର କେତେ ପଦ ତାହାର ମୁଖସ୍ଥ । ହରୁ ଠାକୁର, ଗୋପାଳ ଉଡ଼େ, ଫିରଙ୍ଗୀ କବିୟାଲ ଆଣ୍ଟନୀ ସାହେବ, କବିୟାଲ ଭୋଳା ମୟରା * ଠାରୁ ଆରମ୍ଭ କରି ନିତାଇର ମନେ ମନେ ବରଣ କରିହୋଇଥିବା ଗୁରୁ ତାରଣ ମଣ୍ଡଳ ଯାକେ କବିୟାଲମାନଙ୍କର ଗଳ୍ପ, ଗୀତ ସେ ସଂଗ୍ରହ କରିପକାଇଛି । ଅବସର ସମୟରେ କେତେ ରକମର ଖିଆଲ ଆସେ ନିତାଇର । ବସି ବସି ଟ୍ରେନ୍ ମରଦାଲର ଟୁଇଅଙ୍କର 'ଲକ୍ଷ୍ମୀ-କଥା'ଟିକି ସେ ଦିନେ ପୟାର ଛନ୍ଦରେ କବିତା କରିପକାଇଛି ।

ଥରେ ଲକ୍ଷ୍ମୀବାର ଦିନ ସେ ବସନ୍ତକୁ ଅବାକ୍ କରିଦେଲା । ବସନ୍ତ ଯେତେବେଳେ ବ୍ରତକଥା ଶୁଣି ସାରି ଅସି ସଯତ୍ନରେ ଠାଆକରି ନିତାଇକୁ ପ୍ରସାଦ ଖାଇବାକୁ ଦେଲା, ସେତେବେଳେ ନିତାଇ କହିଲା—କଥା ଶୁଣା ହେଇଗଲା ?

—ହଁ ।

---

* ବଂଗଳାର ପ୍ରସିଦ୍ଧ କବିୟାଲଗଣ । 'ଗୋପାଳ ଉଡ଼େ' ସମ୍ଭବତଃ ଓଡ଼ିଶାର ଲୋକ । 'ଫିରଙ୍ଗୀ କବିୟାଲ ଆଣ୍ଟନୀ' ୟୁରୋପୀୟ ।

—ତେବେ ମୋଠୁଁ ଥରେ ଶୁଣିନଅ ।

ସବିସ୍ମୟରେ ବସନ୍ତ କହିଲା—କଣ ?

—ଲକ୍ଷ୍ମୀଙ୍କ କଥା । ଏତକ କହି ନତାଇ ହାତଟି ବସନ୍ତ ଆଡ଼କୁ ପ୍ରସାରିତ କରି କବିଗାନର ଡଗ ବୋଲିବା ସୁରରେ ଆରମ୍ଭ କରିଦେଲା—

"ନମୋନମ ଲକ୍ଷ୍ମୀଦେବୀ—ନମୋ ନାରାୟଣୀ
ବୈକୁଣ୍ଠର ରାଣୀ ମା ଗୋ—ସୁନାର ବରଣୀ ।
ଶତଦଳ ପଦ୍ମେ ବସେ—ସେଇ ଯେ କମଳା
ଟିକିଏ ସହେନା ପାପ—ସେଇ ତ ଚଞ୍ଚଳା ।"

ବସନ୍ତ ଅବାକ୍ ହୋଇଯାଇଥିଲା । ସେ ପଚାରିଲା—କୁଆଡ଼ୁ ଯୋଗାଡ଼ କଲ ? ନୂଆ ବ୍ରତକଥା କଣିଚ—ସେଇଥିରେ ଅଛି ବୋଧେ ?

ନତାଇ ଜବାବ ନଦେଇ ଖାଲି ହସିବାକୁ ଲଗିଲା ।

—କୁହନା ?

—ଆଗ ଶୁଣନା । ଭଣିତାରେଇ ସବୁ ପାଇବ ।

"ଅଧମ ନତାଇ କବି—ବସନ୍ତ-କୋକିଳ
ଲକ୍ଷ୍ମୀଙ୍କ ବନ୍ଦାଣ ଗାଏ—ଶୁଣ ହେ ନଖିଳ ।"

ମୁଖରା ଦର୍ପିତା ବସନ୍ତ ଉଲ୍ଲାସରେ ବିସ୍ମୟରେ ଅଧୀର ହୋଇ ଧାଇଁଯାଇ ସମସ୍ତଙ୍କୁ ଡାକିଆଣିଲା—ଆଲୋ ମାଉସୀ, ଲକ୍ଷ୍ମୀଙ୍କ ପାଞ୍ଚାଳୀ ଲେଖିଚ ।

ମାଉସୀ ପଚାରିଲା—କଣ ? କିଏ ?

ବସନ୍ତ ଧଇଁସଇଁ ହୋଇ କହିଲା—ଲକ୍ଷ୍ମୀଙ୍କ ପାଞ୍ଚାଳୀ ! ଲେଖିଚ ତମ·ଜୋଇଁ !

ସେଦିନ ସନ୍ଧ୍ୟାବେଳେ ନିଜ ଘର ଭିତରେ ସେ ଆସର ଜମାଇ ସମସ୍ତଙ୍କୁ ଡାକିକରି କବିୟାଲର ପାଞ୍ଚାଳୀ ଶୁଣାଇ ତେବେଯାଇ ଛାଡ଼ିଲା । ନତାଇକୁ କହିଲା—ବେଶ୍ ସୁରକରି ବୋଲ !

ନତାଇର ପାଞ୍ଚାଳୀ ଶୁଣି ଦଳର ସମସ୍ତେ ବିସ୍ମିତ ହୋଇଗଲେ । ସତରେ ପାଞ୍ଚାଳୀଟି ବେଶ୍ ଭଲ ହୋଇଥିଲା । ତାହାଛଡ଼ା ସେମାନଙ୍କର ପରିଚିତ କବିୟାଲମାନେ କବି-ଗାଉଣା କରନ୍ତି, ଡଗ ମେଲନ୍ତି, ଦୁ'ଚାରିଟା ଗୀତ ବି ଲେଖନ୍ତି; କିନ୍ତୁ ଏମିତିକରି ଧର୍ମକଥା ଘେନି କେହି ପାଞ୍ଚାଳୀ ରଚନା କରେନା । ସେ କାଳର ବଡ଼ ବଡ଼

କବିୱାଲମାନେ ଲେଖିଯାଇଛନ୍ତି; ସେଇଗୁଡ଼ିକ ଆଜଯାକେ ଚଳୁଚି, ଭଣିତା ସମସ୍ତରେ ସେଇ ସବୁ କବିୱାଲଙ୍କ ଉଦ୍ଦେଶ୍ୟରେ ଏମାନେ ପ୍ରଣାମ ଜଣାନ୍ତି । ସମସ୍ତେ ବିସ୍ମିତ ହେଲେ ଯେ ନିତାଇ ସେମିତି ପାଞ୍ଚାଲୀ ରଚନା କରିଅଛି ଏବଂ ସେଇ ଦିନଠାରୁ ହିଁ ତାହାର ସମ୍ଭ୍ରମ ଆଦର ବଢ଼ିଗଲା ।

ନିତାଇର ପାଞ୍ଚାଲୀ ବର୍ତ୍ତମାନ ଏଇ ଦଳଟିରେ ବ୍ରତକଥା ହୋଇଗଲାଣି । ଖାଲି ଏଇ ଦଳର ବାହିଁକ, ଆଉ ପାଞ୍ଚ-ସାତଟା ଦଳର ଓସ୍ତାଦ୍ ଏଇ ପାଞ୍ଚାଲୀ ଲେଖି ନେଇ-ଗଲେଣି । ପୂର୍ଣ୍ଣିମାରେ ଗୁରୁବାରରେ ଯେତେବେଳେ ଝିଅମାନେ ବସି ତାହାର ରଚିତ 'ଲକ୍ଷ୍ମୀଙ୍କ ପାଞ୍ଚାଲୀ' ବୋଲନ୍ତି, ସେତେବେଳେ ନିତାଇ ବେଶ୍ ଟିକିଏ ଗମ୍ଭୀର ହୋଇ ଉଠେ । ମନେ ମନେ ଭାବେ, ଆଉ କଣ ଏମିତି ରଚନା କରନ୍ତା, ଯାହା କି ଦେଶେ ଦେଶେ ଲୋକମୁଖରେ ପ୍ରଚାରିତ ହୁଅନ୍ତା ।

ତାହାର ବସ୍ତାନିଟି ବି କ୍ରମଶଃ ବଡ଼ ହୋଇଯାଇଛି । ଅନେକ ନୂଆ ବହି ସେ ମେଳାରୁ କିଣିଅଛି । ଆଜିକାଲି କଲିକତାରୁ ବି ବହି ଅଣାଏ । ଏଇ ସନ୍ଧାନଟି ଶିଖାଇଛି ଦଳନେତ୍ରୀ ସେଇ ମାଉସୀଟି । ମାଉସୀ କେତେ କଥା ଜାଣିଛି; ନିତାଇ ବେଳେବେଳେ ଅବାକ୍ ହୋଇଯାଏ । ସେ ତାକୁ ସତରେ ଶ୍ରଦ୍ଧା କରେ । 'ବିଦ୍ୟାସୁନ୍ଦର'*ର ସନ୍ଧାନ ତାକୁ ମାଉସୀ ହିଁ ଦେଇଥିଲା । ବସନ୍ତ ଦିନେ ବାଳ ବାନ୍ଧି ବାନ୍ଧି ଜୁଡ଼ା ନବାନ୍ଧି କରି ବେଣୀ ଝୁଲାଇ କଣ କାମରେ ବାହାରକୁ ଆସିଥିଲା । ନିତାଇ କହିଥିଲା—ବେଣୀରେଇ ତମକୁ ଯେନଉଛି ଭଲ ବସନ, ଜୁଡ଼ା ଆଉ ବାନ୍ଧନା ଦେହରେ ।

ମାଉସୀ ସଙ୍ଗେ ସଙ୍ଗେ ଗୀତ ମେଲିଥିଲା—

"ବିନୋଦିନୀ ବିନୋଦିଆ ବେଣୀର ଶୋଭାରେ
ସାପିନୀ ତାପିନୀ ତାପେ ଲୁଚିଲେ ବିବରେ ।"

ନିତାଇ ବିସ୍ମୟ-ବିସ୍ଫାରିତ ଆଖିରେ ମାଉସୀ ଆଡ଼କୁ ଅନାଇଥିଲା । ତାହାର ଆଖିର ଚାହାଣୀ ଦେଖି ହସିକରି ମାଉସୀ କହିଥିଲା—'ବିଦ୍ୟାସୁନ୍ଦର' ଜାଣିଚ ବାବା ! ରାୟ

---

* ବଙ୍ଗଳାର ଏକ ପ୍ରସିଦ୍ଧ କାବ୍ୟ । ରଚୟିତା ଭାରତଚନ୍ଦ୍ର ରାୟ ଗୁଣାକର ।

ଗୁଣାକରଙ୍କ 'ବିଦ୍ୟାସୁନ୍ଦର' !

ବସନ୍ତ, ଲଳିତା, ନିର୍ମଳା ସବୁ ଅଡ଼ିବସିଲେ—ଆଜି କିନ୍ତୁ ବିଦ୍ୟାସୁନ୍ଦର ବୋଲିବାକୁ ହେବ ମାଉସୀ ।

—ସବୁ କଣ ମନେ ଅଛି ମା' ! ଭୁଲିଗଲିଣି ।

—ତାହେଲେ ସେଇ ଗୀତ ନିଜ କଥାଟି ବୋଲ । ସେଇଟି ତ ମନେ ଅଛି । ବସନ୍ତ ହସି ହସି ଗଡ଼ିଯାଉଥିଲା ।

—ମାଲୁଣୀ ମାଉସୀ କଥା ? ମାଉସୀ ହସି ଆରମ୍ଭ କରିଥିଲା—

"କଥାରେ ହୀରାର ଧାର ହୀରା ତାର ନାମ
ଦାନ୍ତ ଯୋଲ ମଜା ହେଲ ହାସ୍ୟ ଅବିରାମ ।"

ମାଉସୀ ଗଡ଼-ଗଡ଼ କରି କହିଯାଉଥାଏ—

"ବିତାଏ ମେଲିଲ ଫାନ୍ଦ କନ୍ଦଳ ଉଥାଏ
ପଡ଼ୋଶୀ ନରହେ କାଲେ କନ୍ଦଳର ଭୟେ ।"

ନିତାଇ ମାଉସୀ ପାଖରେ ବସି ବିନୟ କରି କହୁଥିଲା—ମତେ ଟିକେ ଶିଖାଇଦବ ମାଉସୀ, ମୁଁ ଖାତାରେ ଟିପିରଖିବି ?

—ମୋର ତ ସବୁଗୁଡ଼ା ମନେ ନାହିଁ ବାପା ! ତମେ 'ବିଦ୍ୟାସୁନ୍ଦର' ବହିଟା ଆଣିନା । ବଟତଳା ଛାପାଖାନାକୁ ଲେଖିଦିଅ, ଡାକରେ ଚାଲିଆସିବ । ତମେ ଦାମ ଦେଇ-କରି ଛଡ଼େଇନବ । ବଟତଳାର ଠିକଣା ପାଞ୍ଜିରେ ମିଳିବ ।

ବିଦ୍ୟାସୁନ୍ଦର ସଙ୍ଗରେ ସେ ଅନ୍ନଦାମଙ୍ଗଳ ପାଇଅଛି । ବହିପୃଷ୍ଠାରେ ବିଜ୍ଞାପନ ଦେଖି ଦାଶୁରାୟଙ୍କ ପାଞ୍ଚାଳୀ, ଉଦ୍‌ଭଟ କବିତାର ବହି ବି ଆଣାଇଛି । ଦାଶୁରାୟଙ୍କ ଲେଖା ପଢ଼ି ତା ମନର ଗୋଟିଏ ସଂଶୟ ଯାଇଅଛି । 'ନନ୍ଦେ ବୋଲି ନାଗରେ, ଡୁବିଛି ରାଇ ରାଜନନ୍ଦିନୀ କୃଷ୍ଣ-କଳଙ୍କ ସାଗରେ ।' ଏବଂ 'ଗିରି, ଗୌରୀ ମୋର ଆସିଲେ ସପନେ ଦେଖାଦେଇ, ଚେତନ କରାଇ ଚୈତନ୍ୟରୂପିଣୀ କୁଆଡ଼େ ଲୁଚିଲେ ଯାଇ' ଦାଶୁରାୟ ହିଁ ଲେଖିଛନ୍ତି; ପୁଣି ଖେଉଡ଼ରେ ବି ଦାଶୁରାୟ ଚରମ ଲେଖା ଲେଖିଯାଇଛନ୍ତି । ଆସରରେ ଖେଉଡ଼ ପାଲି ଗାଇବା ଆଗରୁ ସେ ଦାଶୁରାୟଙ୍କୁ ସ୍ମରଣ କରି ମନେ ମନେ ପ୍ରଣାମ କରେ ।

ଖେଉଡ଼ ଆଉ ତାକୁ ଖୁବ୍ ବେଶୀ ଗାଇବାକୁ ପଡ଼େ ନାହିଁ, ଗାଇବାକୁ ବି ଆଉ

ସଙ୍କୋଚ ହୁଏନାହିଁ । କିଛୁଦିନ ଭିତରେଇ କବିଯୁଆଳି ଓ କବିଗାନ-ଶ୍ରୋତାଙ୍କ ମହଲରେ ତାର ବେଶ୍ ଗୋଟାଏ ସୁଖ୍ୟାତି ରଟିଯାଇଅଛି । ତାହା ଫଳରେ ଲୋକମାନେ ବର୍ତ୍ତମାନ ତା ଗୀତ ମନଦେଇ ଶୁଣନ୍ତି, ଅଶ୍ଳୀଳ ଖେଉଡ଼, ଗାଳିଗୁଲିଜର ଜବାବରେ ସେ ଯେବେ ଗ୍ଲେଖା-ଗ୍ଲେଖା ବଙ୍କା ରସିକତାରେ ଗୀତ ଆରମ୍ଭ କରେ, ଲୋକମାନେ ତାହାର ତାରିଫ୍ କରନ୍ତି । କିଛୁଦିନ ତଳେ ଗୋଟାଏ ଆସରରେ ଏହିପରି ଜଣେ କବିଯୁଆଳି ସାଙ୍ଗରେ ଆସର ପଡ଼ିଥିଲା । ଲୋକଟା ବୁଢ଼ା ହୋଇଯାଇଛି, ତଥାପି ଯେତିକି ତାର ଚେହେରା ଛଇଛଟକ, ସେତିକି ସେ ଅଶ୍ଳୀଳ । ଖେଉଡ଼ରେ କୁଆଡ଼େ ବୁଢ଼ାର ଖୁବ୍ ନାଁ-ଡାକ । ଲୋକମାନେ ତାକୁ 'ଖେଉଡ଼ର ବାଘ' ଡାକନ୍ତି ।

ସେ ବି ଗୋଟାଏ ଝୁମୁରଦଳ ସାଙ୍ଗରେ ଥାଏ । ବୁଢ଼ା ନିଜେଇ ଆଗ ଆସର ନେଇ ନିତାଇକୁ କଲାଗ୍ରନ୍ଦ ଠିଆ କରି ନିଜେ ବୃନ୍ଦାବତୀ ସାଜିଲା । ସେହି ସମ୍ପର୍କ କରିନେଇ ଚନ୍ଦ୍ରାବଳୀ ଅର୍ଥାତ୍ ବସନ୍ତକୁ ବୁଢ଼ା ଗାଳିଗୁଲିଜ ଦବାକୁ ଆଉ ବାକି ରଖିଲାନି । ତାହା ସଙ୍ଗେ କୃଷ୍ଣ ହିସାବରେ ନିତାଇକୁ ଯେପରି ଜୀଅନ୍ତା ମାଟିରେ କବର ଦବାକୁ ବସିଲା । ଏଇ ସମ୍ପର୍କଟା କବି-ପାଲିରେ ବଡ଼ ସୁବିଧାର ସମ୍ପର୍କ । ବିଶେଷକରି ଯିଏ ଆଗେ ଆସରରେ ଠିଆହେବ, ସେ ବୃନ୍ଦା ହୋଇ ପ୍ରତିପକ୍ଷକୁ କଲାଗ୍ରନ୍ଦ କରି ଗାଳିଗୁଲିଜର ସୁବିଧା କରିନିଏ । ତାହାଛଡ଼ା ପ୍ରଥମ ଆସରରେ ଯେଉଁ ଦିନ ବସନ୍ତ ତାକୁ ଗୁପ୍ତଡ଼ା ମାରିଥିଲା, ସେଦିନ ପ୍ରତିପକ୍ଷ କବିଯୁଆଳି ନିତାଇ ସଙ୍ଗରେ ଏହି ସମ୍ପର୍କ ପକାଇ ତାହାକୁ ଯେ ଜବ୍ଦ କରିଥିଲା, ସେ କଥା ବି କାହାର ଅଜଣା ନାହିଁ । ତେଣୁ ପ୍ରାୟ ସବୁଠାରେ ସୁବିଧା ପାଇଲେଇ ପ୍ରତିପକ୍ଷ ଏହି ସମ୍ପର୍କ ପକାଇବସେ । ଲୋକଟା ସଭାରେ ଠିଆହେବା ମାତ୍ରେ ଖେଉଡ଼ ଆରମ୍ଭ କରିଦେଲା । ନିତାଇର ଚେହେରା, ବସନ୍ତର ରୂପରଙ୍ଗ ନେଇ ଏବଂ ଅସଭ୍ୟ ଗାଳିଗୁଲିଜ କରି ଆସର ଶେଷ କଲା ।

ନିତାଇ ଆସରକୁ ଆସିବା ମାତ୍ରକେ ପ୍ରୌଢ଼ା କହିଲା—ବାପା, ସେଇ ପୁରୁଣା ପାଲି । ଟିକିଏ ରଙ୍ଗ ଚଢ଼େଇବ ନା କଣ ?

ନିତାଇ ହସି କହିଲା—ନିଶ୍ଚେ ଚଢ଼େଇବ । ଦେଖେଁ ଗୋଟା ଆସର, ତାପରେ ହିସାବ କ ! କହିଦେଇ ସେ ଆରମ୍ଭ କଲା । ଗୀତଟା ସେଇ ପୁରୁଣା ଗୀତ ।

"ବୁଢ଼ୀ ବୟସେ ବୃନ୍ଦେ ଶୁକ୍ନାଟା ମୁହେଁ ଆଉ ରସକଳୀ କା'ଟେନା ଲୋ
ରସର ଭିଆଣ ଚହ୍ଲିଲୁ ନାଇଁ ଗନ୍ଧଆ ଡାଢ଼ ଘା'ଷ୍ଟେନା ଲୋ !
. ପାଚିଲା ବାଳ ତ ହେଲାଇଁ ଘୋଟ—ଟେଗା କାଠୁରୁ ଉହିଁ ଆଲବୋଟ
( ହୋ ତୋର ) ପାକୁଆ ପାଟିର ଲମ୍ବ ଜିଭରେ ଛେପଗା ନାଳ ଗ୍'ଟେନା ଲୋ ।

ହାଇରେ ହାଇ—ବୁଢ଼ୀ ମରେନା—ମରଣ ନାହିଁ
ତା ଉପରେ ଯମ ଆସେ ନାହିଁ—ତାର ମରଣ ନାହିଁ ।"

—ଉପରଟା କୋଉଥିକି ? ପାଲାଆଏ; ଜାଣିଚ ତମେ—ଯମର ଉପରଟା କୋଉଥିପାଇଁ ?
ଜଣେ କହିଲା—ଅରୁଚ, ଯମର ଅରୁଚ ।
— ଉହୁଁ ।
ଆଉ ଜଣେ କହିଲା—କାଳେ ସେଠେଇଁ ବଦମାସୀ କରେ, ସେଇଥିପାଇଁ ।
—ଉହୁଁ । ଆଲୋ ଚନ୍ଦ୍ରାବଳୀ, ତମେ ଜାଣିଚ ?
ବସନ୍ତ ବିବ୍ରତ ହେଲା, କଣ କହିଲେ କବିୱାଲାର ମନୋମତ ହେବ ବା ସୁବିଧା ହବ ସେ ଜାଣେନା । ତଥାପି ସେ ଠକିଯିବାର ଝିଅ କି ? ସେ କହିଲା—ବୁଢ଼ୀ କାଳେ ଯମ ସାଙ୍ଗରେ ପୀରତି କରିବାକୁ ଚାହିଁବ ସେଇଥିପାଇଁ ସେ ତାକୁ ନିଏନା ।
ନତାଇ ବାହା-ବାହା କରି ଉଠିଲା । ଲୋକମାନେ ବି ଏକବାରେ ହସି ହସି ଗଡ଼ିଗଲେ । ଠିକ୍ କଥା, ଠିକ୍ କଥା । କହି ସେ ଗୀତ ଆରମ୍ଭ କଲା—

"ଆଃ, କାଳେ ସେ ପୀରତି ମାଗେ—ଯମ ତାକୁ ଦେଖି ଭାଗେ
ଆଲୋ ତତେ ଦୂରୁଁ ଜୁହାର—ଠେଙ୍ଗଣିବୁଢ଼ୀ—
ପାକୁଆ ପାଟିରେ ହ'ସନା ଲୋ
ଯମ ସାଙ୍ଗରେ ର'ସନା ଲୋ !"

ନତାଇର ପଦପାତର ସୌନ୍ଦର୍ଯ୍ୟ, ମିଠା କଣ୍ଠର ମାଧୁର୍ଯ୍ୟ, ବ୍ୟଙ୍ଗ ଶ୍ଳେଷର ତୀକ୍ଷ୍ଣତାରେ ବେଶ୍ ଜମିଉଠେ ଆସର । ତା ସଙ୍ଗେ ସଙ୍ଗେ ବସନ୍ତ ନାଚେ । ବସନ୍ତ ବି ଏବେ ସେପରି ଅଶ୍ଳୀଳ ଭଙ୍ଗି କରି ନାଚେନା, ତେବେ ନାଚେ ସେ ବିଭୋଳ ହୋଇ ! ଲୋକମାନେ ପସନ୍ଦ କରନ୍ତି । ଜନତାର ଗୋଟିଏ ଗୋଟିଏ ଅଂଶ ଅବଶ୍ୟ ଅଶ୍ଳୀଳ ଇଙ୍ଗିତ କରି ଚିତ୍କାର କରନ୍ତି; କିନ୍ତୁ ବେଶୀ ଅଂଶ ତାରିଫ୍ ହିଁ କରନ୍ତି । ଜଣକାତେ ଭଦ୍ରଲୋକଙ୍କୁ ବି କମେ ଜମିବାର ଦେଖାଯାଉଛି ନତାଇର ପାଲା ଆସରରେ । ନତାଇ ମଧ୍ୟ ଅବସର ବୁଝି ଗୀତକୁ ଟାଣିଆଣେ ମିଷ୍ଟ ରସ ଆଡ଼କୁ ।
ସେ ଗୀତ ଗାଏ—

"ଭଲପାଏଁ ବୋଲି ତୁମରେ ସହିପାରେନା ଅସଗୁଣ
ନୋହିଲେ ତମର କଟୁ କଥାରୁ ଭଲ କେଡ଼େ ମୋ ମରଣ ।"

ସେ ଆରମ୍ଭ କରେ, ତମେ ବୃନ୍ଦେ—ତୁମେଇ ତ ମୋର ପ୍ରେମର ଗୁରୁ—ତୁମେଇ ତ ମୋତେ ରାଧା ସଙ୍ଗେ ଚନ୍ଦ୍ରା କରାଇଚ—ତୁମେଇ ତ ରଚନା କରିଛ ପୂର୍ଣ୍ଣିମା—ପୂର୍ଣ୍ଣିମାରେ କୁଞ୍ଜଶଯ୍ୟା, ପୁଣି ଆମ ଦୁହିଙ୍କ ସାମନାରେ ତୁମେଇ ଗାଇଛ ଯୁଗଳରୂପର ମାଧୁରୀ— ! ଆଗେ ଦୂତୀ—ସେଇ ତୁମର ଏଇ ବୃଦ୍ଧ ବୟସରେ ଏହି ମତିଭ୍ରଂଶ ଦେଖି ମନର ଯାତନାରେ ତମକୁ କେତେ କଟୁ କଥା କହିଗଲି । ତୁମେ ନିଜେଇ ଅରେ ଭାବି ଦେଖ ନିଜ କଥାଟା ।

> "ରସର ଭଣ୍ଡାର ତୁମେ—କଥା ତୁମର ମିଶିରିପଣା
> ସେଇ ତୁମେ ଆଜି ହାଟରେ ବିକ—ଶସ୍ତା ଖେଉଡ଼ ଘୁଗୁନିଚଣା ।"

ଆସରର ମଙ୍ଗ ମୋଡ଼ିଦେଲା ନିତାଇ ।

ବସନ୍ତ ରାଗିଗଲା—କାହିଁକି ଶେଷ ଆଡ଼କୁ ଲୋକଟାକୁ ଏମିତି ମିଠା କଥା କହିଲ ? ସେ କହିଲା—ତାକୁ ନାହୁଡ଼ ଦେଇ ମାରିଥାନ୍ତି । ଏତେ ଖାତିର କୋଉ କଥାକୁ ?

ନିତାଇ ହସି କହିଲା—ବସନ, ନରମଗରମ ପଥ୍ୟମିଦମ୍, ବୁଝିଲ ? ନରମଗରମ—ମିଠା ଆଉ କଡ଼ା—ବୁଝିଲ ନା—ସେଇଥିରେଇ ବାଜିମାତ୍ । ତାପରେ ବୁଝାଇ କହିଲା—ଲୋକଟାର ବୟସ ହେଲାଣି—ପ୍ରାଣରେ ଦୁଃଖ ଦେଲେ କଣ ଭଲ ହୋଇଥାନ୍ତା ? କୁହନ ?

ବସନ୍ତ ଏହାପରେ ଚୁପ୍ ହୋଇ ବସିଗଲା । ନିତାଇ ହସି କହିଲା—ରାଗିଲ ବସନ ?

—ନା ।

—ତେବେ ?

—ତେବେ ଭାବୁଛି, ତମେ ମତେ ସୁଦ୍ଧା ନରମ କରିଦେଲ । ନିତାଇ ହସିଲା !

ବସନ୍ତ କହିଲା—ସେ ଗୁପୁଡ଼ା ମନେ ପଡ଼େ ?

—ସେ ଗୁପୁଡ଼ା ନଖାଇଥିଲେ କୋକିଲ ତମର ଡାକ ଶିଖି ନ ଥାନ୍ତା ବସନ, ସେଇଟା ମୋର ଗୁରୁଙ୍କ ମାଡ଼ ।

ଖେଉଡ଼, ଯାହାକୁ କହନ୍ତି କଞ୍ଚା ଖେଉଡ଼ ଅର୍ଥାତ୍ ନଗ୍ନ ଅଶ୍ଳୀଳତାର ଗୀତ—ତାହା ବି ନିତାଇକୁ ଗାଇବାକୁ ହୁଏ । ଦଶଟା ଗୋଟା ଜାଗାରେ, ଗଳ୍ପର ରାତି ରେ ଏପରି ଗୀତ ନ ଗାଇଲେ ଚଳେନା । ଶ୍ରୋତାମାନେ ଦାବୀ କରନ୍ତି । ଆଉ ଏପରି ଆସର ବି ହୁଏ,

ଯେଉଁଠି ଏହ୍ବ ବୃଢ଼ାପର ପ୍ରତଦ୍ୱନ୍ଦ୍ୱୀମାନେ ଖସିଖାସି ଆସି ସେଇ ପଗ୍ଡ଼ ନର୍ଦ୍ଦମାରେ ଆଗେ ଠିଆହୁଅନ୍ତ । ସଙ୍ଗେ ସଙ୍ଗେ ନଚାଇକୁ ବ ଟାଣିନଅନ୍ତ । ଆସର ଓ ପ୍ରତଦ୍ୱନ୍ଦ୍ୱୀ ଦେଖି ପ୍ରଥମରୁ ତାହା ଜଣାପଡ଼େ । ଗୋଟିଏ ପାଲ ଗାଉଣା ପରେଇ ସେଦନ ତାର ବେହେର୍‌ଟା ହୋଇଯାଏ ଗୁମ୍‌ଗାମ୍ । ଆଖି ଦୁଇଟା ହୋଇଯାଏ ଉଗ୍ର । ପ୍ରଥମରୁ ହିଁ ସେ ଦ୍ରୁବ୍ଧ ହୋଇଯାଏ । ଦଳର ଲୋକମାନେ ବ ବୁଝିପାରନ୍ତ, ଆଜ ଲଗିଲ । ବସନ୍ତ ଓ ପ୍ରୌଢ଼ା ବୁଝିପାରନ୍ତ ସବା ଆଗ ।

ପ୍ରୌଢ଼ା କହେ—ବସନ ! ଇଙ୍ଗିତ କର ସେ ହସେ ।

ବସନ୍ତ ଜବାବ ଦଏ—ହଁ ମାଉସୀ ।

ସେ ଆସରରୁ ବାହାରଯାଏ, ସେଠାରୁ ନଚାଇକୁ ଡାକେ—ଶୁଣ ।

ପ୍ରୌଢ଼ା ତାକୁ ସଚେତନ କରାଇଦଏ—ବାପା ! ଡାକୁଚ ପଗ୍ । ବାପା ମ ।

—ନଚାଇ ଚମକଉଠେ । ତାପରେ ଗମ୍ଭୀର ମୁହଁରେଇ ବାହାରକୁ ଯାଏ, ବସନ୍ତ ପାଖକୁ ଆସି ଠିଆହୋଇ ହାତ ବଢ଼ାଏ । ସେ ଜାଣେ, କୋଉଥିପାଇଁ ବସନ୍ତ ତାକୁ ଡାକଚ୍ଛ । ଗିଲସ ପରପୂର୍ଣ୍ଣ କର ବସନ୍ତ ମଦ ଢାଳ ତାହା ହାତରେ ସମର୍ପିଦଏ । ନିଃଶେଷ କର ଗିଲସ ଫେର୍‌ଇ ଦେଇ ନଚାଇ ହସି ଆସରକୁ ବାହାରେ ଆଉ ଏକ ମୂର୍ତ୍ତି ନେଇକର ।

ତା ପରେ ଗ୍ରଧ ବଢ଼ିବା ସଙ୍ଗେ ସଙ୍ଗେ ଆସର ମାତଯାଉଥାଏ—ଖେଉଡ଼ର ଅଶ୍ଳୀଳତାରେ । ପ୍ରତ ଆସର ପୂର୍ବରୁ ହିଁ ବସନ୍ତ ପରପୂର୍ଣ୍ଣ ଗିଲସରେ ମଦ ତା ହାତକୁ ଦଏ । ସେ ପିଏ । କେବେ କେମିତ ନଜେ ଢାଳ ବସନ୍ତକୁ ପିଆଏ । ବସନ୍ତ ମୁହଁରେ ବ ହସ ଫୁଟିଉଠେ । ସେଦନ ଆସରରେ ଆଉ କଛୁ ବାକ ରହେନା । ନଚାଇର ରକ୍ତ ଭିତରେ, ମସ୍ତିଷ୍କ ଭିତରେ ସେଦନ ମଦର ସ୍ପର୍ଶ ପାଇ ଜାଗିଉଠେ—ତାହାର ଜନ୍ମଲବ୍ଧ ବଂଶଧାର୍‌ର ବଷ; ସମାଜର ଆବର୍ଜନା ସ୍ତୂପ ଭିତରୁ ଯେଉଁ ବଷ ଶୈଶବରେ ତାହା ଭିତରେ ସଞ୍ଚାରତ ହୋଇଥିଲ, ସେ ବଷ ତାହା ଭିତରେ ଜାଗିଉଠେ ରକ୍ତବୀଜ ଭଳ । ଭାଷାରେ—ଭାବରେ—ଭଙ୍ଗିରେ ଅଶ୍ଳୀଳ କଦର୍ଯ୍ୟ କୌଣସି କଥାଇ ତା ମୁହଁରେ ଅଟକେ ନାହିଁ । ଖାଲ ସେତକ ନୁହେ—ସେଦନ ସେ ଏପର ଉଗ୍ର ହୋଇଉଠେ ଯେ, ସାମାନ୍ୟ କାରଣରୁଇ ଯେକୌଣସି ଲୋକ ସାଙ୍ଗରେ ଝଗଡ଼ା ଲଗେଇ ତାକୁ ମାରବାକୁ ତିଆର ହୋଇଯାଏ ।

ପ୍ରୌଢ଼ା ସେଦନ ଦଳର ଲୋକମାନଙ୍କୁ ସାବଧାନ କରଦଏ । କହେ—ହାଣ୍ଡି ଆଜ ମାତଚ୍ଛ ପିଲେ । ତମେମାନେ ଟିକଏ ସମୀହ କର ଆଡ଼ହୋଇ ବସ । ତମେ ସବୁ କେତେ ଦନ କେତେ କଥା କୁହ । ସେ ତ ସବୁ ସହେ ।

ନିର୍ମଳା ହସି କହେ—ମାହାନ୍ତକୁ କୁହ ମାଉସୀ ।

ପ୍ରୌଢ଼ା ହସେ— ସେ ବସନ୍ତ ଆଉକୁ ଶୁଝେଁ । ବସନ୍ତ ବି ହସେ । ଏମିତି ଦିନରେ ବସନ୍ତର ସେଇ ହସ ଅଦ୍ଭୁତ ହସ ।

ବସନ୍ତ ମୁହଁରେ ଏଇ ହସ ଦେଖି ନିର୍ମଳା ଖିଲଖିଲ କରି ହସେ; କହେ—କଲେ, ହସୁଚୁ ନା ଡରିଯାଉଚୁ ମ ବସନ ?

ବସନ୍ତର ମସ୍ତିଷ୍କରେ ବି ମଦନଶା—ଆଖି ତାର ଚୁଲୁଚୁଲୁ କରୁଚି । ସେ ତଥାପି ହସେ; କାରଣ ଏମିତି ଦିନଟି ତାର ବହୁ ପ୍ରତ୍ୟାଶାର ଦିନ । ଏମିତି ଦିନରେଇ ନିତାଇ ବସନ୍ତକୁ ପରିପୂର୍ଣ୍ଣଭାବେ ଧରିଦିଏ । ବସନ୍ତକୁ ଯେନି ସେ ଅଧୀର ହୋଇ-ଉଠେ ।

ସବଳ ବାହୁ-ଦୋଳରେ ବସନ୍ତକୁ ଟେକି ନେଇ ଝୁଲାଏ; କେବେ କେବେ ଶିଶୁପରି ଉପରକୁ ଫୋପାଡ଼ି ଦେଇ ପୁଣି ଧରିନିଏ ! ମୁଣ୍ଡ ଉପରେ ବସନ୍ତକୁ ଟେକି ନେଇ ନିଜେ ନାଚେ । ବସନ୍ତ ନିର୍ଜୀବ ପରି ହୋଇ କ୍ଲାନ୍ତଭାବେ ଅଜାଡ଼ି ହୋଇ ପଡ଼ିଲେ ତେବେ ଯାଇ ତାର ନିଷ୍କୃତି । ତଥାପି ଏପରି ଦିନଟି ବସନ୍ତର ବହୁ ପ୍ରତ୍ୟାଶାର ଦିନ ।

ସହଜ ଶାନ୍ତ ନିତାଇ ଆଜ୍ଞାକାରେ ମଣିଷ—ସେ ଆଦର ଯତ୍ନରେ ବସନ୍ତକୁ ଆକଣ୍ଠ ନିମଜ୍ଜିତ କରି ରଖେ; କିନ୍ତୁ ଠିଆହୋଇଥାଏ ବସନ୍ତର ହାତପାହାନ୍ତରୁ ବହୁଦୂରେ ।

ଯେତେବେଳେ ବସନ୍ତ ନିଜ ଆଡ଼କୁ ତା ଗଳା ଗୁଡ଼େଇ ଧରିଲେ ସେ ତାକୁ ଟାଣି ନିଏନା, ପୁଣି ଠେଲି ଫୋପାଡ଼ି ବି ଦିଏନା । ତାର ମୁଣ୍ଡରେ କିମ୍ବା ପିଠିରେ ହାତ ଦିଏ—ବସନ୍ତ ଯେମିତି କେଉଁ ପିଲଲୋକ; କିନ୍ତୁ ତାକୁ ଉପେକ୍ଷା ବି କରିହୁଏନା—ଏପରି ପରମ ସମାଦର ରହିଚି ତା ଭିତରେ ।

ବସନ୍ତ କେତେ ଆଳକରି ଅଭିମାନ କରେ, କାନ୍ଦେ ।

ନିତାଇ ହସି ତାର ଆଖି ପୋଛିଦିଏ । କହେ—ତମେ କାନ୍ଦିଲେ ମୁଁ ବ୍ୟଥା ପାଏ ବସନ :

ତା ପରେ ଗୁଣୁ-ଗୁଣୁ କରି ଗୀତ ଧରେ—

"ତମ ଆଖିରେ ଦେଖିଲେ ଲୁହ ଅନ୍ଧାର ଦିଶେ ତିନି ଭୁବନ
ତମେ ଯେ ମୋର ଜୀବୁ ଅଧିକ ଜାଣିକରି ତା ଜାଣିନି କଣ ?"

ସଙ୍ଗେ ସଙ୍ଗେ ପଚାରେ—କହ, ସତ ନା ମିଛ ?

ବସନ୍ତ ମନେ ମନେ ଖୁସି ହୁଏ । ମୁହଁରେ ତାର ହସ ଫୁଟେ । କଳେ କଳେ ଆଖି ପୋଛୁ ନେଇ ସେ କହେ—କହିବନ ! ହୁଁ, କୋକିଳ ମୋର ଠିକ୍ ଅଛୁ ! ବଢ଼ିଆ ଗୀତ ହେଇଚ । ଶେଷ କର । ନେଖି ଗଣ । କନ୍ତୁ ଶେଷ ହୁଏନା, ଲେଖି ରଖିବା ବ ହୁଏନା, ଅସମାପ୍ତ ଗୀତଗୁଡ଼ାକ ହଜଯାଏ ।

ଏଇ ସେଦନ ଅରେ— ନତାଇ ଯେଉଁ ଗୀତଟି ଗାଇଲା, ସେ ଗୀତଟି ଶୁଣି ବସନ୍ତର କ ଧଣା ଦ'ଗୁଣ ହୋଇଉଠିଲା ।

ନତାଇର ମନେ ପଡ଼ିଗଲା ବସନ୍ତର ସେଇ ପ୍ରଥମ ରୂପ ! ବସନ୍ତର ଆଖିରେ ସେ ଯେଉଁ ପ୍ରଖର ବୃହ୍ମାଣୀ ଦେଖିଥିଲା ! ଆଜ ସେଇ ବସନ୍ତଇ କାନ୍ଦୁଚ ।

ନତାଇ ହସି ଗୀତ ଧରନେଲା—

"ତମକୁ ପଶୁରେଁ ସେଇ ଅଗିନଟି ଉଭାଇଗଲା କେଣେ ହେ
ନୟନକୋଣେ ଯେଉଁ ଅଗିନ ଜଳୁଥିଲା ଧକଧକ ହେ
ଦରପଣେ ମୁହଁ ଦେଖିଲାବେଳେ ଦେଖି ନାହୁଁ କ ସଖି ହେ
ସେ ଅଗିନ କ ହାସ୍ୟ ପାଣି ହେଲା ମୋତେ ଜାଲ ଗୋଟାପଣେ ହେ
—ତମକୁ ପଶୁରେଁ ।"

ଗୀତ ଶୁଣି ବସନ୍ତର କାନ୍ଦଣା ଦ'ଗୁଣ ହୋଇଉଠିଥିଲା । ଅନେକ ବୁଝେଇ ସୁଝେଇ କହିବାରୁ ଯାଇ ବସନ୍ତ ଶାନ୍ତ ହେଲା ।

ପରଦନ ସକାଳୁ ଉଠିବା ମାତ୍ରେ କନ୍ତୁ କହିଲା—ଗୀତଟି ଶେଷ କର, ମୁଁ ଶିଖିକର ଯାଇ ଉଠିବ । ତାପରେ ପୁଣି କହିଲା—ତମକୁ ସୂପଡ଼ା ମାରଥିଲ, ସେ କଥା ତମେ ଭୁଲନାହିଁ ତା ହେଲେ ?

ନତାଇ କହିଲା—ଠାକୁରଙ୍କ ଗ୍ରଣ ବସନ···

ବାଧାଦେଇ ବସନ୍ତ କହିଲା—ନା ନା । ମୁଁ ଅଥା କରୁଥିଲ ମ । ପୁଣି ହସି କହିଲା—ଆରେ ଏଇ ତ, ତମେ ବ ତ ଅଥା ବୁଝିପାରନା ।

ବସନ୍ତ ବ ତାକୁ ଅନେକ ଶିଖାଇଛୁ । ସେ ତାକୁ ଟପ୍‌ପା ଗୀତ ଶିଖାଇଛୁ । ଟପ୍‌ପା ଗୀତ ନତାଇକୁ ବଡ଼ ଭଲ ଲାଗେ । ଏଇ ତ ଗୀତ । ପଦାବଳୀର 'ପୀରତ' ପ୍ରକାରେ; ଆଉ ଟପପାର ଭଲପାଇବା ଅନ୍ୟ ଜନଷ—ଏକବାର ଖାଣ୍ଟି ଘରୁଆ ପୀରତ । ଟପ୍‌ପା ସଙ୍ଗରେ ନଧୁବାବୁଙ୍କ * ନାଁ ମଧ୍ୟ ସେ ଜାଣିଛୁ । ବସନ୍ତଇ କହିଦେଇଛୁ । ମନେ ମନେ

* ବଖ୍ୟାତ 'ଟପ୍‌ପା' ଗୀତକାର । 'ଟପ୍‌ପା' ଯଦ୍ୟପି ହନ୍ଦୁସ୍ଥାନୀ ଉଚ୍ଚାଙ୍ଗ-ସଙ୍ଗୀତର ଏକ ନମ୍ନସ୍ତ ବଭାଗ, ବଙ୍ଗଳାରେ ଏହା ବଶେଷ ରଚନାଶୈଳୀର ପରମ୍ପରା ରଖିଅଛୁ ।

ସେ ନିଧିବାବୁଙ୍କୁ ହଜାର ସାବାସୀ ଦେଉଛି । ସ୍ୱା ନା ସିନା ଗୀତ !

"ତାକୁ ଭୁଲିବି କେମନ୍ତେ—
ଜୀବନ ସମର୍ପିଛି ଯା'ଙ୍କୁ ନିଜ ପଣ୍ୟଯନ୍ତ୍ରେ ।"

କିମ୍ବା

"ଭଲ ପାଇବ ବୋଲି ଭଲ ପାଇନି—
ମୋର ସ୍ୱଭାବ ଏଇ, ତୁମ ବିନୁ ଆଉ ଜାଣିନି ।"

ଆହା-ହା ! ଏ ଯେମିତି ତୃଷ୍ଣା ମିଶିରପାଣି । ନିତାଇ ମିଶିରପାଣି ସାଙ୍ଗରେ ତୁଳନା ଦିଏ । ନିତାଇର ମନ, ସେ ଏଇମିତି ଗୀତ ବାନ୍ଧିବ—ସେ ମରିଯିବ, ନୂଆ କବିଯାଲ ନୂଆ ଟୋକାଯାକ ତାହାର ଗୀତ ଗାଇବେ; ଆଉ କହିବେ—ବାହାବା ! ବାହାବା ! ବାହାବା ! ବାହାବା !

ଅହରହ ଖାଲି ତା ମନରେ ଗୀତର ପଦ ଗୁଣୁଗୁଣୁ କରେ ।

ପୁଣି ବେଳେବେଳେ ନିତାଇ କେମିତି ଉଦାସ ହୋଇଯାଏ । ମନେ ପଡ଼ିଯାଏ ସେଇ ରେଲଷ୍ଟେସନ—ସେଇ ତାହାକୁ ।

ଗାଁ ରାସ୍ତାରେ ବୁଲିବାବେଳେ ଅପରାହ୍ଣରେ—ଦୂରରେ ରାସ୍ତାବାଙ୍କରେ—ହଠାତ୍ ନଜର ଛଟାରେ ଝକମକ କରିଉଠେ ସ୍ୱର୍ଣ୍ଣବିନ୍ଦୁ ଭଳି ଗୋଟିଏ ବିନ୍ଦୁ । ବଙ୍ଗଳା ଦେଶର ପଲ୍ଲୀଗ୍ରାମରେ—ଏଇ ସମୟଟି ଜଳଖିଆ କରିବା ବେଳ, ଗୋରୁ ଫିଟାଇ-ଦେବାର ବେଳ । ଏଇ ସମୟରେ ହିଁ କୃଷକ-ବଧୂମାନେ ବିଲକୁ ଯାଆନ୍ତି ପୁରୁଷର ଜଳଖିଆ ଧରି, ଗୃହସ୍ଥଘରେ ଦୁଧ ଲଗୁଆ ଦବାର ସମୟ ମଧ୍ୟ ଏହି । ବିଲରାସ୍ତାରେ —ଗାଁରାସ୍ତାରେ—ଢାଳ ମୁଣ୍ଡେଇ ଚାଲନ୍ତି କୃଷକ-ବଧୂଙ୍କର ସୂର୍ଯ୍ୟକିରଣ ପ୍ରତିବିମ୍ବିତ ଝକମକ ବିନ୍ଦୁଟି ଦେଖିଲେଇ ନିତାଇର ମନ ଉଦାସ ହୋଇଉଠେ ।

ତାହାର ମନେ ପଡ଼େ ସେହି କାଶଚଣ୍ଡୀ ଫୁଲ ଅଗରେ ସୁନାର ମୁକୁଟ—ଠାକୁରଝୀ । ସାଙ୍ଗେ ସାଙ୍ଗେ ସବୁ ବିସ୍ୱାଦ ହୋଇଯାଏ । ଏସବୁ ଆଉ କିଛି ଭଲ ଲାଗେନା । ଇଚ୍ଛା ହୁଏ ଏଠାରୁ ସେ ଦଉଡ଼ିବାକୁ ଆରମ୍ଭ କରିବ, ଫେରିଯିବ ତାହାର ସେହି ଗାଆଁକୁ । କୃଷ୍ଣଚୂଡ଼ାମୂଳରେ ବସି ରେଲଲାଇନର ବୁଲଣି ଆଡ଼କୁ ଚାହିଁରହିବ । ସଙ୍ଗେ ସଙ୍ଗେ ମନେପଡ଼ିଯାଏ ତାର ସେଇ ପୁରୁଣା ଗୀତଟି—"ଆଲୋ ମୋ ମନର

ମଣିଷ ଗୋ, ତୋର ଲାଗି ଗୁଡ଼ାକଡ଼ରେ ବାନ୍ଧିଲି ମୁଁ ଘର ।”

—ନାଁ ।

ପରମୁହୂର୍ତ୍ତରେଇ ଦୀର୍ଘନିଃଶ୍ୱାସ ପକାଇ କହେ—ନାଁ । । ଚନ୍ଦ୍ର, ତମେ ଆକାଶରେ ରହିଥାଅ । ଠାକୁରାଣୀ ତମେ ସୁଖରେ ଥାଅ । ସଂସାର ତମର ସୁଖର ହେଉ ।

ଆଉ ଫେରିଯିବାକୁ ତାର ବେଳ ବା କାହିଁ ? ପୁଣି ପାଞ୍ଚଦିନ ଆସର ବସିବ । ଏଥରକ ଆଉ ଝୁମରଦଳର କବିସ୍ୱାଲ ସାଙ୍ଗରେ ଲଢ଼େଇ ନୁହେଁ; ଅସଲ କବିସ୍ୱାଲ ସାଙ୍ଗରେ ଲଢ଼େଇ । ତାରଣ କବିସ୍ୱାଲ, ମହାଦେବ କବିସ୍ୱାଲ, ନୋଟନ କବିସ୍ୱାଲଙ୍କ ପରି ସିଦ୍ଧମନ୍ତ କବିସ୍ୱାଲ ସାଙ୍ଗରେ ଲଢ଼େଇ ହେବ । ଗୋଟାଏ ମେଳାର ଆସରରେ କବିସ୍ୱାଲ ହିସାବରେ ଲଢ଼େଇ ପାଲି କରିବାକୁ ତାକୁଇ ଖାଲି ବାହନା ଦବାକୁ ଆସିଥିଲେ; ଝୁମରଦଳ ସାଙ୍ଗରେ କିଛି ସଂପର୍କଇ ନାହିଁ । ତଥାପି ସେ କହୁଛି—ଏମାନଙ୍କ ଛଡ଼ା ତାର ପାଲିଆ କାମ କେହି କରିପାରିବେନି; ସୁତରାଂ ଏମାନେ ବି ଯିବେ ।

ଏହି ବନ୍ଧନାଟା ପରେ ଦଳ ଯିବ ଧୂଳିଆ ଅଞ୍ଚଳକୁ । ସେ ଚାଲିଗଲେ କାପରି ଚଳିବ ? ଦଳଟା କଣ ହୋଇଯିବନି କି । ସେ ତ ତାହାର ବିଶ୍ୱାସଘାତକତା ହେବ । ତା ଛଡ଼ା—ବସନ୍ତ ଅଛି । ବସନ୍ତକୁ ସେ କଥା ଦେଇଛି—ସେ ଯେତେ ଦିନ ବଞ୍ଚିଥିବ ସେତେ ଦିନ ସେ ତ ତାକୁ ଛାଡ଼ି ଯାଇପାରିବନି । ମନେ ପଡ଼େ ଗଣ୍ଠି ବାନ୍ଧିବା କଥା । କଥା ହୋଇଛି—ଯେ କେହି ଜଣେ ମଲେ ତେବେ ଯାଇ ଏ ଗଣ୍ଠି ଖୋଲିନବ ଆର ଜଣକ । ଛିଃ-ଛିଃ ସେ ଶିହରିଉଠେ । ବସନ୍ତର ମୃତ୍ୟୁକାମନା କରୁଛି ସେ ? ନା-ନା । ଠାକୁରାଣୀ, ତମେ ଦୂରରେଇ ଥାଅ—ସୁଖରେ ଥାଅ—ତମ ସାଙ୍ଗରେ ଦେଖା ହୁଏତ ହବନି । ସେ ବସନ୍ତର କଳା-କୋକିଳ—ଯେଉଁଠି ବସନ୍ତ, ସେଠା ଛଡ଼ା ଅନ୍ୟ କୁଆଡ଼େ ଯାଇପାରିବନି ସେ । ବସନ୍ତ ବଞ୍ଚିଥାଉ—ସେ ସୁସ୍ଥ ହୋଇଉଠୁ—ବସନ୍ତକୁ ଘେନିକରି ଏ ଜୀବନଟା ସେ କଟାଇଦେବ । ଏଇ ତ କେଇଟା ଦିନର ଜୀବନ । କେଇଟା ଦିନ ! ଏହାର ଭିତରେ ବସନ୍ତକୁ ଭଲ ପାଇକରି କଣ ଭଲ ପାଇବାଟା ଶେଷ କରିପାରିବ ସେ ? ଏହା ଉପରେ ପୁଣି ଠାକୁରାଣୀକି ଭଲ ପାଇବ ? ଏମିତି କରି ତ ଦିନେ ଠାକୁରାଣୀକୁ ଛାଡ଼ି—ତାକୁ ଭଲପାଇବାର ଲୀଳାଟା ଅସମାପ୍ତ ରଖି—ଚାଲିଆସି ବସନ୍ତକୁ ପାଇଛି; ତାକୁ ଭଲ ପାଇବାକୁ ଆରମ୍ଭ କରିଛି । ପୁଣି ବସନ୍ତକୁ ଛାଡ଼ିକରି ଠାକୁରାଣୀ ପାଖକୁ ? ନା—ଏଇ ଭଲ ।

ତଥାପି ତାକୁ ଭଲ ଲାଗେନାହିଁ । ସେ ଦଳରୁ ବାହାରି ଯାଇ ବାଲିରେ ବସିଥାଏ । କେବେ ନିଜେ ଚକିତ ହୋଇ ଉଠି ଫେରିଆସେ, କେବେ ବା ଦଳରୁ କେହି ଯାଇ ଡାକିଆଣେ ।

ବସନ୍ତ କହେ—ଦେଖ, ଏଇଥର ତମେ ପାଗଳ ହେଇଯିବ ।
ନିତାଇ ନିବିଷ୍ଟଚିତ୍ତରେ ଇସ୍ତେ—କାହିଁ ? କଣ ହେଲା ?
—ସକାଳପହରୁ ବିଲ ପଡ଼ିଆରେ ବୁଲୁଥିଲ । ଖାଇବା-ପିଇବା ହବନି ?
—ଗୋଟା ଭଲ ପଦ ମନକୁ ଆସିଛି ବସନ ! ଶୁଣ—
—ନା, ଏଇଲା ଖାଅ ଦେଖି ।
—ନା ଆଗ ଶୁଣିନିଅ । କହି ସେ ସାଙ୍ଗେ ସାଙ୍ଗେ ସୁର ଧରି ଆରମ୍ଭ କଲା—

"ଏଇ ଖେଦ ରହିଲା ମୋର ମନେ,
ଭଲପାଇ ମେଣ୍ଟିଲାନି ଆଶା—ଅଣ୍ଟିଲାନି ଏ ଜୀବନେ
ହାୟ, ଜୀବନଟା ଏତେ ଛୋଟ କିପାଁ
ଏଇ ଭୁବନେ ?"

ମୁହୂର୍ତ୍ତିକେ ଗୋଟାଏ କାଣ୍ଡ ଘଟିଗଲା । ବସନ୍ତ ସ୍ଥିରଦୃଷ୍ଟିରେ ତା ମୁହଁକୁ ଅନାଇ ଗୀତ ଶୁଣୁଥିଲା । ଗୀତଟା ଶୁଣି ସେ ଯେମିତି ପଥର ହୋଇଗଲା ।

ନିତାଇ ସଚକିତ ହୋଇ ପଚାରିଲା—ବସନ ! କଣ ହେଲା ବସନ ? ବସନ !

ଧୀରେ ଧୀରେ ଦୁଇ ଆଖିର କୋଣରୁ ଦୁଇଟି ପାଣିଧାର ଗଡ଼ିଆସିଲା ବସନ୍ତର । ସେ କହିଲା—ଏ ଗୀତ ତମେ କାହିଁ ଲେଖିଲ କବିୟାଲ ?

—କାହିଁକି ବସନ ?

କ୍ଳାନ୍ତ ବିଷଣ୍ଣ କଣ୍ଠରେ ସେ କହିଲା—ମୁଁ ତ ଏଇଲା ଭଲ ଅଛି କବିୟାଲ ! ତେବେ ତମେ କାହିଁ ଲେଖିଲ, କାହିଁ ତମର ମନେହେଲା—ଜୀବନ ଏତେ ଛୋଟ କାହିଁକି ?

ଅକାରଣରେ ନିତାଇର ଛାତିଟା ଧଡ଼ାସ୍‌କରିଉଠିଲା ।

## ଅଠର

ସତରେ ବସନ୍ତ ଏଇଲା ଭଲ ଅଛି । ବେଶ୍ ଭଲ ଅଛି । ଦେହପ୍ରତି ଯତ୍ନ ତାର ଏଇଲା ଅପରସୀମ । ମଦ ଏବେ ସେ ଖୁବ୍ କମତି ଖାଏ । ଦୁବଘାସ ରସ ଆଗେ ଠିକ୍ ନିୟମିତ ଖିଆ ହୋଇ ପାରୁନଥିଲା । ଏବେ ନିୟମିତ ସକାଳୁ ଉଠି ଦୁବଘାସ ରସ

ପିଇ ତେବେ ଯାଇ ଅନ୍ୟ କାମରେ ସେ ହାତଦିଏ । ସ୍ୱାସ୍ଥ୍ୟ ବି ଏଇଲ ତାର ଭଲ ହୋଇଛି । ଶୀର୍ଣ୍ଣ ରୁକ୍ଷ ମୁହଁଟି ଅନେକଟା ଉଦ୍ଧଳଡାଉଲ ହୋଇ ପୂରିଉଠିଲଣି, ରୁକ୍ଷ ପାଣ୍ଡୁ ଗୌରବର୍ଣ୍ଣରେ ଟିକିଏ ଶ୍ୟାମଲ ଆଭାସ ଦେଖାଦେଲଣି । କଥାରେ ଧାର ରହିଛି; କିନ୍ତୁ ଜ୍ୱାଳା ନାହିଁ । ଏବେ ଆଉ ସେ ସେମିତି ତୀକ୍ଷ୍ଣ କଣ୍ଠରେ ଖିଲଖିଲ କରି ହସେନା । ମୁରୁକି ମୃଦୁ ମୃଦୁ ହସେ ।

ଲଳିତା, ନିର୍ମଳା ଆଉ ଥଟ୍ଟାରେ ବାକି ରଖନ୍ତି ନାହିଁ କିଛି । ବସନ୍ତ ଯେତେବେଳେ ନିତାଇର କୋଉ କାମ କରେ, ସେତେବେଳେ ଲଳିତା ନିର୍ମଳାକୁ ଅଥବା ନିର୍ମଳା ଲଳିତାକୁ ଗୋଟିଏ କଥା କହନ୍ତି—ହାଯ୍ସ—ସଖି, ଅବଶେଷେ ।

ଅର୍ଥାତ୍ ଯେଉଁ ପୀରତିକୁ ଆଜି ଯାଏ ବସନ୍ତ ମୁହଁ ବଙ୍କେଇ ଘୃଣା କରୁଥିଲା, ସେହି ପୀରତିରେ ହିଁ ସେ ପଡ଼ିଲା ଅବଶେଷେ ।

ବସନ୍ତ ରାଗେନା, ମୁରୁକି ହସି ଖାଲି କହେ—ମରୁନ ।

ପ୍ରୌଢ଼ା ବି ହସେ । କେବେ କେମିତି ସେ ବି ଦୁ'ଗୋଟା ରହସ୍ୟ କରିଥାଏ ।

—ବସନ, ଫୁଲ ତେବେ ଫୁଟିଲା । କୋକିଲ ନାଁ ବଦଳେଇ ଓସ୍ତାଦ୍‌ର ନାଁ ଦିଅ ବସନ-ଭଅଁର । କୋକିଲ ତ କଳା, ଭଅଁର ବି କଳା ।

ବସନ୍ତ ହସେ ।

ଖାଲି ଗୋଟିଏ ସମୟରେ ବସନ୍ତ—ପୁରୁଣା ବସନ୍ତ । ସେଇଟା ସନ୍ଧ୍ୟା ପରେ । ସନ୍ଧ୍ୟା ପରଠାରୁଇ ସେ ଉଗ୍ର ହୋଇଉଠେ । ଏଇଟା ତାଙ୍କର ଦେହ-ବେପାରର ସମୟ । ସନ୍ଧ୍ୟାର ଅନ୍ଧାର ହେଲାମାତ୍ରେ କ୍ରେତାଙ୍କର ଯା-ଆସ ଆରମ୍ଭ ହୁଏ । ଝିଅଯାକ ଗାଧେଇ-ପାଧେଇ ଭେସପଟା ପିନ୍ଧି ବସିଥାନ୍ତି । ତିନିଜଣଯାକ ସେତେବେଳେ ବସନ୍ତି ଗୋଟିଏ ଜାଗାରେ; ଅଥବା ନିଜ ନିଜ ଘର ସାମନାରେ ପିଢ଼ା ପକେଇ ବସନ୍ତି—ମୋଟ କଥା, ଏଇ ସମୟର ଆଳାପ ରଙ୍ଗରସ ସବୁ କେବଳ ଝିଅମାନଙ୍କର ପରସ୍ପର ମଧ୍ୟରେ ଆବଦ୍ଧ । ପୁରୁଷଙ୍କ ସଙ୍ଗେ ଭାବଟା ଯେମିତି ଆଡ଼-ଆଡ଼ । ଝିଅମାନେ ଇଙ୍ଗିତମୟ ଭାଷାରେ ଅଶ୍ଳୀଳ ଭାବର ରଙ୍ଗରହସ୍ୟ କରନ୍ତି ନିଜ ଭିତରେ ।

ନିର୍ମଳା ମୃଦୁସ୍ୱରରେ ଡାକେ—ନି-ବ, ନି-ସ, ନି-ନ୍ତ; ଅର୍ଥାତ୍ 'ନି' ଅକ୍ଷରଟି ଯୋଗ କରି ସେ ଡାକେ—ବସନ୍ତ ।

ବସନ୍ତ ଉତ୍ତର ଦିଏ—ନି-କି ନି-ଣ ? ମାନେ—କଣ ?

ସେଇ 'ନି' ଅକ୍ଷରଟା ଯୋଗ କରି ତା ପରେ ଚାଲେ ଅଶ୍ଳୀଳ ଥଟ୍ଟାତାମସା; କୌଣସି ଦିନର ବ୍ୟଭିଚାର-ବିଳାସ ନେଇ ଗଳ୍ପ । ସେମାନେ ସମସ୍ତେ ହସି ହସି ଗଡ଼ିଯାନ୍ତି । ଯେପରି ଆସନ୍ନ ଦେହ-ବ୍ୟବସାୟର ଆସର ସକାଶେ ମନଟାକୁ ସେମାନେ ଶାଣେଇ

ନିଅନ୍ତି । ଏଇ କାମରୁ ସେମାନଙ୍କର ନିଷ୍କୃତି ନାହିଁ । ଏକେତ ମାଉସୀ ଗୁଡ଼ିବ ନାହିଁ, ତା ଛଡ଼ା ଚିରଜୀବନର ଅଭ୍ୟାସ—ତାହା ବି ଛୁଟି ହୁଏନା । ଉପାୟ ନାହିଁ ।

ପୁରୁଷମାନେ ବି ଏହି ସମୟରେ ଅଲଗା ଅଲଗା ଆସନ ପକାନ୍ତି । ସେମାନଙ୍କର ବି ଯେପରି ସାମୟିକଭାବରେ ଝିଅଗୁଡ଼ାକଙ୍କ ସଙ୍ଗରେ ସମ୍ବନ୍ଧ ଛିଣ୍ଡିଯାଏ । ଏକାନ୍ତ ନିର୍ଲିପ୍ତ ଭଳି ସେମାନେ ବସିଥାଆନ୍ତି ।

ନିତାଇ ଗୋଟାଏ ନିରୋଳା ଜାଗା ବାଛି ବସେ, ନିଜର ଲଣ୍ଠନଟି ଜାଳି ବସ୍ତାନି ଖୋଲେ, ଲେଖେ, ପଢ଼େ । ବସନ୍ତ ଘରେ ଆଗନ୍ତୁକଙ୍କର ମତ୍ତକଣ୍ଠର କୁଆର ଉଠେ— ନିତାଇ ରାମାୟଣ ପଢ଼େ । କୃଷ୍ଣଲୀଳା ପଢ଼େ । ଗୀତ ବି ରଚନା କରେ—

"ଆଉ କେତେ କାଳ ମହାକାଳ ଫଳେ ଭୁଲିବୁ ବାଉଲା ମନ ?"

ଅଥବା

"ମୋର କରମ ଫଳ
ଦୟାକରି ହରି ହେ ହରି—ଜନମ କରି ସଫଳ ।"

କେବେ କେବେ ସେ ବସି ଭାବେ । ଭାବେ, ବଡ଼ ବଡ଼ କବିୟାଲଙ୍କ କଥା— ଯେଉଁମାନେ ସତସତିକା କବିୟାଲ; ଝୁମୁର ଆସରରେ ଯେଉଁମାନେ ଗୀତ ଗାଆନ୍ତିନି । ସେପରି ବନ୍ଧନା ଏବେ ତାହା ଭାଗ୍ୟରେ ବି ଦିଟା-ଗୋଟା କରି ଜୁଟିବାକୁ ଆରମ୍ଭ କରିଛି । ଏଥରକ ତାର ଏ ଦଳରୁ ବାହାରିଯିବା ଉଚିତ । ଗୋଟିଏ ବାଧା ବସନ୍ତ । ବସନ୍ତ ଯେ ରାଜି ହୁଏନା । ସେ ସବୁକିଛି ବୁଝିପାରେ । ତଥାପି ସେ ଏ ଦଳ ଗୁଡ଼ି ଯାଇପାରେନା । ଆଶ୍ଚର୍ଯ୍ୟ ! ସେ ମନକୁ ମନ ହିଁ ହିକିଏ ହସେ ।

—ଇଏ କି ଢଙ୍ଗ ମ ? ହସୁଚ ଯେ ମନକୁ ମନ !

ନିତାଇ ଚାହିଁ ଦେଖେ—ବେହେଲାଦାର ତା ଆଡ଼କୁ ଚାହିଁ ପଚାରୁଛି । ସେ ବସିଅଛି ଅଳ୍ପ ଦୂରରେ । ବେହେଲାଦାର ବସି ନିଜର ବେହେଲା ଖଣ୍ଡିକ ନେଇ ବ୍ୟସ୍ତ ଅଛି : ସୁର ବାନ୍ଧୁଛି । ସେ ସୁର ବାନ୍ଧିବାଟା ଯେମିତି ତାର ଶେଷ ହବାର ନୁହେଁ । ସୁର ବାନ୍ଧି ଥରେ କମାଣି ଟାଣିକରି ପୁଣି ତାରବନ୍ଧା କାନଟାକୁ ମୋଡ଼ିଦିଏ । ତାର କଟିଯାଏ । ବେହେଲାଦାର ନୂଆ ତାର ପିନ୍ଧାଇବସେ । ଛଡ଼ିରେ ରଜନ ଘଷେ, ବେହେଲା ଖଣ୍ଡିକ ଝାଡ଼େ । ବେଳେ ବେଳେ ଶିଶିରୁ ବାର୍ଣ୍ଣିସ ନେଇ ଲଗାଏ ।

ନିର୍ମଳା ଘରେ କଳରବ ଉଠେ ।

ବେହେଲାଦାର ବେହେଲାରେ କାଠି ଚଳାଏ । ରାତି ହିକିଏ ଗମ୍ଭୀର ନହେଲେ

ବାଜଣାଟା ତାର ଭଲ ଜମେନା । ବାରଟା ପାରହେଲେଇ ଯେମିତ ତାର ହାତ ଖୋଲଯାଏ । ଗୋଟାଏ ଅଦ୍ଭୁତ ବାଜଣା ସେ ବଜାଏ । ଲମ୍ବା ଟାଣିକର ସୁରଟିଏ । ସୁରଟା ଥରଥର ବାଜଯାଉଥାଏ । ମଝିରେ ମଝିରେ ଏପର ବିଷମ କୋମଳ ପାହାଚରେ ମୋଟା ସୁର ଆଡ଼କୁ ଓହ୍ଲାଇ ଆସେ ଯେ, ଦେହଟା ସତରେ ଝିମ୍‌ଝିମ୍ କରଉଠେ । ମନେହୁଏ ଯେମିତ ସବୁକଛି ନଷ୍ଟପ୍ରାୟ ହୋଇଯାଇଛି, ଶ୍ମଶାନ ଯେପର ହେମାଳ ହୋଇଗଲା । ଯେ ଶୁଣିବ ତାର ନଜ ଦେହର ହାତଗୋଡ଼ର ପ୍ରାନ୍ତଭାଗ ବି ଯେପର ଅଣ୍ଡା ହୋଇଯାଇଛି ବୋଲ ମନେହୁଏ । ମନର ଚନ୍ତା ଭାବନା ବି ଯେପର ବଧିର ହୋଇଯାଏ ।

ପାଲଆଟା ବାଜଣାଦାର ସାଙ୍ଗରେ ଯୁକ୍ତତର୍କ କରେ ।

ବାଜଣାଦାରଟା ଉପରେ କୌଣସି କଥାର ଗ୍ରୁଇ ପଡ଼େନା । ତାହାର କେହି ଭଲ ପାଇବାର ମଣିଷ ନାହିଁ । ସେ ହା-ହା କର ହସେ—ବାଜଣା ବଜାଏ । ପାଲଆଟାର ଯୁକ୍ତର ଜବାବ ଦଏ । ମଝିରେ ମଝିରେ ଝିଅଙ୍କ ଘରକୁ ଯାଇ ମଦ ପିଇ ଆସେ । ବେହେଲାଦାର ଲାଗି ମଦ ଘେନଆସେ । ତାପରେ ନଦ ମାଡ଼ଲେଇ ବିଛଣା ପାଖ ଶୋଇପଡ଼େ ।

ପାଲଅଟି ଲଳତା ଘରକୁ ଯାଇ ଲଳତା ସଙ୍ଗେ ଝଗଡ଼ା ଲଗାଇବାକୁ ଚେଷ୍ଟା କରେ ।

ମଝିଁରେ ପର ଲୋକଟା ଧୂନ ଅଗରେ ବସିଥାଏ । ପ୍ରୌଢ଼ା ଘର ଉପରେ ସତର୍କ ଦୃଷ୍ଟି ରଖି ବସି ଗୁଆ କାଟେ । ଲୋକବାକ ଆସିଲେ ଝିଅମାନଙ୍କୁ ଡାକ ଦେଖାଏ, ମାଲ ମୁଲେଇ କରେ, ଟଙ୍କା ଆଦାୟ କରେ । ଗୋପନରେ ମଦ ବକି କରେ । ପ୍ରୌଢ଼ାର ଏହି ସମୟର ମୂର୍ତ୍ତିଟା ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଏବଂ ବଶିଷ୍ଟ । ଗମ୍ଭୀର, କଥା ଖୁବ୍ କମ୍ କହେ, ଆଖିର ଭ୍ରୂ ଦୁଇଟି କୁଞ୍ଚିତ ହୋଇ ଭ୍ରୂକୁଟି ଉଦ୍ୟତ କର ରଖିଥାଏ; ଦଳର ପ୍ରତ୍ୟେକ ଲୋକ ସନ୍ତ୍ରସ୍ତ ହୋଇଥାଏ । ବସନ୍ତ ଉଗ୍ର ହୋଇ ଦେହର ଖରଦ୍ଦାର ସାଙ୍ଗରେ ଝଗଡ଼ା କରେ । ପ୍ରୌଢ଼ା ମାଉସୀ ଆସି ଠିଆହୁଏ, ବସନ୍ତକୁ ସେ ପ୍ରାୟ ଧମକ ଦଏ । —ଏଇ ବସନ । କଥା କଣ ? ଝଗଡ଼ା କରୁଚୁ କାହିଁକ ?

—ବେଶ୍ କଲ ! ମଦ ଖାଇବାକୁ କହୁଚ, ମୁଁ ମଦ ଖାଇବନ ।

—ଟିକେ ଅଧେ ଖାଇବାକୁ ପଡ଼ିବ । ତା ନକଲେ ଚଳବ ? ଲୋକ ଆସିବେ କ ?

—ନ ଆସିଲେ ନ ଆସିବେ । ମୋ ଘରକୁ ଲୋକ ଆସିବା ଦରକାର ନାହିଁ ।

—ଦରକାର ନାହିଁ ?

—ନା !

—ହଉ, କାଲି ସକାଳୁ ତୁ ଘରକୁ ଚାଲି ଯା । ମୋର ଏଠି ଜାଗା ହବନି ।

ଖାଲି ବସନ୍ତ ନୁହେଁ, ନିର୍ମଳା ଲଳିତା ବି ବେଳେ ବେଳେ କ୍ଳାନ୍ତ ହୋଇ ଧଇଁସଇଁ ହୋଇଯାନ୍ତି । ସେମାନେ ବି କହନ୍ତି—ଦରକାର ନାହିଁ—ଆଉ ଆମଦେଇ ହବ ନାହିଁ । ମାଉସୀର କିନ୍ତୁ କ୍ଳାନ୍ତି ନାହିଁ, ସେ ଅଟଳ । ତାର ସେଇ ଗୋଟିଏ ଜବାବ—ତା ହେଲେ ଯିଅ, ତମମାନଙ୍କୁ ନେଇ ମୋର ଦଳ ଚାଲିବନି । ତମେ ସବୁ ରାସ୍ତା ଦେଖ । ଝୁମଉଆଦଳର ଲକ୍ଷ୍ମୀ ସେଇଠି । ଏ ବାଟ ଛାଡ଼ିଲେ ଚାଲିବନି ।

ସମସ୍ତଙ୍କୁ ଚୁପ୍ ହେବାକୁ ପଡ଼େ । ବସନ୍ତକୁ ବି ପଡ଼େ । ପୁଣି ସେ ବି ଆଶ୍ଚର୍ଯ୍ୟ କଥା ଯେ ଯେଉଁ ବ୍ୟବସାୟଟା ସେମାନେ ଛାଡ଼ିଦବାକୁ ଚାହାନ୍ତି, ଯେଉଁ ଜୀବନ ବିଷ ପରି ଲାଗେ, ସେହି ବ୍ୟବସାୟ ଓ ସେହି ଜୀବନରେ ଭଟ୍ଟା ପଡ଼ିଆସିଲେ, ମାନ୍ଦା ପଡ଼ିଗଲେ ସେହିମାନଙ୍କୁ ଆଉ ଭଲ ଲାଗେନାହିଁ, ସେହିମାନେଇ ଚିନ୍ତିତ ହୋଇପଡ଼ନ୍ତି । ନିଜ ନିଜ ଭିତରେ ହିଁ ଆଲୋଚନା ହୁଏ ।

—ଦୂର୍, ଦୂର୍, ରୋଜଗାର ନାହିଁ, ପତର ନାହିଁ, ଲୋକ ନାହିଁ, ବାଜା ନାହିଁ—କିଛି ନାହିଁ । ସବୁ ଖାଁ-ଖାଁ ।

ସଙ୍ଗେ ସଙ୍ଗେ ଆଉ ଜଣେ କହେ—ଠିକ୍ କହୁଚୁ, ଭଲ ଲାଗୁନି, ମା' ରାଣ ଅଛି ।

—ଲଳିତେ !

—କଣ ?

—ଏ କେମିତିକା ଜାଗା କହ ତ ?

—କିଜାଣି ଭଉଣୀ ! ପାଞ୍ଚଟା ଟଙ୍କା ଥୋଇଥିଲି—ନାକଛବି ଗଢ଼େଇବି ବୋଲି । ଚାରିଟଙ୍କା ସେଥିରୁ ଖରଚ ହେଇଗଲା । ବସନ !

ବସନ ଚୁପ୍ କରି ରହିଥାଏ । ତାହାର ଦେହମନ ଦୁଇଟିଯାକ କ୍ଳାନ୍ତ । ନିର୍ମଳା ଲଳିତା ପୁଣି ଡାକନ୍ତି ।—କିଲୋ, ଚୁପ୍ ହୋଇ ବସିଚୁ ଯେ । ତା ପରେ କହନ୍ତି—ତୋର ତ ତେର୍ ଟଙ୍କା ।

କେଉଁ ଦିନ ଏହାର ଜବାବରେ ବସନ୍ତ ଫଁସ୍‌କରି ଜଳିଉଠେ । ଝଗଡ଼ା ଲାଗିଯାଏ । କେଉଁ ଦିନ ବିଷଣ୍ଣ-ହସ ହସି ଉଠିଯାଏ । ଝିଅଟାର ମତିଗତି କେତେବେଳେ ଯେ ଅସ୍ଥିର, କେତେବେଳେ ଯେ ଶାନ୍ତ, ବୁଝିବା କଷ୍ଟ । ଝଗଡ଼ା ଲାଗିଲେ ନିତାଇକୁ ଆସି ସମ୍ଭାଳିବାକୁ ହୁଏ ! ବସନ୍ତକୁ ଘରକୁ ନେଇ ଯାଇ ବୁଝାଇ ଶାନ୍ତ କରେ । ଶାନ୍ତ ହେଲେ ପ୍ରଶ୍ନ କରେ—କାହିଁକି ଏମିତି କର ବସନ ?

ବସନ୍ତ ବିଛଣାରେ ମୁହଁ ଗୁଞ୍ଜି ଶୋଇପଡ଼ି କହେ—କେଜାଣି ।

ନିତାଇ ତାହା ମୁଣ୍ଡରେ ହାତ ବୁଲାଇଦିଏ ।

ଖୁବ୍ ବେଶୀ ମାନ୍ଦା ପଡ଼ିଗଲେ ମାଉସୀ ନୂଆ ରାସ୍ତା ଧରେ । ଝିଅମାନଙ୍କୁ ଡାକି କହେ—ଆଜି ଭେସପଟା ପିନ୍ଧି ଦେଖି ଭଲକରି । ଗାଆଁ ବଜାରକୁ ବୁଲିଯିବା ।

ଉଦ୍ଦେଶ୍ୟ ଝିଅମାନଙ୍କୁ ବଜାରର ରାସ୍ତାରେ ବୁଲାଇ ଦେଖାଇ ଆଣିବ ।

ଝିଅମାନେ ଉତ୍ସାହିତ ହୋଇ ସାବୁନ୍ ନେଇ ପୋଖରୀକୂଳକୁ ଯାଆନ୍ତି । ସ୍ନୋ, ସିନ୍ଦୂର, ପାଉଡ଼ର, ଟିକିଲି ଦେଇ ନିଜକୁ ସାଜିବସନ୍ତି । ହଙ୍ଗାମା ହୁଏ ବସନ୍ତକୁ ନେଇ । ସେ କେବେ କେବେ ଯିବାକୁ ବସିବ—କେବେ ଚାହିଁବ ନାହିଁ । ମାଉସୀ ଏହାର ଔଷଧ ଜାଣେ । ସେ ଆଗରୁ ବସନ୍ତକୁ କିଛିଟା ମଦ ଖୁଆଇ ରଖେ । ଅବଶ୍ୟ ମଦ ଖୁଆଇବାକୁ କେତେ ଛଳନା କରିବାକୁ ହୁଏ, ଭୁଲାଇବାକୁ ହୁଏ ।

ଧୋବଧାଉଳିଆ ଲୁଗା ପିନ୍ଧି ପ୍ରୌଢ଼ା ଗାଲରେ ଗାଲେ ପାନ ପୂରେଇ ଝିଅଙ୍କ ସାଙ୍ଗରେ ବାହାରେ ।

ଝିଅଙ୍କର ଏଇ ଦେହ-ବ୍ୟବସାୟର ଉପାର୍ଜନରେ ବି ପ୍ରୌଢ଼ାର ଭାଗ ରହିଛି । ଏହି ଉପାର୍ଜନ ତିନିଭାଗ ହବ । ଦୁଇଭାଗ ପାଇବ ଉପାର୍ଜନକାରିଣୀ ଝିଅଟି, ଭାଗେ ପାଇବ ଏଇ ପ୍ରୌଢ଼ା—ଏଇ ନିୟମ । ଗୀତର ଆସରର ଉପାର୍ଜନ ବି ଏହିପରି ଭାଗ କରି ବଣ୍ଟା-ହୁଏ । ଆସରର ଉପାର୍ଜନ ହୁଏ ଆଠ ଭାଗ—ଆଠ ଭାଗରୁ ଭାଗେ ହିସାବରେ ଝିଅ ତିନିଜଣ ପାଇବେ ତିନିଭାଗ—ଭାଗେ ପ୍ରୌଢ଼ାର—ଦୁଇଭାଗ କବିୟାଳର, ଭାଗେ ବେହେଲାଦାରର । ଭାଗେ ଓ ଅର୍ଦ୍ଧଭାଗ ହିସାବରେ ପାଆନ୍ତି ପାଳିଆ ଓ ବାଜଣାଦାର । ଉପାର୍ଜନ ଯେଉଁ ଲୋକଠାରୁ ହବ ନାହିଁ, ପ୍ରୌଢ଼ା ତାକୁ ଦଳରେ ରଖିବ ନାହିଁ । ତୀକ୍ଷ୍ଣ ଦୃଷ୍ଟିରେ ସେ ଉପାର୍ଜନର ରାସ୍ତାଗୁଡ଼ିକ ଆଡ଼କୁ ଚାହିଁ ବସିଥାଏ । କୌଣସି ଦିଗରୁ କ୍ଷୀଣତମ ସୁରାଖ ପାଇଲେଇ ସେ ମିଷ୍ଟମୁଖରେ ସରସ ବାକ୍ୟରେ ସାଦର ଆହ୍ୱାନ ଜଣାଇ କହେ—କିଏ ଗୋ ବାପା ! ଆସ, ଆଗେଇ ଆସ । ନାଁ କଣ ବାପଧନ ? ଡର କଣ ? ଆସ ଆସ । ଆଗନ୍ତୁକ ଆଗେଇ ଆସିଲେ ସେ ଗୋଟାଏ ମୋଡ଼ା ପକେଇ ବସିବାକୁ ଦିଏ, ପାନ ଦେଇ ସମ୍ମାନ କରି କହେ—ପାନ ପାଇଁ ଦିଅଣା ପଇସା ଦିଅ ବାପା ! ଦବାକୁ ହୁଏ ।

ପଇସା କେତେଟା ଗଣ୍ଠିରେ ବାନ୍ଧିବାପରେ ଝିଅଙ୍କୁ ଡାକେ—ଆଲୋ ବସନ, ନିର୍ମଳା ଇଆଡ଼େ ଆସ । ଲଳିତେ ଲୋ, କେଇଭରି ସୁନା କାନରେ ପିନ୍ଧୁଚୁ ଲୋ ?

ଏମିତି—ଦିନେ ।

ମାଉସୀ ତାକୁ ଡାକିଲା—ବସନ୍ତ ! ଶୁଣ୍, ଜଣେ ଲୋକ ତତେ ଡାକୁଛି ଲୋ, କହୁଛି

ଉଠେ ଚହଲି ଚ ସେ ।

ବସନ୍ତ ସେଦିନ କହିଲା—ମୋର ଦେହ କଣ ହଉଚି ମାଉସୀ । ଦେହ ଭଲ ନାହିଁ ।

—ଦେହ ପୁଣି କଣ ହେଲା ତୋର ? କିଛି ହେଇନି । ଶୁଣ ଇଆଡ଼େ । ଟିକିଏ ମଦ ପିଇଲେ ଫୁର୍ତ୍ତି ହେଇଯିବ ଦେହ । ଶୁଣ୍ ଇଆଡ଼େ ଆ ।

ଆହ୍ୱାନ—ଆଦେଶ । ଉପେକ୍ଷା କରିବାର ଉପାୟ ନାହିଁ । ବସନ୍ତ ପଦାକୁ ଆସିଲା । ପରିଚ୍ଛନ୍ନ ବେଶଭୂଷା, ଦେହରେ ସୁଗନ୍ଧ ଲଗାଇ ଗୋଟିଏ ସ୍ୱାଠମତ ଭଦ୍ରଲୋକ ଠିଆ ହୋଇଥିଲା । ମାଉସୀ କହିଲା—ଦେଖି ତୋ ଦେହ, ଦେଖି !···କାହିଁ, ଦେହ ତ ବେଶ୍— ମୋ ଦେହ ତୋ ଠୁହିଁ ଗରମ । ଆଗୋ ବାପଧନ, ଝିଅର ମୋର ଦେହ ଖରାପ, ଟିକିଏ ମଦ ପିଆଇବାକୁ ହବ । ସହସା କଣ୍ଠସ୍ୱର ମୃଦୁ କରି ହସିକରି କହିଲା—ମୋ ପାଖରେଇ ରହିଛି ।

ରୂପଜୀବିନୀ ନାରୀର ଆଜୀବନ ବନ୍ଧୁ ଯୌବନର ନିଶା ! ମୂଲ୍ୟବାନ୍ ବେଶଭୂଷା, ସୁଶ୍ରୀ ଲୋକଟିକୁ ଦେଖି ବସନ୍ତ ମନରେ ଅଭ୍ୟାସର ନିଶା ଚେଇଁଉଠିଲା । କଟାକ୍ଷ ହାଣି ମୁରୁକି ହସି ବସନ୍ତ ତାହାକୁ ହାତଧରି ଘରକୁ ନେଇଗଲା ।

ମାଉସୀ ବି ହସିଲା ! ସେ ତ ଜାଣେ, ଏ ବିଷ ଥରେ ଢୁକିଲେ—ପ୍ରେମର ଅମୃତ-ସମୁଦ୍ରରେ ବି ତାହାକୁ ଶୋଧନ କରିହୁଏନା । ବସନ୍ତର ଦେହ ଭଲ ହୋଇଯାଇଛି ।

ଲୋକଟା ଚାଲିଯିବାପରେ ବସନ୍ତର ବି ନିଶା ଛୁଟିଯାଏ । ମଦନିଶାର ପ୍ରତିକ୍ରିୟା ସଙ୍ଗେ ସଙ୍ଗେ ଆଉ ଗୋଟାଏ ପ୍ରତିକ୍ରିୟା ଜାଗିଉଠେ । ନିଶାର ବାହାନା କରି ସେ ପଡ଼ିରହେ, କାନ୍ଦେ । ଏପରି କ୍ଷେତ୍ରରେ ସେ କଳ୍ପନା କରେ, କାଲି ସେ ନଟାଇକୁ ନେଇ ଏଠାରୁ ଚାଲିଯିବ । ଆଜି ବି କାଲି ! କିନ୍ତୁ ଯିବା ସହଜ କଥା ନୁହେ । କୁଆଡ଼େ ଯିବ ? ସେଇ ମାଉସୀ—ସେଇ ନିର୍ମଳା—ଏଇ ଲାଲଟା ଛଡ଼ା କିଏ କୁଆଡ଼େ ନିଜର ଲୋକ ଅଛି ତାର ? ଏଇ ଦୁନିଆଯାକର ରାସ୍ତା ଛଡ଼ା ଆଉ ଘର କୁଆଡ଼େ ତାଙ୍କର ?

ସାତ ଦିନ ଖଣ୍ଡେ ପରେ ।

ବସନ୍ତ ଥରିଥରି ଆସି ମାଉସୀକି କହିଲା—ମାଉସୀ ।

ବସନ୍ତର କଣ୍ଠସ୍ୱର ଶୁଣି ମାଉସୀ ଚମକି ଉଠିଲା । ଏ ଯେ ଦୀର୍ଘକାଳ ପରେ ପୁରୁଣା ବସନ୍ତର କଣ୍ଠସ୍ୱର !—କଣ, ବସନ ?

କାନ ପାଖକୁ ମୁହଁ ନେଇ ଫୁସ୍‌ଫୁସ୍ କରି—ସେଇ ପୁରୁଣା ବସନ୍ତ କହିଲା—ଔଷଧ ମାଉସୀ ! ମୋର ବେମାରି ହେଇଚି ।

—ବେମାରି । କାଶ ?

—ନା-ନା-ନା । ବସନ୍ତ ଆଖିରେ ଜ୍ୱରର ଦାଢ଼ ଝେଲୁଥାଏ—ସେ ଦୃଷ୍ଟି ଆଡ଼କୁ ଚାହିଁଦେଇ ପ୍ରୌଢ଼ା ନିଜର ଭୁଲ୍ ବୁଝିପାରିଲା । ସଙ୍ଗେ ସଙ୍ଗେ ହସି ଆଶ୍ୱାସ ଦେଇ ମାଉସୀ କହିଲା—ସେଥିପାଇଁ ଡର କଣ ? ଆଜି ଉପାସ କରିଦେବ । ତିନି ଦିନରେ ଭଲ ହୋଇଯିବୁ । ମାଛ ଖାଇବୁନି ।

ଏମାନଙ୍କ ଜୀବନର ଏଇ ଗୋଟାଏ ଅଧ୍ୟାୟ । ଏ ଅଧ୍ୟାୟ ଅନିବାର୍ଯ୍ୟ—ଆସିବଇ । ମଣିଷର ଜୀବନରେ କେବେ କେମିତି କରି ଏ ବ୍ୟାଧିର ଉଦ୍‌ଭବ ହୋଇଥିଲା, ସେ ତତ୍ତ୍ୱ-ବିଶେଷଜ୍ଞମାନଙ୍କର ଗବେଷଣାର ବିଷୟ । ଏମାନଙ୍କ ଜୀବନରେ କିନ୍ତୁ ଏ ବ୍ୟାଧି ଅନିବାର୍ଯ୍ୟ ! ଖାଲି ଅନିବାର୍ଯ୍ୟ ନୁହେ—ଏହି ବ୍ୟାଧିରେ ଜର୍ଜରିତ ହୋଇ କରି ହିଁ ପୂରା ଜୀବନଟା କଟାଇବାକୁ ହୁଏ ଯେଉଁମାନଙ୍କୁ । ଏଇ ଜର୍ଜରତାର ବିଷ ହିଁ ମଣିଷ ଭିତରେ ବୁଣି ବୁଣି ସେମାନେ ବାଟ ଚାଲନ୍ତି । ଡାକ୍ତର ଦେଖାନ୍ତିନି, କବିରାଜ ବି ନୁହେଁ । ନିଜେ ନିଜେ ହିଁ ଚିକିତ୍ସା କରନ୍ତି । ଧରାବନ୍ଧା ବାଳଦିଆ ଚିକିତ୍ସା—ମାନେ ବ୍ୟାଧିଟା ବାହ୍ୟିକ ଅନ୍ତର୍ହିତ ହୁଏ ସିନା; କିନ୍ତୁ ରକ୍ତସ୍ରୋତ ଭିତରେ ପ୍ରବାହିତ ହୋଇ ବୁଲେ । ଫଳରେ ଭାବୀ ଜୀବନରେ ଅକସ୍ମାତ କୌଣସି ଗୋଟାଏ ବ୍ୟାଧି ଆସିକରି ହତଭାଗିନୀଙ୍କ ଜୀବନଟାକୁ ଘାସ୍ତା-ଧୂଳିରେ କଚାଡ଼ି ଦେଇ ଅର୍ଦ୍ଧମୃତ କରିଦେଇ ଚାଲିଯାଏ । ସେସବୁ କଥା ଏମାନେ ଭାବନ୍ତିନି । ଏଇଟାଇ ଯେ ସେସବୁ ବ୍ୟାଧିର ହେତୁ, ତାହା ମଧ୍ୟ ସେମାନେ ବୁଝନ୍ତି ନି; କେବଳ ବ୍ୟାଧି ହେଲେ ସାମୟିକଭାବେ ଆକୁଳ ହୋଇଉଠନ୍ତି ।

ବସନ୍ତ ଆକୁଳ ହୋଇ ମାଉସୀ ପାଖକୁ ଆସିଗଲା; ମାଉସୀ ରୋଗର ଚିକିତ୍ସା ଜାଣିଛି ।

ସମ୍ପ୍ରଦାୟଟାରେ ଏମାନଙ୍କ ଭିତରେ ଲାଜକଥା କିଛି ନାହିଁ । ଖାଲି ତାଆଁ ରୋଗ ଛୁଆଁରୁ ରକ୍ଷା ପାଇବାକୁ ସାବଧାନ ଥାଆନ୍ତି । ରୋଗଗ୍ରସ୍ତାର ଲୁଗାପଟା ଛୁଆଁରୁ ରକ୍ଷାପାଇଁ ଚାଲିଲେ ହେଲା । ତାହାର ଭିତରେ ଟିକିଏ ଘୃଣା ବା ଅସ୍ପୃଶ୍ୟତା ଦୋଷର ଆଭାସ ଫୁଟିଉଠେ ।

ଗାମୁଛା-ଲୁଗା ସାବଧାନ କରି ଆଡ଼େଇ ନିର୍ମଳା ଲଳିତା ଆସିଲେ ।

ବସନ୍ତ କାହାରିଆଡ଼େ ଥରେ ହେଲେ ଚାହିଁଲା ନି ।

ନିର୍ମଳା ପାଖରେ ବସି କହିଲା—ବାଲ ବାନ୍ଧ ରଖିବା ମନା । ଖୋଲିଦିଏ ।

ନିତାଇ ଗଡ ରାଡରେ କେଇଟା ଉଚ୍ଛିଷ୍ଟ ପାତ୍ର ନେଇ ପଦାକୁ ଯାଉଥିଲା ।

ବସନ୍ତ ନିର୍ମଳାକୁ କହିଲା—ମନା କର ।

ସେ ଆଜି ନିତାଇ ସାଙ୍ଗରେ ମୁହଁ ଉଠାଇ କଥା କହିପାରୁନାହିଁ ।

ନିର୍ମଳା କହିଲା—ଭାଇ, ଭାଇ ମ—

ନତାଇ ହସି କରି କହିଲା—କାହିଁକି ବ୍ୟସ୍ତ ହଉଚ ବସନ ? କିଛି ଡରନା ତମେ । ମୋର କିଛି ହବନି ।

ନିର୍ମଳା ଅବାକ୍ ହୋଇଗଲା ।

ଦିନଦିନ ଜାଗାରେ ନଅଦିନ ବିତିଗଲା । ବସନ୍ତ ବିଛଣାରେ ପଡ଼ି ଛଟପଟ ହେଉଥାଏ । ସର୍ବାଙ୍ଗରେ ତାର କ୍ଷୁଦ୍ର କ୍ଷୁଦ୍ର ସ୍ଫୋଟକ ଭର୍ତ୍ତି ହୋଇଯାଇଛି । ଦେହରେ କିଏ ଯେପରି ସ୍ୟାହି ଲଗାଇଦେଇଛି । ଗଭୀର ରାତିରେ ଆଲୋକ ଜାଳି ମୁଣ୍ଡ ଉପରେ ବସି ନତାଇ ହାଓ୍ୱା କରୁଥିଲା । ଏପରି କ୍ଷେତ୍ରରେ ରୁଗ୍ଣ ବ୍ୟକ୍ତିଙ୍କର ଆଉ ଦୁର୍ଦ୍ଦଶାର ସୀମା ରହେନା । ଭଲପାଇବାର ପାତ୍ର ପୁରୁଷମାନେ ସେମାନଙ୍କର ସଙ୍ଗ ତ୍ୟାଗ କରନ୍ତି, କେହି କେହି ହୁଏତ ଦଳ ଛାଡ଼ି ପଳାଇଯାଆନ୍ତି । ରୋଗଗ୍ରସ୍ତ ଏକା ପଡ଼ିରହିଥାଏ । ଯେଉଁ ଟିକିଏ ସେବା—ଯାହା କିଛି ଯତ୍ନ ଜୁଟେ, ସେତିକି କରନ୍ତି ସେଇ ଦଳର ସ୍ତ୍ରୀମାନେ ହିଁ । ନତାଇ କିନ୍ତୁ ବସନ୍ତର ମୁଣ୍ଡ ଉପରେ ବସିଛି—ପ୍ରଶାନ୍ତ ହସ ମୁହଁରେ ନେଇ ।

ସେ ଦିନ ।

ପଦାରେ—ରାତି ସେତେବେଳକୁ ନିଃଶବ୍ଦ ଗତିରେ ପ୍ରଥମ ପ୍ରହର ପାରହୋଇ ଦ୍ୱିତୀୟ ପ୍ରହରର ସମୀପବର୍ତ୍ତୀ ହୋଇ ଆସିଅଛି—ଅକସ୍ମାତ୍ ରାତିର ସ୍ତବ୍ଧତା ଭେଦକରି ଜାଗିଉଠିଲା ଗୋଟିଏ ସ୍ୱର । ଚେଇଁକରି ବସି ମଧ୍ୟ ନତାଇ ମଝିରେ ମଝିରେ ଢୁଳଉଥିଲା । ସ୍ୱରର ଚମକ ଲାଗି ସେ ଜାଗିଉଠିଲା । ଟିକିଏ ନହସି ସେ ରହିପାରିଲାନି । ଖିଆଲୀ ବେହେଲାଦାର ବେହେଲା ବଜାଉଛି । ଆଜି ନିର୍ମଳା ଘରେ ବଡ଼ସ୍ର ଉତ୍ସବର ଆସର ବସିଛି । ବେହେଲାଦାରର ଆଜି ତ ଖିଆଲ ଜାଗିବାର କଥା ଠିକ୍ । ବଡ଼ ମିଠାହାତ; କିନ୍ତୁ ଅଦ୍ଭୁତ ସ୍ୱର । ସ୍ୱରରେ ମିଷ୍ଟତା ଅଛି । ଶୁଣିଲେଇ ମନେହୁଏ; ଗଭୀର ଗାଢ଼ ଅନ୍ଧକାର ରାତିରେ ଯେପରି ସବୁକିଛି ହଜିଗଲା ।

—ଆଃ, ଛି ! ଛି ! ଛି ! ବସନ୍ତ ଚେଇଁଉଠି କହିଉଠିଲା ।

ଚକିତ ହୋଇ ନତାଇ କହିଲା—କଣ ବସନ ? କଣ ହଉଚ ?

—ଆଃ ମନା କର ମ, ବଜେଇବାକୁ ମନା କର ।

—ଭଲ ଲାଗୁନି ?

ଧଇଁସଇଁ ହୋଇ ବସନ୍ତ କହିଲା—ନାଃ, ନାଃ, ମୋର ହାତ ଗୋଡ଼ ଯେମିତି ହେମାଳ ହୋଇ ଆସୁଚି ।

କାଠିର ଟାଣରେ ଗୋଟିଏ ଦୀର୍ଘ କରୁଣ ସ୍ୱର ଥରଥର ସେହି ରାତିର ଅନ୍ଧାର ସଙ୍ଗରେ ଯେପରି ମିଶି ଏକାକାର ହୋଇଯାଉଛି । ରାତି ଯେପରି କାନ୍ଦୁଛି ।

# ଉଣେଇଶି

ପୂରା ମାସେ ଲାଗିଲା । ମାସକ ପରେ ବସନ୍ତ ରୋଗଶଯ୍ୟାରୁ କୌଣସି ପ୍ରକାରେ ଉଠି-ବସିଲା; କିନ୍ତୁ ବସନ୍ତକୁ ଆଉ ସେ ବସନ୍ତ ବୋଲି ଚିହ୍ନି ହେଉନଥିଲା ! ଘୃଣିତ କୁତ୍ସିତ ବ୍ୟାଧି ତାହାର ବିଷାକ୍ତ ଜିହ୍ୱାର ହିଂସ୍ର ଲେହନରେ ବସନ୍ତର ଅନୁପମ ଦେହବର୍ଣ୍ଣର ଉଜ୍ଜ୍ୱଳତା, ଲାବଣ୍ୟ ସବୁକିଛି ନିଃଶେଷ କରି ପୋଛିଦେଇଛି । ତାହା ଆଡ଼କୁ ଚାହିଁଲେ ମନେହୁଏ—ସର୍ବାଙ୍ଗରେ କିଏ ଯେପରି କୋଇଲାଗୁଣ୍ଡ ବୋଳିଦେଇଛି । ମୁଣ୍ଡର ସେଇ ଚିକ୍‌କଣ କଳା ଦୀର୍ଘ କେଶରାଶି ହୋଇଯାଇଛି କର୍କଶ ପୀତାଭ । କେବଳ ବର୍ଣ୍ଣ ନୁହେଁ—ତାହାର ଦେହର ଗନ୍ଧ-ରସ ସବୁ ଯାଇଛି । ତାହା ଦେହରେ ଗୋଟାଏ ଉତ୍କଟ ଗନ୍ଧ । ରସ-ନିଟୋଳ କୋମଳ ଦେହଟା କଙ୍କାଳସାର । ବସନ୍ତର ଗରବର ରୂପସମ୍ପଦ ମଧ୍ୟରେ ଅବଶିଷ୍ଟ ରହିଛି କେବଳ ବଡ଼ ବଡ଼ ଦୁଇଟି ଆଖି ! ଶୀର୍ଣ୍ଣ ଶୁଷ୍କ ମୁହଁରେ ଆଖି ଦି'ଟା ଯେପରି ଆହୁରି ବଡ଼ ହୋଇଉଠିଅଛି । ସ୍ତବ୍ଧ ନିଶ୍ଚଳ ହୋଇ ସେ ବସିଥାଏ । ଆଖି ଦି'ଟା ଜୁଳୁଜୁଳୁ ଜଳୁଥାଏ—ଭସ୍ମରାଶି ଭିତରେ ଦିଖଣ୍ଡ ଜ୍ୱଳନ୍ତ କୋଇଲା ଭଳି ।

ସେ ଦିନ ମାଉସୀ କହିଲା—ବସନ, ବେଶ୍ ଭଲକରି ତେଲ ହଳଦି ଲଗେଇ ଗାଧେଇପଡ଼ ଆଜି ।

ବସନ୍ତ ନିଷ୍ପଲକ ଆଖିରେ ସ୍ଥିରଦୃଷ୍ଟିରେ ଅନାଇଁ ବସିଥିଲା । ସେ କିଛି ଜବାବ ଦେଲା ନାହିଁ, ଟିକିଏ ହଲିଲା ନାହିଁ, ଆଖିର ଗୋଟାଏ ପଲକ ବି ପଡ଼ିଲାନି ।

ମାଉସୀ ପୁଣି କହିଲା—ରୋଗର ଗନ୍ଧଟା ଯିବ, ଦିହର କାଳଚଟା ଶୁଖିଲା ଅଂଶଟା ଚାଲିଯିବ, ଦେହକୁ ଆରାମ ହବ ।

ବସନ୍ତ ତଥାପି ସେଇମିତି ବସିରହିଲା ।

ମାଉସୀ ଏଥର ତା ପାଖରେ ବସି ତାକୁ ଟାଣିନେଲା—ଦିହର ଲୁଗା ଖୋଲି ସର୍ବାଙ୍ଗରେ ହାତ ବୁଲାଇଦେଲା । ଲଳିତାକୁ ଡାକି କହିଲା—ଲଳିତେ, ଗିନାରେ ଟିକିଏ ତେଲ ଗରମ କରିଦେ ତ ମା' ! ଆଉ ଟିକିଏ ହଳଦୀ । ତାପରେ ସେ ଡାକିଲା ନିତାଇକୁ—ବାପା ! ବାପା କୋଉଠି ଅଛ ଗୋ ?

ନିତାଇ ଘର ଭିତରେ ବସନ୍ତର ରୋଗଶଯ୍ୟା ପରିଷ୍କାର କରିବାରେ ବ୍ୟସ୍ତ ଥିଲା ।

ବିଛଣାପତ୍ରଗୁଡ଼ିକ ବାହାରକୁ ଆଣି ଖଟରେ ପକାଇଦେଇ କହିଲା—ମତେ କହୁଚ ମାଉସୀ ?

ହସି କରି ପ୍ରୌଢ଼ା କହିଲା—ବାପା ତ କାହାରି ଦି'ଜଣ ହୁଏନା ବାପା ! ସେ ଜଣକ ମୋର ତମେ । ଭଲ ବାପା ତମେ, ଝିଅ ଡାକୁଚ —ବୁଝିପାରୁନ ?

ନନ୍ଦାଇ ହସି କହିଲା—ବୁଝ ।

—ବସନର ପାନିଆଁ ଆଉ ତେଲ ଶିଶିଟା ଦିଅ ତ ବାପା, ମୁଣ୍ଡରେ ଜଟ ପଡ଼ିଗଲାଣି—କୁଣ୍ଡେଇ ଦିଏଁ ।

ବସନ୍ତ ଏତେବେଳେ କଥା କହିଲା—ବିଛଣା ଆଡ଼କୁ ଆଙ୍ଗୁଠି ଦେଖାଇ କହିଲା—ଏଗୁଡ଼ା କଅଣ ହବ !

ଘର ଭିତରକୁ ତେଲଶିଶି ଓ ପାନିଆଁ ଖୋଜିବାକୁ ଯାଉଁ ଯାଉଁ ନନ୍ଦାଇ କହିଲା —କାଚିବାକୁ ହବ ।

ତୀବ୍ର ତୀକ୍ଷ୍ଣ କଣ୍ଠରେ ବସନ୍ତ ଚିତ୍କାର କରିଉଠିଲା—ନା ! କହି ସେ ଫୁଲି ଫୁଲି କାନ୍ଦିଉଠିଲା । ସେ କାନ୍ଦଣା ତାର ଆଉ ଶେଷ ହବନି ଯେମିତି ।

ନନ୍ଦାଇ ଆଶ୍ଚର୍ଯ୍ୟ ଲୋକ । ସେ ହସି କରି ସାନ୍ତ୍ୱନା ଦେଇ କହିଲା—ମାଉସୀ ଯାହା କହୁଚନ୍ତି ସେଇଆ କର ବସନ ! ଏସବୁ ତୁମେ ଭାବନା ।

ବସନ୍ତ କେବଳ କାନ୍ଦିଚାଲିଲା ।

ନନ୍ଦାଇ ପୁଣି କହିଲା—ମୋର ବି ତ ମଣିଷର ଦେହ । ମୋର ରୋଗ ହେଲେ, ତମେ ସୁଧ ଅସଲ କରି ଶୁଝେଇଦେବ, ହେଲା ? ମୁଁ ପଚ୍ଛେ ମହାଜନଙ୍କ ପରି ହିସାବ କରି ପାଉଣା ନେଇନେବି । କଣ କହୁଚ ମାଉସୀ ?

ସେ ହସି ହସି ବିଛଣାଯାକ ନେଇ ବାହାରିଗଲା ।

ଲଳିତା, ନିର୍ମଳା ଗାଲରେ ହାତ ଦେଇ ବିସ୍ମୟରେ ଅବାକ୍ ହୋଇଗଲେ । ପ୍ରୌଢ଼ା ଦୀର୍ଘ ନିଶ୍ୱାସ ପକାଇ କହିଲା—ବସନ ଆମର ଭାଗ୍ୟବତୀ ।

ରୋଗ-କ୍ଲେଦଭରା ବିଛଣାପତ୍ର—ସବୁ ଖାର ଦେଇ ସିଝାଇ ନନ୍ଦାଇ କାଚି ପରିଷ୍କାର କଲା । ଲଳିତା, ନିର୍ମଳା ଦେହୋପଜୀବିନୀ । ସେମାନଙ୍କ ଜୀବନରେ ପ୍ରେମ ଶରତ୍‌କାଳର ମେଘ—ଆସେ, ଚାଲିଯାଏ । ଯଦି ବା କେଉଁଟା କିଛି ଦିନ ସ୍ଥାୟୀ ହେଲା, ତେବେ ହେମନ୍ତର ଶୀତ-ପବନ ଭଳି ଦେହୋପଜୀବିନୀର ଦେହରେ ଦୁର୍ଦ୍ଦଶାର ଆଭାସ ଆସିବା ମାତ୍ରେ ତାହା ବି ଚାଲିଯାଏ । ନିର୍ମଳାର ଏ ବ୍ୟାଧି ହୋଇଛି ତିନିଥର, ଲଳିତାର ହୋଇଛି ଦି'ଥର ।

ରୋଗ ପ୍ରକାଶ ପାଇଲେଇ ସେମାନଙ୍କର ଭଲ ପାଇବାର ମଣିଷଟି ପଳାଇଛି ।

ପୁଣି ନର୍ମଳାର ଜଣେ ପ୍ରେମିକ—ରୋଗର ସୁଯୋଗ ନେଇ—ତାହାର ଯଥାସର୍ବସ୍ୱ ନେଇ ପଳାଇଥିଲା । ଆଜ ନତାଇର ଆଚରଣ ଦେଖି ସେଇଥିପାଇଁ ସେମାନେ ଅବାକ୍ ହୋଇଗଲେ । ଖାଲି ନଜର ନୁହେଁ—ସେମାନଙ୍କର ସମବ୍ୟବସାୟିନୀଙ୍କ ଜୀବନରେ ବି ଏପରି ଘଟଣା ସେମାନେ ଦେଖିନାହାନ୍ତି ।

ବିଛଣାପତ୍ର ପରିଷ୍କାର କରି ଫେରି ନତାଇ ଦେଖିଲା, ବସନ୍ତ ସେଇମିତି ଚୁପ୍ ହୋଇ ବସିରହିଛି । ସେ ତା ଆଡ଼କୁ ଗୁହିଁ କିଛିଟା ଆଶ୍ୱସ୍ତ ହେଲା । ତେଲ-ହଳଦି ଲଗେଇ ଗାଧୋଇ ବସନ୍ତ କିଛିଟା ଶିରି ଫେରିପାଇଛି; ମୁଣ୍ଡବାଳ କୁଣ୍ଡାଇ ଦେଇ ପ୍ରୌଢ଼ା ଗୋଟିଏ ଢିଲା ଜୁଡ଼ା ବାନ୍ଧି ଦେଇଛି—କପାଳରେ ସିନ୍ଦୂରବିନ୍ଦୁଟିଏ ବି ଦେଇଛି ।

ରୋଗକ୍ଳିଷ୍ଟ ହତଶ୍ରୀ ବସନ୍ତ ସୁସ୍ଥ ହୋଇଅଛି ଏବଂ ଅପେକ୍ଷାକୃତ ସୁସ୍ଥିର ହୋଇଅଛି ଦେଖି ନତାଇ ସତରେ ଖୁସି ହେଲା ! କହିଲା—ବାଃ, ଏଇ ତ ବେଶ୍ ମଣିଷ ପରି ଲାଗୁଚ !

ବସନ୍ତ ହସିଲା । ତା ପରେ ଛାଡ଼ିଲା ଗୋଟିଏ ଗଭୀର ଦୀର୍ଘ-ନିଃଶ୍ୱାସ । ନତାଇର କଥାଗୁଡ଼ା ଯେମିତି ବସନ୍ତର ସେହି ହସର ଦାଢ଼ରେ କଟି ଖଣ୍ଡ ଖଣ୍ଡ ହୋଇ ସେହି ଦୀର୍ଘ-ନିଃଶ୍ୱାସର ଫୁତ୍କାରରେ କୁଆଡ଼ିକି ଉଡ଼ିଗଲା । ବସନ୍ତର ହସ ଭିତରେ ଯେତେଟା ବିଦ୍ରୂପ, ସେତେଟା ଦୁଃଖ । ତାହା ଦେଖି ନତାଇ ବିଚଳିତ ନହୋଇ ରହିପାରିଲାନି ।

କୌଣସିମତେ ଆତ୍ମସମ୍ବରଣ କରି ନତାଇ କହିଲା—ମୁଁ ମିଛ କହୁନି ବସନ ! ତମର ରଙ୍ଗ ଫେରିଆସିଛି—ଦୁର୍ବଳ ହେଉ; ଚେହେରାର ରୋଗିଣା ଭାବ ଯାଇଛି—ବିଶ୍ୱାସ ନହେଲେ ଆଇନାରେ ତମେ ନିଜେ ଦେଖ । ସେ ନଭାବି ନଚିନ୍ତି ଆଇନାଟା ନେଇ ଆସି ବସନ୍ତ ସାମନାରେ ଦେଖାଇଲା ।

ମୁହୂର୍ତ୍ତିକେ ଗୋଟାଏ କାଣ୍ଡ ଘଟିଗଲା ।

ବସନ୍ତର ବଡ଼ ବଡ଼ ଆଖିକୋଣରୁ ଅଗ୍ନିସ୍ଫୁଲିଙ୍ଗ ଝରି ଶୁଷ୍କ କଳା ବାରୁଦ ଭଳି ତାହା ଦେହରେ ଯେପରି ନିଆଁ ଧରାଇଦେଲା । ମୁହୂର୍ତ୍ତିକେ ବିଜୁଳି-ସ୍ଫୁଲିଙ୍ଗ ଭଳି କ୍ଷିପ୍ର ଗତିରେ ନତାଇର ହାତରୁ ଆଇନାଟା ଛଡ଼ାଇ ନେଇ ବସନ୍ତ ତା ଆଡ଼କୁ ଫୋପାଡ଼ି ଦେଲା । ସେ ଯେପରି ପାଗଳ ହୋଇଯାଇଛି । କିନ୍ତୁ ଦୁର୍ବଳ ହାତର ଲକ୍ଷ୍ୟ—ଆଉ ନତାଇ ବି ମୁଣ୍ଡଟା ଟିକିଏ ଘୁଞ୍ଚାଇ ନେଇଥିଲା—ସେଇଥିପାଇଁ ସେ ଆଘାତରୁ ବଞ୍ଚିଗଲା । ଆଇନାଟା ଯାଇ ଗୋଟାଏ ବାଉଁଶ ଖମ୍ଭିରେ ଲାଗି ତିନି ଚାରି ଖଣ୍ଡ ହୋଇ ଭାଙ୍ଗିଗଲା ।

ନତାଇ ଟିକିଏ ହସିଲା । ସେ କାଚଖଣ୍ଡ କେଇଟା ଗୋଟେଇବାକୁ ଆରମ୍ଭ କଲା ।

ସେଇ ମୁହୂର୍ତ୍ତିରେ ଗୋଟିଏ କଠିନ କଣ୍ଠସ୍ୱର ରଣରଣ କରି ବାଜିଉଠିଲା—ବସନ !

ନତାଇ ମୁହଁ ଟେକି ଚାହିଁଲା—ଦେଖିଲା, ମାଉସୀ । ଗମ୍ଭୀର କଠୋର ସ୍ୱରରେ ମାଉସୀ ପୁଣି କହିଲା—ବସନ୍ତ !

ବସନ୍ତ ସେଇମିତି ନୀରବ ଅଚଞ୍ଚଳ; ଆଖିର ଦୃଷ୍ଟି ତାର ସ୍ଥିର ନିଷ୍ପଳକ ।

—ଆଲେ, ରୋଗ କାହାର ନ ହଉଚି ? ତୋର ଏକା ହଉଚି ? ଜାଣିଚୁ ନା—ଏଇ ଲୋକଟା ନଥିଲେ ତୋର କଣ ନାଇ କଣ ହୋଇଥାନ୍ତା ?

ବସନ୍ତ ତଥାପି ଉତ୍ତର ଦେଲା ନାହିଁ । ଆଜ ମାଉସୀର ଏଇ ମୂର୍ତ୍ତି ଆଗରେ ଠିଆ-ହୋଇ ଉତ୍ତର ଦେବାର ଶକ୍ତି ବା ସାହସ ତାର ହବାର ବି ନୁହେଁ । ଏ ମାଉସୀ ଅଲଗା ମାଉସୀ । ନିଷ୍ଠୁର କଠୋର ଶାସନପରାୟଣା ଦଳନେତ୍ରୀ । ଝିଅଙ୍କଠୁଁ ପୁରୁଷ—ଏପରିକି ତାର ନିଜର ଭଲପାଇବାର ମଣିଷ—ସେଇ ମଇଁଛି ଭଳି ବିଶାଳକାୟ ଭୀଷଣ-ଦର୍ଶନ ଲୋକଟା ବି ପ୍ରୌଢ଼ାର ଏହି ମୂର୍ତ୍ତି ଆଗରେ ଠିଆହେବାକୁ ଡରେ । ନତାଇ ମଧ୍ୟ ଏ ସ୍ୱର, ଏ ମୂର୍ତ୍ତି ଆଗରେ ସ୍ତବ୍ଧ ହୋଇଗଲା । କାଚ ଗୋଟାଉ ଗୋଟାଉ ସ୍ତବ୍ଧ ହୋଇ ମାଉସୀକୁ ଚାହିଁ ଠିଆହୋଇ ରହିଲା । ଏ ମୂର୍ତ୍ତିକୁ ଆଜି ସେ ପ୍ରଥମେ ଦେଖୁଛି ।

ମାଉସୀ ପୁଣି କଠୋର ସ୍ୱରରେ ଡାକିଲା—ବସନ୍ତ ! କଥାର ଜବାବ ଦଉନୁ ଯେ ?

ବସନ୍ତ ଏଥର ଠିଆହେଲା, ନିଷ୍ପଳକ ଆଖିରେ ସ୍ଥିରଦୃଷ୍ଟି ମାଉସୀ ଆଡ଼କୁ ବୁଲାଇ ଚାହିଁ ରହିଲା । ସଙ୍ଗେ ସଙ୍ଗେ ନତାଇ ଆସି ଛିଡ଼ାହେଲା ଦି'ଜଣଙ୍କ ମଝିରେ । ମାଉସୀର ଆଖି ଦି'ଟା ଦପଦପ କରି ଜଳୁଛି—ଗାଢ଼-ଅନ୍ଧାରରେ ବାଘୁଣୀର ଆଖି ପରି ! ବସନ୍ତ ଆଖିରେ ବି ଅଗ୍ନି—ତାହାର ଚେତନା ନାହିଁ; କିନ୍ତୁ ଡରଭୟ ବି ନାହିଁ—କେବଳ ଦାହିକାଶକ୍ତି ନେଇ ସେ ଜଳୁଛି । ନତାଇ ସବିନୟରେ ହସି ମଧ୍ୟ ଦୃଢ଼ସ୍ୱରରେ କହିଲା—ବାହାରକୁ ଯାଅ ମାଉସୀ । ଛି ! ରୋଗିଣା ମଣିଷ—

—ରୋଗିଣା ମଣିଷ ? ରୋଗ ସଂସାରରେ ଆଉ କାହାରକୁ ହଉନଥିବ । ଏକା ତାର ହୋଇଚି ? ଝାଡ଼ୁ ମାରି—

—ଛି ମାଉସୀ, ଛି !

—ଛି କାଇଁକି, ଛି କାଇଁକି, ଆଁ ?

—ରୋଗିଣା ମଣିଷ, ତା ଛଡ଼ା ତମ ପାଖରେ ଅପରାଧ ତ କିଛି କରିନେଇ ।

—ମୋ ଦଳର ଲୋକ ଉପରେ କରିଛି । ଏଥିରେ ଦଳ ମୋର ରହିବ କେମିତି ? ତମେ ମୋର ଦଳର ଲୋକ, କବିୟାଲ ।

ନତାଇ ଶାନ୍ତ ଦୃଢ଼ କଣ୍ଠରେ ଟିକିଏ ହସିକରି କହିଲା—ସେ କଥା ସତ ! ତେବେ ବସନ୍ତ ଲାଗି ତମ ଦଳରେ ଅଛି ମାଉସୀ । ନଇଲେ— । ଟିକିଏ ଚୁପ୍‌କରି ରହି ପୁଣି

କହିଲା—ଯାଅ, ତମେ ବାହାରକୁ ଯାଅ ଭାଇ ।

ପ୍ରୌଢ଼ା ନିତାଇର ମୁହଁକୁ ଚାହିଁଲା । ଏ ଦଳର ପ୍ରତ୍ୟେକ ଲୋକ ନିଜର ଅଜ୍ଞାତ-ସାରରେ ପ୍ରୌଢ଼ାର ଆନୁଗତ୍ୟ ସ୍ୱୀକାର କରନ୍ତି । ଦଳନେତ୍ରୀ ଏ କଥାଟା ଭଲ କରି ଜାଣେ । ଦଳର ସବୁ ବିଷୟରେ ତାହାର ବ୍ୟବସ୍ଥାର ଅଧିକାର, ପ୍ରତିଟି କପର୍ଦ୍ଦକ ତାହାର ହାତଦେଇ ବିତରଣର ବିଧି—ତାହାର ଆସନ, ତାହାର ସାଜସରଞ୍ଜାମର ଆଭିଜାତ୍ୟ, ପ୍ରତ୍ୟେକ ଲୋକକୁ ତାହାର ଅଧୀନ, ଅନୁଗତ କରନ୍ତି । ନିଜର ଯୌବନରେ—ତାହାର ଦଳନେତ୍ରୀର ଦଳରେ ସେ ନିଜେ ବି ଏମିତି କରି ଆନୁଗତ୍ୟ ସ୍ୱୀକାର କରି ଆସିଅଛି । ତାହାର ଦଳରେ ବି ଏତେଦିନଯାକେ ସମସ୍ତେ ତାହାର ଆନୁଗତ୍ୟ ସ୍ୱୀକାର କରି ଆସୁଛନ୍ତି । ଆଜି ତାହାର ବ୍ୟତିକ୍ରମ ଦେଖି ସେ ସ୍ତମ୍ଭିତ ହୋଇଗଲା । ଏ କ୍ଷେତ୍ରରେ ତାହାର ଭୟାନକ ରାଗ ହେବାର କଥା; ସନ୍ଦୋଧେ ସେହି ସ୍ପର୍ଦ୍ଧାଦର୍ଶନ ଲୋକଟାକୁ ଆହ୍ୱାନ କରିବା ଉଚିତ । କିନ୍ତୁ ନିତାଇ ମୁହଁକୁ ଚାହିଁ ଦୁଇଟାରୁ ଗୋଟାଏ ବି ତାହାର ମନେ ହେଲା ନାହିଁ । ମନେ ହେଲା, ଏ ଲୋକଟି ତାହାର ଆନୁଗତ୍ୟ କେବେହେଲେ ସ୍ୱୀକାର କରିନାହିଁ ଏବଂ ସେ ଯେ ତାହାକୁ ଲଂଘନ କଲା, ତାହା ଭିତରେ ବି ରୂଢ଼ କିଛି ନାହିଁ, ଔଦ୍ଧତ୍ୟ କିଛି ନାହିଁ, ଅସ୍ୱାଭାବିକ ବି କିଛି ନାହିଁ । ନିତାଇ କୌଣସିମତେ ହିଁ ତାହାର କିଛି ଅପମାନ କରିନାହିଁ ।

ତା ମୁହଁ ଆଡ଼କୁ କିଛି ସମୟ ଅନାଇ ରହି ଗୋଟିଏ ଦୀର୍ଘ-ନିଃଶ୍ୱାସ ପକାଇ ସେ କହିଲା—ଆଶୀର୍ବାଦ କରୁଛି ବାପା, ତମେ ଚିରଜୀବୀ ହୁଅ । ମାଉସୀ ଛାଡ଼ି ଆଜି ତମ ସାଥିରେ ମା-ପୁଅ ସମ୍ବନ୍ଧ କରିବାକୁ ଇଚ୍ଛା ହେଉଛି । ତା ହେଲେ ଶେଷ ଦିନଟା ସକାଶେ ଆଉ ଭାବନା ନଥିବ ।

ନିତାଇ ହସି କହିଲା—ମା କଏ, ମାଉସୀ କଏ ! ସମାନ ! ଏଥର ଘରକୁ ଯାଅ । ପୁଅ-ବୋହୂଙ୍କ ଝଗଡ଼ା ମା-ମାଉସୀ ଶୁଣିବାର ନୁହେଁ ।

ଆଉ କିଛି ନକହି ସେ ଏହି ଅନୁରୋଧ ମାନିନେଇ ଚାଲିଗଲା ।

ନିତାଇ ଏଥର ବସନ୍ତ ଆଡ଼କୁ ବୁଲି କହିଲା—ଛି ! ରୋଗିଣା ଦେହରେ କଣ ଏତେ ରାଗନ୍ତି । ରାଗିଲେ ଦେହ ଖରାପ ହୁଏ ବସନ !

ଅକସ୍ମାତ୍ ବସନ୍ତ ସେଇ ଚଟାଣ ଉପରେଇ ମୁହଁ ମାଡ଼ି ଶୋଇ ଫୁଲି ଫୁଲି କାନ୍ଦିବାକୁ ଆରମ୍ଭ କଲା ।

ସସ୍ନେହରେ ନିତାଇ କହିଲା—ଆଜି ସକାଳଟାରୁ ଏମିତି କାନ୍ଦୁଚ କାହିଁକି ବସନ ?

ବସନ୍ତର କାନ୍ଦଣାଟା ବଢ଼ିଗଲା । ସେ କାନ୍ଦଣାର ଆବେଗରେ ନିଃଶ୍ୱାସ ଯେପରି ବନ୍ଦ ହୋଇଆସୁଥାଏ !

ନିତାଇ ତାହାର ମୁଣ୍ଡରେ ସସ୍ନେହରେ ହାତ ବୁଲାଇ ଦେଇ କହିଲା—କାଲି କଲିକତା ଔଷଧ ଦୋକାନକୁ ଚିଠି ଲେଖିଛି । ସାଲସା ମଗେଇଛି ଦୁଇ ଶିଶି । ସାଲସା ଖାଇଲେଇ ଦେହ ଭଲ ହୋଇଯିବ, ରକ୍ତ ପରିଷ୍କାର ହବ—ସବୁ ଭଲ ହୋଇଯିବ ।

ଶ୍ୱାସରୋଧୀ କାନ୍ଦର ଆବେଗରେ ବସନ୍ତ କାଶିବାକୁ ଆରମ୍ଭ କଲା । କାଶିକରି କିଛିଟା କଫ ବାହାର କରି ପକେଇ ଦେଇ ଅବସାଦରେ ନିର୍ଜୀବ ଭଳି ପଡ଼ିରହିଲା । ଧୀରେ ଧୀରେ ଗୋଟାଏ ଆଙ୍ଗୁଠି ଦେଇ କିଛି ଗୋଟାଏ ଦେଖାଇଦେଲା ।

—କଣ ?

ଏତେବେଳ ପରେ ବସନ୍ତ କଥା କହିଲା—ଅଦ୍ଭୁତ ହସି କହିଲା—ରକ୍ତ ।

—ରକ୍ତ ?

—ସେଇ କାଲରୋଗ । ବସନ୍ତ ପୁଣି ହସିଲା । ଏତେବେଳଯାକେ ଏଇ କଥାଟା କହି ନପାରି ହିଁ ସେ କାନ୍ଦୁଥିଲା । କଥାଟା କହିଦେବା ସଙ୍ଗେ ସଙ୍ଗେ ସେ କାନ୍ଦ ବି ତାର ଶେଷ ହୋଇଛି ।

ନିତାଇ ସ୍ଥିର ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ଦେଖିଲା—ବାହାରିଥିବା କଫ ଭିତରେ ଲାଲ ଟହଟହ ଆଭାସ ସୁସ୍ପଷ୍ଟ । ଗୋଟାଏ ଦୀର୍ଘ-ନିଃଶ୍ୱାସ ପକାଇ ସେ ଅନେକ ବେଳ ଚୁପ୍ ହୋଇ ରହିଲା ।

ବସନ୍ତ ଦୁଇ ହାତରେ ତାର ଗଳା ଗୁଡ଼େଇ ଧରି କହିଲା—କାହିଁକି ତମେ ଦଳକୁ ଆସିଥିଲ, ସେଇଆ ମୁଁ ଭାବୁଚି । ମରିବାକୁ ତ ମୋର ଡର ନଥିଲା; କିନ୍ତୁ ଆଉ ସେ ମରିବାକୁ ମନ ଚାହେଁନା । ରୋଗକ୍ଲିଷ୍ଟ ଶୀର୍ଣ୍ଣ ମୁହଁରେ ମୃଦୁ ହସ ମାରି ସେ ଏକଦୃଷ୍ଟିରେ ନିତାଇ ମୁହଁକୁ ଚାହିଁରହିଲା ।

ନିତାଇ ବି ନିଜର ଦୁଇ ହାତର ବନ୍ଧନରେ ଦୁର୍ବଳ ଶିଶୁ ଭଳି ତାହାକୁ ଗ୍ରହଣ କରି କହିଲା—ଡର କୋଉ କଥାକୁ ? ରୋଗ ହେଲେଇ କଣ ମରନ୍ତି ବସନ ? ଦେହ ଭଲ ହେଇଗଲେଇ ସେ ରୋଗ ବି ଭଲ ହେଇଯିବ ।

ଏଥର ଗୋଟାଏ ବିଚିତ୍ର ହସ ହସି ବସନ୍ତ ନୀରବରେ ଖାଲି ମୁଣ୍ଡ ହଲାଇ ଜଣାଇ-ଦେଲା—ନା-ନା-ନା ।

କିଛି ସମୟ ପରେ ମୁହଁ ଫିଟେଇ କହିଦେଲା—ଆଉ ବଞ୍ଚିବିନି !

ତା ପରେ ହଠାତ୍ କହିଉଠିଲା—ମୁଁ ଜାଣିଥିଲି କବିୟାଲ ! ଯେଉଁ ଦିନ ସେଇ ଗୀତଟା ତମ ମନକୁ ଆସିଚି—ସେଇ ଦିନ ମୁଁ ଜାଣିପାରିଚି ।

—କୋଉ ଗୀତ ବସନ ?

—"ଜୀବନଟା ଏତେ ଛୋଟ କିମ୍ପା ହାୟ— ?"

ଝରଝର କରି ସେ କାନ୍ଦିପକାଇଲା ।

ନନ୍ଦାଇ ଆଖିରେ ବି ଏଥର ପାଣି ଆସିଲା । ସଙ୍ଗେ ସଙ୍ଗେ ଅସମାପ୍ତ ଗୀତଟା ପୁଣି ମନରେ ଗୁଞ୍ଜନ କରିଉଠିଲା—

"ଏଇ ଖେଦ ରହିଲା ମୋ ମନେ
ଭଲ ପାଇ ମେଣ୍ଟିଲନି ଆଶା—ଅଣ୍ଟିଲନି ଏ ଜୀବନେ
ହାୟ, ଜୀବନଟା ଏତେ ଛୋଟ କାହିଁ
ଏ ଭୁବନେ ?"

—ତା ପରେ ?

ତା ପରେ ଆଉ ହେଇନି । ଅସମାପ୍ତ ହୋଇକରି ହିଁ ରହିଯାଇଛି । ନନ୍ଦାଇ ଗୋଟାଏ ଦୀର୍ଘନିଃଶ୍ୱାସ ପକାଇଲା । କେବେ, ଶେଷ ହବ କିଏ ଜାଣେ ।

ବସନ୍ତ ହିଁ ପୁଣି କହିବାକୁ ଲାଗିଲା—ମୁଁ ଜାଣିପାରିଛି । ବେହେଲାବାଲା ରାତିରେ ବେହେଲା ବଜାଏ, ଆଗେ କେତେ ଭଲ ଲାଗୁଥିଲା । ଏଇଲା ଭୟ ଲାଗେ । ମନେ ହୁଏ, ମୋର ପାଖଆଖରେ ଠିଆହୋଇ କିଏ ଯେପରି କହିଁକହିଁ କାନ୍ଦୁଚି । ଅହରହ ମନରେ ମୋର ମରଣର ଭାବନା । ମନକଥା କଣ ମିଛ ହୁଏ ? ତହିଁ ଉପରେ ସେଇ ଗୀତ ତମ ମନକୁ ଆସିଚି । କମିତି ଆସିଲା ?

ବସନ୍ତର ମନକଥା ହୋଇଗଲା—ଦୈବବାଣୀ ଭଳିଆ ସତ୍ୟ, ମିଥ୍ୟା ନୁହେ ।

ଦିନ କେଇଟା ପରେଇ ସନ୍ଧ୍ୟା ଆଡ଼କୁ ବସନ୍ତ ଦେହରେ ସ୍ପଷ୍ଟଭାବେ ଜ୍ୱର ଫୁଟିଉଠିଲା । ସେ ନନ୍ଦାଇକୁ ଡାକି ତାହା ହାତରେ ହାତ ରଖି କହିଲା—ଦେଖ କେତେ ଗରମ !

ନନ୍ଦାଇ ତା ମୁହଁକୁ ଚାହିଁରହିଲା ।

ବସନ୍ତ ହସିକରି କହିଲା—ହାୟ, ଜୀବନଟା ଏତେ ଛୋଟ କାହିଁ ଏ ଭୁବନେ କବିୟାଲ !

କଥାଟା ହେଉଥିଲା ଗୋଟାଏ ଛୋଟକାଟର ସହରରେ—ସହରର ନାଁଟାଇ କହିବାନି କାହିଁକି—କଟଓ୍ୱା । କଟଓ୍ୱାର ଏକ ପ୍ରାନ୍ତରେ ଜୀର୍ଣ୍ଣ ଗୋଟିଏ ମାଟିଘର ସେମାନେ ଭଡ଼ା ନେଇଥିଲେ । ନନ୍ଦାଇ କହିଲା—ଲଳିତାକୁ ଟିକେ ଡାକେଁ, ତମ ପାଖରେ ବସୁ । ମୁଁ ଜଣେ ଡାକ୍ତରଙ୍କୁ ଡାକିଆଣେ ।

—ନା । ଆକୁଳ ହୋଇ ବସନ୍ତ କହିଉଠିଲା—ନା ।

—ଏଇ ଅଧ ଘଣ୍ଟା । ମୁଁ ଯିବି, ଆଉ ଦଣ୍ଡକ ଭିତରେ ଫେରିଆସିବନି କି ।

—ନା ଗୋ, ନା । ଯଦି ଜାଣି ଉଠେ ? ଯଦି ରକ୍ତ ଦେଖିପାରନ୍ତି, ତେବେ ଏଇ ରାସ୍ତା ମଝିରେ ଫୋପାଡ଼ି ଦେଇ ଆଜି ଏଇଲାଗେ ପଳେଇବେ ସମସ୍ତେ । ଯାଅନା ତମେ, ଯାଅନା ।

ନିତାଇ ଅଗତ୍ୟା ବସିଲା । ରକ୍ତ ଉଠିବା କଥାଟା ଆଜିଯାକେ ସମସ୍ତଙ୍କ ପାଖରେ ଲୁଚାଇ ରଖାହୋଇଛି ।

ଜ୍ୱରଟା ଯେମିତି ଆଜି ବେଶୀ ବେଶୀ ବଢ଼ୁଛି । ଅନ୍ୟ ଦିନ ରାତିର ପ୍ରହର କେତେକ ପରେଇ ଟିକିଏ ଝାଳ ଦେଇ ଜ୍ୱର ଛାଡ଼େ । ବସନ୍ତ ଅନେକ ପରିମାଣରେ ସୁସ୍ଥ ହୁଏ । ଆଜି ଝାଳ ବି ଦେଇନି—ସେ ସୁସ୍ଥ ବି ହେଲା ନାହିଁ । ମଝିରେ ମଝିରେ ଜ୍ୱରଜର୍ଜର ଅସୁସ୍ଥ ବିହ୍ୱଳ ବ୍ୟଗ୍ର ଦୃଷ୍ଟି ପକାଇ ସେ ଘରକଡ଼ରେ ଖୋଜି ନିତାଇକୁ ଚାହୁଁଥାଏ—ପୁଣି ଆଖି ବୁଜି ଏପାଖରୁ ସେପାଖ ବୁଲି ଶୋଉଥିଲା । ଅସ୍ଥିରତା ଆଜି ଅତିରିକ୍ତ ।

ନିତାଇ ସେ ଦୃଷ୍ଟିର ଅର୍ଥ ବୁଝିଥିଲା । ତେଣୁ ଯେତେ ଥର ସେ ଆଖି ମେଲି ତାହାକୁ ଖୋଜୁଥାଏ, ସେତେ ଥର ସେ ଜବାବ ଦେଇ କହିଲା—ମୁଁ ଅଛି—ଏଇ ତ ମୁଁ !

ରାତି ଯେତେବେଳକୁ ଶେଷ ପ୍ରହର । ନିତାଇ ତନ୍ଦ୍ରାଚ୍ଛନ୍ନ ହୋଇ କାନ୍ଥକୁ ଆଉଜି ନିଦେଇଯାଇଥିଲା ।

ରାତିର ଶେଷ ପ୍ରହରଟା ଅଦ୍ଭୁତ ରହସ୍ୟ । ଏତେବେଳେ ଦିନର ସଞ୍ଚିତ ଉତ୍ତାପ ନିଃଶେଷ ହୋଇ କ୍ଷୟିତ ହୋଇଆସେ ଏବଂ ସକଳ ଉଷ୍ଣତାକୁ ଘୋଡ଼ାଇ ଗୋଟାଏ ରହସ୍ୟମୟ ଘନ ଶୀତଳତା ଧୀରେ ଧୀରେ ଜାଗିଉଠେ । ସେହି ସ୍ପର୍ଶ କପାଳରେ ଆସି ଲାଗେ, ଚେତନା ଯେପରି ଅଭିଭୂତ ହୋଇପଡ଼େ । ଧୀରସଞ୍ଚାରିତ ନିଃଶବ୍ଦତା ଭିତର ଦେଇ ଗୋଟାଏ ହିମ-ସଂଗୃର ହିମ ରହସ୍ୟ ସମସ୍ତ ସୃଷ୍ଟିକୁ ଆଚ୍ଛନ୍ନ କରିଦିଏ ନିସ୍ତରଙ୍ଗ ବାୟୁସ୍ତର ଭିତରେ ନିଃଶବ୍ଦ ସଞ୍ଚାରିତ ଧୂମପୁଞ୍ଜଭଳି । ମାଟିର ଗୁହା ଭିତରେ, ଗଛପତ୍ରରେ ରହି ଯେଉଁ ଅସଂଖ୍ୟ କୋଟି କୀଟପତଙ୍ଗ ଅବିରାମ ଧ୍ୱନି ତୋଳୁଥାନ୍ତି, ସେମାନେ ବି ଅଭିଭୂତ ଓ ଆଚ୍ଛନ୍ନ ହୋଇପଡ଼ନ୍ତି ରାତିର ଏହି ଶେଷ ପ୍ରହରରେ । ଚେତନାଲୁପ୍ତ ହୋଇ ଏତିକିବେଳେ କିଛି ସମୟ ଲାଗି ସେମାନେ ବି ସ୍ତବ୍ଧ ହୁଅନ୍ତି । ମାଟି ଭିତରେ ରନ୍ଧ୍ରେ ରନ୍ଧ୍ରେ ଏହି ହିମସ୍ପର୍ଶ ବିଞ୍ଚିହୋଇଯାଏ । ଜୀବ-ଜୀବନର ଚେତନାଲୋକରେ ବି ସେ ପ୍ରବେଶ କରି ସକଳ ଇନ୍ଦ୍ରିୟଗୁଡ଼ିକୁ ଅବଶ କରିଦିଏ । ଆକାଶରେ ଜ୍ୟୋତିର୍ଲୋକ ହୁଏ ପାଣ୍ଡୁର; ସେ ଲୋକରେ ମଧ୍ୟ ଯେପରି ହିମ-ତମସାର ସ୍ପର୍ଶ ଲାଗେ । କେବଳ ଅଗ୍ନି-କୋଣରେ ଦପ୍-ଦପ୍ କରି ଜଳୁଥାଏ ଶୁକ୍ରତାରା—ଅନ୍ଧ ରାତ୍ରିଦେବତାଙ୍କର ଲଲାଟଚକ୍ଷୁ

ଭଳି । ସକଳ ଇନ୍ଦ୍ରିୟ ଆଚ୍ଛନ୍ନ କରୁଥିବା ରହସ୍ୟମୟ ଏକ ଗଭୀର ଶୀତଳତା ନତାଇକୁ ଧୀରେ ଧୀରେ ମାଡ଼ିବସିଲା । ନତାଇ ଶତଚେଷ୍ଟା କରି ମଧ୍ୟ ଚେଇଁରହି ପାରିଲାନି । ଆଚ୍ଛନ୍ନ ହେଲା ପରି କାନ୍ଥକୁ ଆଉଜି କିଛି ସମୟ ନିଜ ପଡ଼ିଲା ।

ଅକସ୍ମାତ୍ ତାହାର ଚେତା ଆସିଲା ବସନ୍ତର ଆକର୍ଷଣରେ ! ବସନ୍ତ କେତେବେଳେ ଉଠିକରି ବସିଛି ! ଦୁଇ ହାତ ଦେଇ ତାହାର ଗଳା ଆବୁରି ଧରି ସେ ଡାକୁଛି— ଅ.ଗୋ ! ଅ.ଗୋ !

ସେ କି ଆର୍ତ୍ତିବହ୍ୱଳ ତାହାର କଣ୍ଠସ୍ୱର ।

— କଣ ବସନ ? କଣ ? ଉଠି ବସିଲ କାହିଁକି ? ଶୁଅ ଶୁଅ ! ବସନ୍ତର ହାତ ଦିଟା ବରଫପରି ହେମାଳ; ପୃଥିବୀ ଉପରେ ଯେଉଁ ହିମପ୍ରବାହ ଖେଳିଯାଉଅଛି, ସେହି ହିମପ୍ରବାହ ଯେପରି ସରୀସୃପ ଭଳି ବସନ୍ତର ହାତ ଭିତର ଦେଇ ନିଃଶବ୍ଦ ସଞ୍ଚାରରେ ତାହାର ସର୍ବାଙ୍ଗରେ ସଞ୍ଚାରିତ ହେଉଅଛି । ବସନ୍ତର ସର୍ବାଙ୍ଗରେ ଝାଳ ।

—ମନା କର ! ମନା କର ।

—କଣ ?

—ବେହେଲା । ବେହେଲା ବଜାଇବାକୁ ମନା କର ଗୋ '

—ବେହେଲା ? କାହିଁ ? ନତାଇ ବେଶ୍ କାନ ଦେଇ ଶୁଣିଲା । କିନ୍ତୁ ରାତିର ସ୍ତବ୍ଧ ଶେଷ ପ୍ରହରରେ ବି—ସେ ଦୁହିଙ୍କ ନିଃଶ୍ୱାସପ୍ରଶ୍ୱାସର ଶବ୍ଦ ଛଡ଼ା—ଆଉ କୌଣସି ଶବ୍ଦ ସେ ଶୁଣିପାରିଲା ନାହିଁ ।

—ଆଃ, ଶୁଣିପାରୁନ ? ଏଇ ତ, ଏଇ ତ ! ଖାଲି ବେହେଲା ବାଜୁଛି, ଖାଲି ବେହେଲା ବାଜୁଛି !

ଚକିତରେ ଗୋଟିଏ କଥା ନତାଇର ମନ ଭିତରେ ଜାଗିଉଠିଲା ।

ବସନ୍ତର ଦେହର ସ୍ପର୍ଶ ହିଁ ତାହାକୁ ସେ କଥାଟି ସମ୍ପର୍କରେ ସଚେତନ କରିଦେଲା । ତା ହାତର ନାଡ଼ିର ଗତି ଅନୁଭବ କରି ନତାଇ ସକରୁଣ ଦୃଷ୍ଟିରେ ବସନ୍ତର ମୁହଁକୁ ଚାହିଁ କହିଲା— ଗୋବିନ୍ଦଙ୍କ ନାମ ନିଅ ବସନ୍ତ !

—କାହିଁକି ? ବସନ୍ତ ତାହାର ବିହ୍ୱଳ ଆଖି ଦୁଇଟା ନତାଇର ମୁହଁ ଉପରେ ସ୍ଥାପନ କରି ଅସ୍ଥିର କଣ୍ଠରେ ପ୍ରଶ୍ନ କଲା —କାହିଁକି ?

କାହିଁକି, ସେକଥା ନତାଇ ଜମା କହିପାରିଲା ନାହିଁ ।

ମୃତ୍ୟୁକାଳୀନ ଅସ୍ଥିରତା ଭିତରେ ବି ହଠାତ୍ କେତେକ ମୁହୂର୍ତ୍ତ ଲାଗି ଶାନ୍ତ ସ୍ଥିର ହୋଇ ବଡ଼ ବଡ଼ ଆଖି ଦୁଇଟି ଆହୁରି ବଡ଼ କରି ମେଲାଇ ବସନ୍ତ ପଚାରିଲା—ମୁଁ ମରୁଛି ?

ନିତାଇ ମ୍ଳାନ ହସ ମୁହଁରେ ନେଇ ତାହାର କପାଳରେ ହାତ ବୁଲେଇ ଦେଇ ଏଥର କହିଲା—ଭଗବାନଙ୍କ ନାମ—ଗୋବିନ୍ଦଙ୍କ ନାମ ନେଲେ କଷ୍ଟ କମ୍ ହବ ବସନ !

—ନା । ଗୁଣ୍ଡିଛଡ଼ା ଧନୁଭଳି ବିଛଣା ଉପରେ ଲେଟିପଡ଼ି ବସନ୍ତ କହିଲା—ନା । କିଣ ଦେଇଛି ଭଗବାନ ମତେ ? ସ୍ୱାମୀ-ପୁତ୍ର ଘରସଂସାର କଣଟା ଦେଇଛି ? ନା ।

ନିତାଇ ଅପରାଧୀ ଭଳି ଚୁପ୍ ହୋଇ ରହିଲା । ଭଗବାନଙ୍କ ବିରୁଦ୍ଧରେ ଯେଉଁ ନାଲିସ୍‌ଟା ବସନ୍ତ କଲା, ସେହି ନାଲିସ୍‌ର ସବୁ ଦାୟି-ଦାବି, କେଜାଣି କାହିଁକି, ତାହାର ମୁଣ୍ଡ ଉପରେ ଯେପରି ମାଡ଼ିପଡ଼ୁଛି ବୋଲି ସେ ଅନୁଭବ କଲା ।

ବସନ୍ତ ଏଆଡ଼େ ବୁଲି ତାହାର ଆଡ଼େ ଚାହିଁକରି କହିଲା—ଗୋବିନ୍ଦ ! ରାଧାନାଥ ! ଦୟା କର । ଆଉ ଜନମକୁ ଦୟା କର ।

ତାହାର ବଡ଼ ବଡ଼ ଆଖି ଦୁଇଟା ପାଣିରେ ପୂରି ଟଳମଳ କରୁଥିଲା ବର୍ଷାର ପ୍ଲାବନରେ ବୁଡ଼ିରହିଥିବା ପଦ୍ମପାଖୁଡ଼ା ଭଳି । ନିତାଇ ସଯତ୍ନରେ ନିଜ କାନିରେ ସେ ପାଣି ପୋଛିଦେଇ ଟିକିଏ ନଇଁ ପଡ଼ି ଡାକିଲା—ବସନ ! ବସନ !

—ନା, ଆଉ ଡାକନା । 'ନା' କହୁ କହୁ ସେ ପୁଣି ଅଧୀର ଆକ୍ଷେପରେ ଶୂନ୍ୟ ବାୟୁମଣ୍ଡଳରେ କିଛି ଯେମିତି ଜାବୁଡ଼ି ଧରିବାଲାଗି ହାତ ଦୁଇଟା ପ୍ରସାରିତ କରି ନିଷ୍ଠୁର-ତମ ଯନ୍ତ୍ରଣାରେ ଅସ୍ଥିର ହୋଇପଡ଼ିଲା !

ପର ମୁହୂର୍ତ୍ତରେ ହିଁ ସେ ନିତାଇ କୋଳରେ ଢଳିପଡ଼ିଲା ।

## କୋଡ଼ିଏ

ଗଙ୍ଗାର ତୀରବର୍ତ୍ତୀ ସହର । ଗଙ୍ଗାର ତୀରବର୍ତ୍ତୀ ଶ୍ମଶାନରେ ହିଁ ନିତାଇ ବସନ୍ତର ଶବ ସତ୍କାର କଲା । ସାହାଯ୍ୟ କଲେ ଦଳର ଝିଅମାନେ ! କିନ୍ତୁ ଆଶ୍ଚର୍ଯ୍ୟ କଥା, ପୁରୁଷମାନେ ଶବ ସ୍ପର୍ଶ ବି କଲେ ନାହିଁ । ଏ କ୍ଷେତ୍ରରେ ଆପଣା ଆପଣା ଜାତି ସମ୍ବନ୍ଧରେ ସେମାନେ ସଚେତନ ହୋଇଉଠିଲେ । ପାଳିଆ—ଲଳିତାର ପ୍ରିୟଜନ—ସେ ମୁହଁ ଫିଟେଇ କହିଲା—ଓସ୍ତାଦ ଯାହା କରୁଚନ୍ତି ସେଇମାନେ କରନ୍ତୁ । କଲି ତ ଢେର୍ । ଆଉ କାହିଁକି ?

ନିତାଇ ହସିଲା, ପ୍ରତିବାଦ କଲା ନାହିଁ । କିନ୍ତୁ ତାହାର ପରାମର୍ଶ ଗ୍ରାହ୍ୟ କରିବାର

ଲକ୍ଷଣ ମଧ୍ୟ ଦେଖାଇଲା ନାହିଁ । ତାଙ୍କ ପାଖଆ ଲୋକଟି ଗୁଡ଼ାଇଲାନ, କହିଲା—ହସିବା କଥା ନୁହଁ ଓସ୍ତାଦ୍ ! ପରକାଳକୁ କଣ ଜବାବ ଦବ କୁହ ?

ନତାଇ ହସି କହିଲା—କିଛି ଜବାବ ଦେବନି । ଚୁପ ହୋଇ ଠିଆହୋଇ ରହିବ ଭାଇ !

ବେହେଲାବାଲାଟି ହସି ବାଧା ଦେଇ କହିଲା—ଗୁଡ଼ ଭାଇ, ସେକଥା ଥାଉ । କହିକରି ସେ ବେହେଲାର ଛଡ଼ ଟାଣିଲା ।

ଚିତା ଉପରେ ଶବ ଥୋଇବାଆଗରୁ ପ୍ରୌଢ଼ା ଗୋଟାଏ ଦୀର୍ଘନିଃଶ୍ୱାସ ପକାଇ କହିଲା—ଆଃ । ବସନ, ମୋ ସୁନା ବସନ । ଦୁଇ ବୁନ୍ଦା ଲୁହ ବି ତା ଆଖିରୁ ଝରିପଡ଼ିଲା । ପାଖରେଇ ବାଲିଚଡ଼ା ଉପରେ ବସିଥିଲେ ନିର୍ମଳା ଏବଂ ଲଳିତା । ନିଃଶବ୍ଦ କାନ୍ଦରେ ତାଙ୍କର ଆଖିରୁ ଖାଲି ଲୁହ ଝରିପଡ଼ୁଥିଲା ଅନର୍ଗଳ ଧାରାରେ ।

ନତାଇ ଶବକୁ ଚିତା ଉପରେ ଚଢ଼ାଇବାର ଉଦ୍ୟୋଗ କଲା । ପ୍ରୌଢ଼ା କହିଲା—ରୁହ ବାପା, ରୁହ । ସେ ଆସି ବସନ୍ତର ଅଳଙ୍କାର ଖୋଲି ବସିଲା । ନିମ୍ନ ଶ୍ରେଣୀର ଦେହୋପଜୀବିନୀର କଣ ବା ଅଳଙ୍କାର । କାନକୁ ଦିଟା କାନଫୁଲ, ନାକରେ ଗୋଟିଏ ମାଛି, ହାତରେ ଦି'ପଟ ଶଙ୍ଖା, ତା ଛଡ଼ା ବସନ୍ତ ବେକରେ ଥିଲା ଗୋଟିଏ ହାଲୁକା ବଗୁହାର ।

ନତାଇ ହସିଲା । କହିଲା—ଖୋଲି ନଉଛ ମାଉସୀ ?

ମାଉସୀ ଖାଲି ତା ମୁହଁକୁ ଥରେ ଚାହିଁଲା, ତା ପରେ ନିଜ କାମରେ ମନଦେଲା । ଗହଣାଗୁଡ଼ିକ କାନିରେ ବାନ୍ଧି ସେ କହିଲା—ଗୁଡିର ନିଧି ଯେ ସେ ଚାଲିଯାଏ ବାପା, ମନେହୁଏ ଦୁନିଆଁ ଅନ୍ଧାର, ଖାଇବା ବିଷ, ଆଉ କିଛି ଛୁଇଁବନି—କେବେ କିଛି ଖାଇବନି । ପୁଣି ବେଳଏ ଯାଇଚି କି ନାହିଁ ଆଖି ଫିଟେଇ ଚାହିଁବାକୁ ହୁଏ, ଉଠିବାକୁ ହୁଏ, ପୋଡ଼ା ପେଟକୁ ଦି'ଟା ଦବାକୁ ବି ହୁଏ । ମଣିଷ ସାଙ୍ଗରେ ଆଖି ମିଳେଇବାକୁ ହୁଏ । ବଞ୍ଚିବାକୁ ବି ହବ, ଖାଇବାକୁ ପିନ୍ଧିବାକୁ ବି ପଡ଼ିବ—ଏଗୁଡ଼ା ଚିତାରେ ଦେଇ କି ଫଳ ହବ କୁହ ? ବକ୍ତବ୍ୟ ଶେଷ କରି ହସି ସେ ହାତର ଗହଣାଗୁଡ଼ିକ ଆଡ଼କୁ ଚାହିଁ କହିଲା—ଏଗୁଡ଼ିକ ପୁଣି ମୋର ପାଉଣା ବାପା !

ନତାଇ ପୁଣି ଟିକଏ ହସିଲା, ହସିକରି ସେ ବସନ୍ତର ଅଳଙ୍କାରହୀନ ଦେହଟି ଚିତାରେ ଶୁଆଇଦେଲା ।

ପ୍ରୌଢ଼ା କପାଳରେ ହାତ ମାରି ଆକ୍ଷେପ କରି କହିଲା—ମୋର କପାଳ ଦେଖିଲ ବାପା ! ମୁଁ ହେଲି ଉଆରସି । ପ୍ରୌଢ଼ାର ଆଖିରୁ ଲୁହ ଗଡ଼ିଗଲା ।

ଲଳିତା, ନିର୍ମଳା ଅଦୂରରେ ସଜଳ ଆଖିରେ ଉଦାସ ଦୃଷ୍ଟିରେ ବସନ୍ତର ଚିତା

ଆଉକି ରହିଁଥିଲେ ! ବସନ୍ତର ବିୟୋଗରେ ବେଦନା ତାଙ୍କର ଅକୃତ୍ରିମ; କିନ୍ତୁ ଠିକ ଏଇ ମୁହୂର୍ତ୍ତିଟିରେ ସେମାନେ ଭାବୁଥିଲେ ନିଜ ନିଜ କଥା । ସେମାନଙ୍କୁ ବି ହୁଏତ ଏମିତି କରି ଯିବାକୁ ହେବ; ମାଉସୀ ଏଇମିତି କରି ସେମାନଙ୍କ ଦେହରୁ ସୁନାର ଚୂଡ଼ି କେଇଟା ଖୋଲିନେବ । କିନ୍ତୁ ଭାଗ୍ୟକ୍ରମେ ଯେବେ ବୁଢ଼ୀ ହୋଇ ବଞ୍ଚନ୍ତି, ତେବେ ସେଇ ମାଉସୀ ଭଳି ହିଁ ସେମାନେ ବି ହୁଏତ ଘରର କର୍ତ୍ତ୍ରୀ ହେବେ । ସେତେବେଳେ—କିନ୍ତୁ ସଙ୍ଗେ ସଙ୍ଗେ ହିଁ ଦୀର୍ଘନିଃଶ୍ୱାସ ପକାଇଲେ । କଳ୍ପନା ସେମାନଙ୍କର ଏତେଦୂରକୁ ଗଲି ନାହିଁ, ଆଶା ରହିଁ ନିରାଶା ହିଁ ସେମାନଙ୍କର ଜୀବନରେ ବଡ଼ । ଖାଲି ସେତିକି ନୁହେଁ । ନିରାଶ ପରିଣାମ କଳ୍ପନା କରିବାକୁ ହିଁ ଏହି ମୁହୂର୍ତ୍ତିଟିରେ ବଡ଼ ଭଲ ଲାଗୁଅଛି ! ସେମାନେ ବି ଏଇମିତି ମରିବେ, ମାଉସୀ ବଞ୍ଚିରହିଥିବ ।

ସତ୍କାର ଶେଷ କରି ଫେରିଆସି ନିତାଇ ଦେଖିଲା, ମଇଁଷି ପରି ଲୋକଟା ବସନ୍ତଘରେ ଗାଦି ମାଡ଼ି ବସିଅଛି । ବସନ୍ତର ଜିନିଷପତ୍ରଗୁଡ଼ିକ ଏହାରି ଭିତରେ ଗୋଟିଏ ଜାଗାରେ ସ୍ତୂପୀକୃତ କରି ବନ୍ଧାହୋଇଗଲାଣି ।

ପୁଣି ଥରେ ନିତାଇ ଟିକିଏ ହସି ଘରର ପାଖକୋ ଗୋଟିଏ ମଉଳ ବିଗ୍ରହ ଚତାଗ୍ନିର ଉତ୍ତାପ-ଜର୍ଜର ପତ୍ରପଲ୍ଲବ ଦେହଟି ଗଡ଼ାଇଦେଲା ।

ସେ ଭାବୁଥିଲା ମରଣ କଥା—

ମରଣ କଣ ? ପୁରାଣରେ ପଢ଼ିଥିବା ମରଣ କଥା ତାହାର ମନେ ପଡ଼ିଲା । ମନୁଷ୍ୟର ଆୟୁ ଶେଷ ହେଲେ ଧର୍ମରାଜ ଯମ ତାହାଙ୍କର ଅନୁଚରଗଣଙ୍କୁ ଆଦେଶ ଦିଅନ୍ତି ସେହି ମନୁଷ୍ୟର ଆତ୍ମାଟିକୁ ନେଇଆସିବା ପାଇଁ । ଧର୍ମରାଜଙ୍କ ଅଦୃଶ୍ୟ ଅନୁଚରମାନେ ଆସି ମନୁଷ୍ୟର ଅଙ୍ଗୁଳିପ୍ରମାଣ ଆତ୍ମାକୁ ନେଇ ଯାଆନ୍ତି । ଧର୍ମରାଜଙ୍କ ବିଚାରାଳୟରେ ଧର୍ମରାଜ ତାହାର କର୍ମ ବିଚାର କରନ୍ତି, ତାହା ପରେ ସ୍ୱର୍ଗ ଅଥବା ନରକରେ ତାହାର ବାସସ୍ଥାନ ନିର୍ଦ୍ଦିଷ୍ଟ ହୋଇଯାଏ । ବିଭିନ୍ନ କର୍ମ ସକାଶେ ବିଭିନ୍ନ ପୁରସ୍କାର, ବିଭିନ୍ନ ଶାସ୍ତିର ବ୍ୟବସ୍ଥା ମଧ୍ୟ ସେ ପଢ଼ିଅଛି । ନିତାଇକୁ ବି ଦିନେ ସେଠାକୁ ଯିବାକୁ ପଡ଼ିବ । ବସନ୍ତ ସଙ୍ଗରେ ତାହାର କର୍ମର ହିଁ ବା ପାର୍ଥକ୍ୟଟା କେଉଁଠି ? ତାହା ସେ ଖୋଜି ପାଇଲା ନାହିଁ; ପରନ୍ତୁ ସେଥିରେ ସେ ଗୋଟାଏ ଆଶ୍ଚର୍ଯ୍ୟ ସାନ୍ତ୍ୱନା ପାଇଲା । କାରଣ ବସନ୍ତ ଯେଉଁଠାକୁ ଯାଇଅଛି, ସେହିଠାକୁଇ ସେ ଯିବ । ସେଇଟା ହୁଏତ ଅନନ୍ତ ନରକ ।

ହୋଇଥାଉ ! ସେ ଦିନ ତ ପୁଣି ଥରେ ତାହା ସହିତ ଦେଖାହେବ । କିନ୍ତୁ ସମସ୍ତ

ମନଟା ପୁଣି ହାୟ-ହାୟ କରିଉଠିଲା ; ଆଜି କୌଣସି ପ୍ରକାରେ ତା ମନ ଲାଗୁନାହିଁ । ତାହାର କୋଳ ଉପରେ ହିଁ ଯେ ବସନ୍ତ ଲେଉଟିପଡ଼ି ମରିଗଲା, ସେ ଯେ ନିଜ ହାତରେ ତାହାର ଦେହଟା ପୋଡ଼ି ପାଉଁଶ କରିଦେଇଛି କିଛି ସମୟ ଆଗରୁ । ଏବେ ଯେ ସାରା ପୃଥିବୀ ଭିତରେ ଆଉ ବସନ୍ତକୁ କେଉଁଠାରେ ଖୋଜି ପାଇହେବ ନାହିଁ ।

ଏଇ ଗୋଟିଏ କଥା ହିଁ ବାରମ୍ବାର ମନରେ ବୁଲୁଅଛି ।

ବସନ୍ତ ଚାଲିଗଲା । ପୃଥିବୀଟା ସାରା ଖୋଜିଲେ ବି ତାହାକୁ ପାଇହେବ ନାହିଁ । ସେଇ ବସନ୍ତ । ଚକ୍‌ଚକ୍ କ୍ଷୁର ଭଳି ମୁହଁରେ ହସ, ନିଆଁର ଶିଖା ଭଳି ତାପ, ସେଇମିତି ରଙ୍ଗ ସେଇମିତି ରୂପ । ବସନ୍ତକାଳର କାଞ୍ଚନଗଛ ପରି ହିଁ ବସନ୍ତର ବେଶ-ଭୂଷାର ଝାକଜମକ । ସେଇ ବସନ୍ତ ଚାଲିଗଲା । ଦେହର ଗହଣାଗୁଡ଼ା ପ୍ରୌଢ଼ା ଟାଣି ଖୋଲିନେଲା । ସେ ନିଜେ ତାହାର ଦେହଟା ନିଆଁକୁ ଟେକିଦେଲା, ବସନ୍ତ ଟିକିଏ ପ୍ରତିବାଦ ବି କଲା ନାହିଁ ।

ମରଣ ସତରେ ଅଦ୍ଭୁତ । ଗହଣା ଉପରେ ବସନ୍ତର କେତେ ମମତା । ସେଇ ଗହଣା ପ୍ରୌଢ଼ା ଖୋଲିନେଲା । ବସନ୍ତ ପଦେ କଥା ବି କହିଲା ନାହିଁ । ଦେହ ପାଇଁ ବସନ୍ତର କେତେ ଯତ୍ନ; ଟିକିଏ ମଇଳା ଲାଗିଲେ ସେ ଦଶଥର ପୋଛୁଥିବ । ଏତେ ଟିକିଏ ଯନ୍ତ୍ରଣା ତାକୁ ସହ୍ୟ ହୁଏନା । ସେଇ ଦେହଟା ନିଆଁରେ ପୋଡ଼ି ପାଉଁଶ ହୋଇଗଲା; କିନ୍ତୁ ତା ମୁହଁରେ ଏତେ ଟିକିଏ ବିକୃତି ହେଲା ନାହିଁ । ଦୁଃଖ କଷ୍ଟ, ଲୋଭ, ମୋହ ଏକା ମୁହୂର୍ତ୍ତିକେ ମରଣ ସବୁ ଶେଷ କରିଦେଲା ! ମରଣ ଅଦ୍ଭୁତ ! ରହି ରହି ତାହା ମନରେ ସେଇ ଗୀତର ପଦଗୁଡ଼ା ଗୁଣୁ ଗୁଣୁ କରି ଜାଗିଉଠିଲା—

"ଏଇ ଖେଦ ରହିଲା ମୋ ମନେ
ଭଲପାଇ ମେଣ୍ଟିଲାନି ଆଶା—ଅଣ୍ଟିଲାନି ଏ ଜୀବନେ
ହାୟ ! ଜୀବନ ଏତେ ଶ୍ରେଷ୍ଠ କମି
ଏ ଭୁବନେ ?"

ବସନ୍ତ କହିଥିଲା—କବିୟାଲ ! ତୁମର ଗୀତ ମୋ ଜୀବନରେ ଫଳିଯାଏ । ଏ ଗୀତ ତୁମେ କାହିଁକି ବାନ୍ଧିଲ କବିୟାଲ ? ଗୀତଟା ବସନ୍ତର ଜୀବନରେ ସତ୍ୟ ହୋଇଗଲା । ହାୟ ! ହାୟ ! ବସନ୍ତ କଣ ମରିକରି ଶାନ୍ତି ପାଇଛି ? ଏ ଜଗତରେ ଯେତେ ତାପ, ଯେତେ ଅତୃପ୍ତି ସବୁ କଣ ସେ ଜଗତରେ ଯାଇ ଥଣ୍ଡା ହୋଇଗଲା ? ଜୀବନରେ ଯାହା ମିଳେ ନାହିଁ, ମରଣରେ କଣ ତାହା ମିଳେ ? ସ୍ୱର ଗୁଣୁ ଗୁଣୁ ପୁଣି କରିଉଠିଲା—

"ଜୀବନେ ଯା ମିଳିଲା ନାହିଁ ମିଳିବ କି ହାୟ ତାହା ମରଣେ ?"

ମିଳେ ? ତାହାହିଁ ମିଳେ ? ବସନ୍ତ କଣ ମରଣ ପରେ ବି ବସନ୍ତ ହୋଇ ଜୀଇ ରହିଛି ? ଏ ଆକାଶରେ ଯେଉଁ ଚନ୍ଦ୍ର ବୁଡ଼ିବେ, ସେ ଚନ୍ଦ୍ର କଣ ସେଠିକା ଆକାଶରେ ଉଇଁ ? ଏ ଭୁବନରେ ଯେଉଁ ଫୁଲ୍ଟି ଝଡ଼ିପଡ଼େ, ସେ ଫୁଲ୍ କଣ ସେ ଭୁବନରେ ପାରିଜାତ ହୋଇ ଫୁଟିଉଠେ ? ଏ ଜୀବନରେ ଓ ଜଗତରେ ଯେତେ କାନ୍ଦ, ସେ କଣ ଅନାବିଲ ଆନନ୍ଦରେ ଖିଲ୍ଖିଲ୍ କରି ହସ ହୋଇ ବାଜିଉଠେ ସେପାରିରେ—ସେ ଜଗତରେ ? ବାଜିଉଠେ ? ବାଜିଉଠେ ?

> "ଏ ଭୁବନେ ବୁଡ଼ିଲା ଯେ ଚନ୍ଦ୍ର ସେ ଭୁବନେ ଉଇଁଲା କି ସେ ?
> ଏଠିକା ସଞ୍ଜେ ମଉଳିବା ଫୁଲ୍ ସେଠିକା ସକାଳେ ଫୁଟିଲା କି ସେ ?
> ଏ ଜୀବନର କାନ୍ଦ ଯେତେ—ହୁଏ କି ହସ ସେ ଜୀବନେ
> ହାୟ ! ଜୀବନ ଏତେ ଶ୍ରେଷ୍ଠ କାମ୍ୟ
>
> ଏ ଭୁବନେ ?"

ହଠାତ୍ ଗୋଟିଏ କଳହ କୋଳାହଳରେ ତାହାର ଗୀତର ତନ୍ମୟତା ଭାଙ୍ଗିଗଲା । ମନଟା ଛି-ଛି କରି ଉଠିଲା । ବାହାରେ ଦଳର ଲୋକଙ୍କ ଭିତରେ ପାଟିତୁଣ୍ଡ ଆରମ୍ଭ ହୋଇଯାଇଛି । ନିର୍ମଳା ଚିତ୍କାର କରୁଛି ତୀକ୍ଷ୍ଣ ସ୍ୱରରେ । ସେ ପଦାକୁ ଆସି ଛିଡ଼ା ହେଲା । କଥାଟା ଶୁଣି ସେ ଆହୁରି ମର୍ମାହତ ହେଲା । କଳିଟା ଲାଗିଛି ବସନ୍ତର ସ୍ଥାନ ପୂରଣ ଯୋଗ । ଛି ! ଛି ! ଛି !

ବସନ୍ତ ଆଜି ହିଁ ମରିଅଛି, ଦି'ପହରଯାକେ ଦେହଟା ବି ତାହାର ଥିଲା । ବର୍ତ୍ତମାନ ପ୍ରାୟ ସନ୍ଧ୍ୟା ହୋଇଅଛି । ଏହାରି ଭିତରେ ବସନ୍ତ ଦଳରୁ ନିଭିଗଲା ! ତାହାର ସ୍ଥାନ କିଏ ନେବ ସେହି ସମସ୍ୟା ଏଇଲାଗେ ପୂରଣ ନକଲେ ନଚଳେ ? ପ୍ରୌଢ଼ା ବସନ୍ତର ଜିନିଷପତ୍ର ନେଇ ନିଜ ଘରେ ପୂରାଇ ଖିଆପିଆର ବ୍ୟବସ୍ଥାରେ ବ୍ୟସ୍ତ । ଲଳିତା, ନିର୍ମଳା ଆଜି ନିଜେ ଖର୍ଚ୍ଚ ଦେଇ ମଦ କିଣି ପିଇବାକୁ ବସିଛନ୍ତି । ଏହାରି ଭିତରେ ବେହେଲ-ବାଦକ, ପାଳିଆ ଓ ଢୋଲ୍ଆଟା ଆଲୋଚନା କରୁଥିଲେ କେଉଁ ଝୁମରଦଳରେ ସେହି ଗୀତ-ନାଚ-ରୂପ-ଯୌବନରେ ଶ୍ରେଷ୍ଠ ଝିଅ କିଏ ଅଛି । ସର୍ବସମ୍ମତଭାବରେ 'ପ୍ରଭାତୀ' ନାମ୍ନୀ କିଏ ଜଣେ ତରୁଣୀର ନାମ ସ୍ୱୀକୃତ ଲାଭ କରିଅଛି । ଝିଅଟା କାଳେ ବସନ୍ତ ଅପେକ୍ଷା ଆହୁରି ଭଲ । ଏହି କାରଣରୁ ଯେ ତାହାର ବୟସ ବସନ୍ତଠାରୁ ଅନେକ କମ୍ । ପାଳିଆ କହୁଛି, ତାକୁହିଁ ଆଣିବା ଉଚିତ । ତାହାଙ୍କୁ କୋଡ଼ିଏ ତିରିଶ ବା ପଚାଶ

ଟଙ୍କା ଯାଚକ ଲାଗିଲେ ତାହା ଦେଇକରି ମଧ୍ୟ ତାହାଙ୍କୁ ଦଳକୁ ଆଣିବା ଉଚିତ । ତା’ ନହେଲେ ଏପରି ହବ ଯେ ଏ ଦଳଟା ବି ଅଚଳ ହୋଇଯିବ ।

ଢୋଲଆଟା ଏହି କଥାଟେ କହୁଅଛି—ଚୂଡ଼ା ରସପୂର୍ଣ୍ଣ ନହେଲେ ତଣ୍ଟି ଦେଇ ଖସିବ ନାହିଁ । କେବଳ କବିୟାଳର ଗୀତ କେହି ଶୁଣିବେ ନାହିଁ । ଲଳିତା, ନିର୍ମଳା ପ୍ରଧାନ ନର୍ତ୍ତକୀ ହୋଇଗଲେ ଆଖି ବୁଜିକରି ଗୀତ ଶୁଣିବାକୁ ହେବ ।

ଲଳିତା ନିର୍ମଳା ଫସ୍ କରି ଜଳିଉଠି ଝଗଡ଼ା ଆରମ୍ଭ କରି ଦେଇଛନ୍ତି । ଏକେତ ରୂପ-ଯୌବନା ନାରୀ; ତାହା ଉପରେ ମଦନଶା । ରୂପର ନିନ୍ଦା ଶୁଣି ଗାଳିଗୁଲଜରେ ସ୍ଥାନଟା ଅସହନୀୟ କରି ପକାଇଛନ୍ତି ।

ନିତାଇକୁ ଭଲ ଲାଗିଲା ନାହିଁ । ସେ ଧୀରେ ଧୀରେ ଅଲକ୍ଷିତରେ ଘରୁ ବାହାରିଗଲା । ଲକ୍ଷ୍ୟହୀନ ଭାବରେ ଚାଲି ଚାଲି କେତେବେଳେ ଆସି ଠିଆହେଲା ଗଙ୍ଗାକୂଳରେ, ଶ୍ମଶାନରେ । ସେହିଠାରେ ସେ ବସିଲା ।

ଆଗରେ ଜନଶୂନ୍ୟ ଶ୍ମଶାନ । ଗୋଟାଏ ଚିତାରୁ ଅଳ୍ପ ଅଳ୍ପ ଧୂଆଁ ଉଠୁଅଛି । ଏଠି-ସେଠି ପାଉଁଶର କୁଢ଼ । ଗଙ୍ଗା ସେପାରି ପୂର୍ବଦିଗରେ ସନ୍ଧ୍ୟା ହୋଇ ଆସିଛି । ଦଗ୍ଧ ଦେହର ଗନ୍ଧରେ ଏଠାକାର ପବନ ଭାରି । ଏହାରି ଭିତରେ ଚୁପ୍‌କରି ସେ ବସି-ରହିଲା ।

ଏତେ ପାଖରୁ ଏପରିଭାବରେ ଏକୁଟିଆ ବସି ଦୁ’ ଆଖିଭରି ନିତାଇ ଜୀବନର [illegible] କେବେ ଦେଖିନାହିଁ । ଜୀବନର ସେପାରିରେ ମୃତ୍ୟୁପୁରୀ; ମରଣ ସେଠାରେ [illegible] ।

ଯାହାରେ, ଗାଆଁରେ ମଣିଷ ମରିଛି, ସେ ଶୁଣିଅଛି । ମରଣ ସମ୍ବନ୍ଧରେ ସବୁ ମଣିଷ ଭଳି ଗୋଟାଏ ଭୟ—ଗୋଟାଏ ସକରୁଣ ଅସହାୟ ଦୁଃଖ ହିଁ ଏତେ କାଳ ତାହାର ଥିଲା । ଏଇ ପ୍ରଥମ ଥର ବସନ୍ତ ତାହାର କୋଳଉପରେ ମରି ମରଣ ସଙ୍ଗରେ ଗୋଟାଏ ପ୍ରତ୍ୟକ୍ଷ ପରିଚୟ କରାଇ ଦେଇଗଲା । ମନେ ହେଉଛି, ବସନ୍ତ ହାତରେ କପାଳରେ ହାତ ରଖି ସେ ଯେପରି ମରଣର ଛୁଆଁ ଟି ଅନୁଭବ କରିପାରୁଥିଲା । କପାଳରେ ହାତ ରଖି କେତେ ଥର ସେ ଚମକି ଉଠିଛି । ଏପରି ଛୁଆଁ ଲାଗିବାପରି ଗୋଟାଏ ସ୍ପର୍ଶ ଲାଗୁଥିଲା ଯେ ନଚମକି ରହିପାରୁ ନଥିଲା । ଆଉ କାଲି ରାତିରେ ତ ମରଣ ଯେପରି ବସନ୍ତକୁ ନେଇ ତାହା ସଙ୍ଗେ ଭଜାଓଟରା କରିଗଲା ।

ବସନ୍ତ କିନ୍ତୁ ମରିବାକୁ ଡରନାହିଁ; ତେବେ ବଞ୍ଚିବାକୁ ତାର ମନ ଥିଲା । ଅନେକ ଗୋପନ ଇଚ୍ଛା ତାହାର ଥିଲା । ହଠାତ୍ ମନେ ହେଲା—ବସନ୍ତର ଆତ୍ମା ଯଦି— । ଦେହ ଘରସଂସାର ସ୍ୱଜନ ପୃଥିବୀ ହରାଇ ଅସହାୟ୍ୟ ମଣିଷର ଆତ୍ମା ତ ଦେହର ମମତାରୁ ଅନେକ ସମୟରେ କାନ୍ଦି କାନ୍ଦି ବୁଲେ । ଗଙ୍ଗାର ନିଶୀଥରେ ବସନ୍ତ ଯଦି ଆସେ ଚିତା ପାଖକୁ ତାହାର ଅନେକ ଯତ୍ନକର ଅନେକ ରୂପର ଦେହଟାର ସନ୍ଧାନରେ ?— ଗ୍ରୁଢଟା ତାହାର ସ୍ପନ୍ଦିତ ହୋଇଉଠିଲା ।

ସେ ଏକବାରେ ଆସି ବସିଲା—ଶ୍ମଶାନ ଭିତରେ ବସନ୍ତର ଚିତା ପାଖଟାରେ ! ରାତି ସେତେବେଳକୁ ମାତ୍ର ପ୍ରଥମ ପ୍ରହର । ସବୁ ସ୍ତବ୍ଧ । ସବୁ ଅନ୍ଧକାର । ଖାଲି ନିଶା ଗର୍ଜୁଛି । ସହରର ଆଲୁଅ, କୋଳାହଳ ଅନେକ ଦୂରରେ । ନିତାଇ ଚିତା ପାଖରେ ବସି ମନେ ମନେ କହିଲା—ଆସ ବସନ୍ତ !···ବସନ୍ତ ଆସ !···ବସନ୍ତ ଆସ !

ବସନ୍ତ କିନ୍ତୁ ଆସିଲା ନାହିଁ ।

ରାତସାରା ଶ୍ମଶାନରେ ଶିଆଳ, ଶାଗୁଣା, କୁକୁର ପ୍ରଭୃତି ଶ୍ମଶାନବାସୀଙ୍କ ଭିତରେ କଟାଇଦେଲା । ସେମାନେ ଗୋଟି ଗୋଟି କରି ଆସିଲେ, କଳି କଲେ, ଖେଳିଲେ, ବୁଲିଗଲେ, ଗଙ୍ଗାଜଳରେ କେତେ ଜଳଚର ସନ୍ତରଣରେ ଡେଇଁଲେ; କିନ୍ତୁ ବସନ୍ତର ଦେଖା ମିଳିଲା ନାହିଁ । ରାତିସାରା ବାଲିଚଡ଼ାର କଡ଼କୁ ଲାଗି ଗଙ୍ଗା କଳକଳ କରି ବୋହିଗଲା । କଳକଳ-କୁଳୁକୁଳୁ ଶବ୍ଦ କେତେବେଳେ ଉଚ୍ଚ କେତେବେଳେ ମୃଦୁ; ଆକାଶରେ ଦୁଇ ତିନଟା ତାରା ଖସିଗଲେ; ଗଙ୍ଗା ସେପାରି ସଡ଼କଟାରେ କେତେ ଗଡ଼ଗଡ଼ି ଗଲେ; ଗାଡ଼ିତଳେ ଝୁଲୁଥିବା ଆଲୁଅ ଝଲି ଝଲି ଗୋଟାଏ ଆଲୁଅ ତିନି ଚାରିଟା ପରି ମନେ ହେଲା; ସାରା ରାତି କୁଳୁକୁଳୁଆଏ କଳିଲେ, କାନ୍ଦିଲେ; ଗଙ୍ଗା-କୂଳରେ ଜଙ୍ଗଲରୁ ବାହାରି ଆସି ଶିଆଳଗୁଡ଼ା ବାଲିଚଡ଼ା ଉପରେ ଦଉଡ଼ାଦଉଡ଼ି କରି ବୁଲିଲେ; ଗଛରେ ଶାଗୁଣା କାନ୍ଦିଲେ, ଚିତା ପାଖଟାରେ କେଇଟା ବସିରହିଲେ ଉଦାସୀ ଭଳି । ନିତାଇ ବସି ସବୁ ଦେଖିଲା । ମୁହୂର୍ତ୍ତକ ଲାଗି କୌଣସି କିଛି ଭିତରେ ବସନ୍ତର ଆଭାସ ମିଳିଲା ନାହିଁ । ବସନ୍ତ ବୋଲି କାହାକୁ ଯେବେ ଭ୍ରମ ମଧ୍ୟ ହେଲା ନାହିଁ । ଆକାଶର ତାରାଗୁଡ଼ା ପୂର୍ବରୁ ପଶ୍ଚିମକୁ ଖସିଆସିଲେ— ବଡ଼ ଦାଆଟା ମୋଡ଼ି ହୋଇ ବୁଲିଗଲା, ବଗୁରି ଲଞ୍ଜଟା ଗଙ୍ଗାର ପଶ୍ଚିମ କୂଳର ଜଙ୍ଗଲ ଭିତରେ ବୁଡ଼ିଗଲା; ପୂର୍ବ ଆକାଶରେ ଶୁକତାରା ଉଇଁଲା । ନିତାଇ ଚୁପ୍ କରି ବସିରହିଲା ।

ଗଙ୍ଗାର ପୂର୍ବପାରିର ଡାଲି ଚଡ଼ାଟା ପ୍ରାୟ କୋଶେ ଖଣ୍ଡେ ଚଉଡ଼ା । ତା ସେପଟେ ଧାଡ଼ି ଧାଡ଼ି ଗାଆଁ । ଗାଆଁର ଗଛବୃକ୍ଷଗୁଡ଼ାକର ମୁଣ୍ଡ ଉପରେ ଆକାଶରେ କ୍ରମେ ଫିକା ରଙ୍ଗ ଆସିଲା, କଳ-କଳ-କଳ କରି ଚଢ଼େଇଗୁଡ଼ା ଥରେ ବୋଲି କରି ଡାକ

ଉଠିଲେ—ରାତ୍ରି ଶେଷ ହୋଇ ଆସୁଅଛି । ନାଃ, ବସନ୍ତ ଦୁନିଆଁରୁ ପୋଛିହୋଇ ଯାଇଛି । ହଠାତ୍ ତାହାର **ଆଖି ଫାଟି** ପାଣି ଆସିଲା । ସେ ଆଖି ବନ୍ଦ କରି ଆତ୍ମସମ୍ବରଣ କରିବାକୁ ଚେଷ୍ଟା କଲା । ସଙ୍ଗେ ସଙ୍ଗେ ଗୋଟାଏ ଆଶ୍ଚର୍ଯ୍ୟ ଘଟଣା ଘଟିଲା । ଖୋଲା ଆଖିଆଗରେ ଯେଉଁ ବସନ୍ତ କୋଉଠି ନଥିଲା, ନିତାଇ ଆଖି ବୁଜିବା ମାତ୍ରେ ସେଇ ବସନ୍ତ ସ୍ପଷ୍ଟ ହୋଇ ମନ ଭିତରେ ଭାସିଉଠିଲା । ମନେ ହେଲା, ବସନ୍ତ ଯେପରି ତାହାର ଆଗରେ ଠିଆହୋଇଛି । —ବସନ୍ତ ! ବସନ୍ତ !

ଆଖି ଖୋଲିବା ମାତ୍ରେ ନିତାଇର ଭ୍ରମ ଭାଙ୍ଗିଗଲା । ଏହାରି ଭିତରେ ଆକାଶର ଅନ୍ଧକାର ଆହୁରି କଟିଯାଇଅଛି । ନିତାଇ ଆଗରେ ଗଙ୍ଗା, ଶ୍ମଶାନ, ଗଛବୃକ୍ଷ, ଚିତାର ଅଙ୍ଗାର, କୁକୁରପଲ ବି ଦେଖାଯାଉଛନ୍ତି । ଉଦାସ ମନରେ ପୁଣି ସେ ଆଖି ବୁଜିଲା । ଅଦ୍ଭୁତ ! ଏ କଣ ! ପୁଣି ବସନ୍ତକୁ ସେ ଦେଖିପାରୁଅଛି । ବସନ୍ତ ଆସିଅଛି । ଆଖି ବନ୍ଦ କଲେଇ ସେ ଦେଖୁଅଛି ସ୍ପଷ୍ଟ ବସନ୍ତର ଛବି । ଛବି ନୁହେଁ; ଯେପରି ସତସତକା ବସନ୍ତ—ସେ ହସୁଅଛି, ସେ କଥା କହୁଅଛି । ପୁରୁଣା କଥାର ପୁନରାବୃତ୍ତି ନୁହେଁ, ବସନ୍ତ ନୂଆ ଭଙ୍ଗିରେ କେତେ ନୂଆ କଥା କହୁଅଛି । ନୂଆ ବେଶଭୂଷାରେ ସଜ ହୋଇ ନୂଆ ରୂପରେ ଦେଖାଦେଉଅଛି ।

ନିତାଇ ଖୁସି ହୋଇଉଠିଲା । ରହି ରହି ନୂଆ ପଦ ତା ମନରେ ଜାଗି-ଉଠିଲା—

"ମରଣ ତମର ହାରି ହେଲା ଯେ ମନ ସାଙ୍ଗରେ
ଭାବିଲ ଯାରେ କାଢ଼ି ନେଇଛ ସେ ଯେ ଅଛି ମନ ଭିତରେ
ମନ ଭିତରେ ବସିଛି ଭଲେ
ମୋ ମନ ଭଲ ପାଇବାର କଦମ୍ବମୂଳେ
ସ୍ମୃତି ଯୁଗରେଇ ବାଏ ସେଇଠି ବଇଁଶୀବାଲି ବଇଁଶୀ ତାର
ଆଉ ବିରହର କାହିଁକି ପାଲି
କେବଳ ଜ୍ୱାଳା
ତକଣ ଜଳା ଦିବସ ନିଶି ତା ରାଧାକୁ ଝୁରେ ।"

ମନଟି ତାହାର ପରିପୂର୍ଣ୍ଣ ହୋଇଉଠିଲା । ଏ ଯେ କେମିତି ହେଲା ତାହା ସେ ଜାଣେନା; ତେବେ ହେଲା ତ । ବସନ୍ତ ତାର ହଜିନାହିଁ । ପରିପୂର୍ଣ୍ଣ ମନରେ ସେ ଗଙ୍ଗାଘାଟକୁ ଆସି ମୁହଁହାତ ମୁଣ୍ଡ ଧୋଇଲା, ତାପରେ ଫେରିଲା ବସାଆଡ଼କୁ ।

ବସାରେ ସେତେବେଳକୁ ବନ୍ଧାବନ୍ଧର ତୋଡ-ଯୋଡ଼ ପଡ଼ିଗଲାଣି । ତାହାକୁ

ଦେଖି ସମସ୍ତେ ହୋ-ହା କରି ଉଠିଲେ—ହେଇ ତ ! ହେଇ ତ !

ପାଳିଆଟି ରହସ୍ୟ କରି କହିଲା—ମୁଁ କହିଲି ଓସ୍ତାଦ୍ ବୋଧେ ବଇଷ୍ଟମ ହୋଇ ଚାଲିଗଲା ।

ନିତାଇ ମୃଦୁ ହସି ଢଗ-ସୁରରେ ତାହାର ପୁରୁଣା ଗୋଟିଏ ଗୀତର ଦୁଇଟି ପଦ ଆବୃତ୍ତି କରିଦେଲା—

"ପରାଣେ ବନ୍ଧେନ ତା ବନ୍ଧୁନେ, ଭୁବନେ ଭୁବନେ ରହିବ କେମନେ
ମୁଁ ଚାଲିଯିବ ସେଇ ପଥେ, ଯେଉଁ ପଥ ଲାଗେ ଭଲ ନୟନେ !"

ଲଳିତା ପିକ ପକାଇ କହିଲା—କଣ କହୁଚ ଭଣେଇ ! ଦେହରେ ତେବେ ତମର ପାଉଁଶ କାହିଁ ?

ନିର୍ମଳା କନ୍ଥୁ ଆସି ସସ୍ନେହରେ ତାକୁ ସମ୍ଭାଷଣ କରି କହିଲା—ବସ ମ ଭାଇ, ମୁଁ ଚାହା କରି ଆଣେ ।

ଦାରଣାଦାରଟି ଆସି ମୃଦୁସ୍ୱରରେ କହିଲା—କାଲି ଥିଲ କୁଆଡ଼େ କୁହ ତ ? କାହା ଘରେ ? ସେ କେମିତିକା ବା ? ଅର୍ଥାତ୍ ତାହାର ଧାରଣା ନିତାଇ କାଲି ରାତିରେ ବସନ୍ତକୁ ଭୁଲିବା ସକାଶେ ସହରର କେଉଁ ବେଶ୍ୟାଘରେ ଯାଇ ଆଶ୍ରୟ ନେଇଥିଲା ।

ବେହେଲଦାର ଧମକ ଦେଲା—ରହ ନେ, ରହ ତୁ । ଯେମିତି ତୁ ନିଜେ, ସେମିତି ଦେଖୁ ସମସ୍ତଙ୍କି । ବସ ଓସ୍ତାଦ୍, ବସ । ନିତାଇ ହସିଦେଇ ବସିଲା ।

ପ୍ରୌଢ଼ା ଏଯାକେ କାମରେ ବ୍ୟସ୍ତ ଥିଲା । ଜଣେ ପୁରୁଣା ଲୁଗାର ବ୍ୟବସାୟୀ ସାଙ୍ଗରେ ବସନ୍ତର ଲୁଗାପଟା ବିକିବାର ବନ୍ଦୋବସ୍ତ କରୁଥିଲା । ଦରଦସ୍ତୁର ଶେଷ କରି ସେ ପଦାକୁ ଆସିଲା । ନିତାଇକୁ କହିଲା—ଆରେ ବାପ, ଏଇ ପହରରେ ଉଠିଯାଉଛୁ ଏଠୁ । ଭଲକରି ତମ ଜିନିଷପତ୍ରର ବନ୍ଧାବନ୍ଧି କରିନିଅ ।

ନିର୍ମଳା ଗୋଟିଏ ଗିନାରେ ତେଲ୍‌ଦିଆ ମୁଢ଼ି ଥୋଇଦେଇ କହିଲା—ଚାହାପାଣି ଫୁଟିଲାଣି, ଗଣ୍ଡାଏ ମୁଢ଼ି ଖାଇଦିଅକ; କାଲି ତ ରାତିସାରା ଖାଇନ ।

ତା ମୁହଁକୁ ଚାହିଁ ନିତାଇ କହିଲା—ଭଉଣୀ ନଇଲେ ଭାଇର ଦୁଃଖ କିଏ ବୁଝିବ ?

—ଆଉ ଏଇ ମାଉସୀ-ଝିଅ କଥାଟା ବୋଧେ ଭୁଲିଗଲ କି କଣ ବାପା ? ପ୍ରୌଢ଼ା ଆସି ଗୋଟିଏ ମଦ ବୋତଲ, ଗୋଟେ ଦିଟା ଗତ ରାତିର ସିଝା ଅଣ୍ଡା, କିଛି ମାଂସ ଆଣି ଥୋଇଲା ।—କାଲି ରାତିଠୁଁ ମଗେଇ ରଖିଛୁ । ଖାଅ, ଦେହରେ ବଳ ଆସିବ ।

ନିତାଇ ତା ମୁହଁକୁ ଚାହିଁ ମୃଦୁ ହସି କହିଲା—ମାଆ-ମାଉସୀଙ୍କୁ କଣ କିଏ ଭୁଲେ

ନା ଭୁଲିପାରେ ? ଚିରଦିନ ତମ କଥା ମନେଥିବ ମାଉସୀ !

ପ୍ରୌଢ଼ା ହସି କହିଲା—ତମେ ଖାଉଥାଅ, ମୁଁ ଆସୁଚି ।

ପ୍ରୌଢ଼ା ଚାଲିଯିବା ମାତ୍ରେ ଢୋଲଆଟା ଆହୁରି ପାଖକୁ ଆସି ବସିଲା । ନିତାଇ ହସି କହିଲା—ନିଅ, ନିଅ, ଢାଳିନିଅ, ଆରମ୍ଭ କର ।

କୃତାର୍ଥ ହୋଇ ମଦ ଢାଳୁ ଢାଳୁ ଚୁପ୍‌ଚାପ୍ କରି କହିଲା—ବସନ୍ତର ଲୁଗାପଟା ବିକିରି ହୋଇଗଲା ।

ନିତାଇ କିଛି ଜବାବ ଦେଲା ନାହିଁ ।

ଅଭିଯୋଗ କରି ଢୋଲଆଟା ପୁଣି କହିଲା—ଗହଣା ଦ'ଟା-ଗୋଟା ହାତରେ ତୋଲି ନେଲାନି କାହିଁକି କହନ୍ତ ? ଏମିତି ମୂର୍ଖାମି କିଏ କରେ, ଛି !

ନିତାଇ ବୋତଲ ଦେଖାଇ ବେହେଲାଦାର ଓ ପାଳିଆଙ୍କୁ କହିଲା—ଆସ, ନିଅ ।

ସେମାନେ ବି ଏଥର ଅପରିମେୟ ସହାନୁଭୂତି ସହିତ ପାଖକୁ ଆସି ଲାଗିବସିଲେ । କିଛି ସମୟ ପରେ ହିଁ ବେହେଲାଦାର ସଚକିତ ହୋଇ କହିଲା—ହେଇ । ବୋତଲ ତ ଶେଷ ହୋଇଗଲା ! ତମେ ? ତମେ ତ କାହିଁ—

ନିତାଇ ହସିକରି କହିଲା—ତା ହଉ, ଦରକାର ନାହିଁ ।

—ତମେ ପିଇବନି ?

—ନାଃ ।

ସମସ୍ତେ ଅବାକ୍ ହୋଇଗଲେ ।

ନିତାଇ ବେହେଲାଦାରକୁ କହିଲା—ତମ ପାଖରୁ ଗୋଟିଏ ଜିନିଷ ଶିଖିବାର ସଉକ ଥିଲା । ରାତିରେ ବେହେଲାରେ ତମେ ଯେଉଁ ସୁରଟି ବଜାଅ, ସେଇ ସୁରଟି ବେହେଲାରେ ଉଠେଇବାକୁ ଶିଖିବି । ଗାଇପାରେ, ବେହେଲାରେ ଶିଖିବି ।

ବେହେଲାଦାର କହିଲା—ନିଶ୍ଚୟ । ତମକୁ ଶିଖାଇବନି ଓସ୍ତାଦ୍ ! ଦେଖିବ ! ତିନି ଦିନରେ ଶିଖେଇଦେବି ।

ନିତାଇ ହସି କହିଲା—ତିନିଦିନ ଆଉ ତୁମେ ଏବେ ପାଇବ କୋଉଠୁ ?

—କାହିଁ ? ସବିସ୍ମୟରେ ପ୍ରଶ୍ନଟା କଲା ପାଳିଆ । ବେହେଲାଦାର ସ୍ଥିରଦୃଷ୍ଟିରେ ନିତାଇ ମୁହଁକୁ ଅନାଇ ରହିଲା । ସେ ଅନ୍ଦାଜ କରିନେଲା ।

ନିତାଇ ହସି କହିଲା—ଆଜିଇ ମୁଁ ଯିବି ।

—ଆମେସବୁ ବି ତ ଯିବୁ । ତୁମେ—

ପାଳିଆ ମୁହଁ ଉପରେ ହାତ ଦେଇ ବେହେଲାଦାର କହିଲା—ରହ ଟିକେ, ରହ ।

ନିତାଇ କିନ୍ତୁ ପାଳିଆର କଥା ଧରି ହିଁ ଜବାବ୍ ଦେଲା—ହଁ ଯିବା ସମସ୍ତେ,

ତମେମାନେ ଗୋଟେ ବାଟରେ, ମୁଁ ଆଉ ଗୋଟେ ବାଟରେ ।

ବେହେଲଦାର ତାର ହାତଟି ଚପି ଧରିଲା, ଖାଲି କହିଲା—ଓସ୍ତାଦ୍ !

ନତାଇ ଟିକିଏ ଚୁପ୍‌କରି ରହିଲା, କଥାର ଜବାବ ଦେଲାନି । ଟିକିଏ ଚୁପ୍‌କରି ରହି ବେଣ୍ କଣ୍ଠ ଖୋଲି ଗୀତ ଧରିଲା, ମନକୁ ନୂଆ ପଦ ଆସିଥିଲା—

"ବସନ୍ତ ଯେ ଚାଲିଗଲା ହାୟ,
କଳା-କୋକିଲ ଏବେ କେମନେ ଗୀତ ଗାଏ
କହ କେମନେ ଏଠି ରହେ ?"

ହଠାତ୍ ବେହେଲଦାର ବେହେଲଟା ଟାଣିନେଇ କହିଲା—ଶୁଣ ଓସ୍ତାଦ୍ ! ଶୁଣ, ସେଇ ସୁର ତମକୁ ଶୁଣାଇବି, ଶୁଣ । ଆସିଚ ।

ସେ କାଠି ଟାଣିଲା—ଲମ୍ବା ଟଣା ସୁର୍ । ସେଇ ସୁର୍ !

ଏହାରି ଭିତରେ ଆସି ହାଜର ହେଲା ମାଉସୀ ।

—ବାପା !

ନତାଇ ହାତ ଠେକି ଇସାରାରେ ଜଣାଇଲା—ଏଇଲା ନୁହେଁ, ଟିକିଏ ପରେ । କିନ୍ତୁ ବେହେଲଦାର ବନ୍ଦ କରିଦେଲା । ସେ ମାଉସୀର ମୁହଁ ଦେଖି ବନ୍ଦ କରିଦେଇଛି ।

ମାଉସୀ କହିଲା—ଏ କଣ ଶୁଣୁଚି ବାପା ?

—କଣ ମାଉସୀ ?

—ତୁମେ— ? ତୁମେ ଚାଲିଯିବ ? ଆମ ସାଙ୍ଗରେ ଯିବନି ?

—ନା ମାଉସୀ । ଖେଳର ବାଜିଏ ଶେଷ ହେଲା । ଏଥର ନୂଆ ବାଜି ।

—ଅନ୍ୟ ଦଳରେ ?

—ନା ମାଉସୀ । ଏଥର ଚାଲିବାର ବାଜି । ଏଥର ବାଟେ ବାଟେ ।

ପ୍ରୌଢ଼ା ଅନେକ ବୁଝାଇଲା; ଅନେକ ପ୍ରଲୋଭନ ଦେଖାଇଲା । ବସନ୍ତର ଗହଣା ଲୁଗାପଟାର ଦାମର ଅଂଶ ବି ଦେବାକୁ ଚାହିଁଲା । ଆହୁରି କହିଲା—ବସନଠାରୁ ଭଲ ନୋକ ମୁଁ ଦଳକୁ ଆଣୁଚି ବାପା ! ମୁଁ କଥା ଦଉଚି, ତମରି ପାଖରେ ସେ ରହିବ ।

ନତାଇ କହିଲା—ନା ମାଉସୀ, ଆଉ ନୁହେଁ ।

ନିର୍ମଳା କାନ୍ଦିଲା ।

ନିତାଇ ବି ଥରେ ଆଖି ପୋଛି କହିଲା—ନା ଭଉଣୀ, ତୁ କାନ୍ଦନା, ତୁ କାନ୍ଦିଲେ ମୁଁ କଷ୍ଟ ପାଇବି ।

ବେହେଲାଦାର କହିଲା—ତମେ କଣ ବଇରାଗୀ ହବ ଓସ୍ତାଦ୍ ?

ନିତାଇ ଏ ପ୍ରଶ୍ନର ଜବାବରେ ତାହା ଆଡ଼କୁ ସ୍ଥିରଦୃଷ୍ଟିରେ ଅନାଇଁ ରହିଲା ! ଠିକ୍ କଥା ତ । ବସନ୍ତ ସାଙ୍ଗରେ ସେ ଗଣ୍ଠି ବାନ୍ଧିଥିଲା, ସେ ଗଣ୍ଠି ଖୋଲିଯାଇଛି ! ବସନ୍ତ ଆଜି ତାକୁ ମୁକ୍ତି ଦେଇଛି । ଏଥର ଗୋଟାଏ ନୂଆ ଡାକ ଯେମିତି ସେ ଶୁଣିଛି—ପଥେ ପଥେ ଚାଲ ମୁସାଫିର୍ । ବେହେଲାଦାରର ପ୍ରଶ୍ନରେ ତାହା ମନରେ ଅକସ୍ମାତ୍ ସୁରଟି ବାଜିଉଠିଲା । —ବଇରାଗୀ ?

ବୈରାଗ୍ୟ ହିଁ ତାକୁ ଭଲ ଲାଗିଲା ।

## ଏକୋଇଶି

ଝୁମୁରିଆଦଳ ଧରିଲା ଗାଆଁ ରାସ୍ତା ।

ନିତାଇ କେଉଁ ବାଟରେ କୁଆଡ଼କୁ ଯିବ, ତାହା ଠିକ୍ କରିନାହିଁ । ତେବେ ସେଇ ଦଳଟି ସାଙ୍ଗରେ ରହିବ ନାହିଁ, ତାହା ଠିକ୍ । ସେଇଯୋଗୁଁ ଦଳର ବନ୍ଧନ ଛଡ଼ାଇବାକୁ ଅନ୍ୟ ଗୋଟିଏ ରାସ୍ତା ଧରିଲା । କଟୱାରୁ ଛୋଟ ଲାଇନ୍ ଧରି ଏମାନେ ଚାଲିଲେ ମଲ୍ଲାରପୁର ଆଡ଼କୁ । ନିତାଇ ବଡ଼ ଲାଇନ୍ ଧରି ଉତ୍ତରମୁଖୀ ଚାଲିଲା । ଶେଷ ମୁହୂର୍ତ୍ତରେ ଠିକ୍ କରିପକାଇଲା, ସେ କାଶୀ ଯିବ ।

ନିର୍ମଳା ଖୁବ୍ କାନ୍ଦିଲା । ଝିଅଟା ତାହାକୁ ଭାଇ ଡାକୁଥିଲା । ଭାଇ ବୋଲି ନିତାଇ ସକାଶେ କାନ୍ଦିବାକୁ ତାହାର ସଙ୍କୋଚର କୌଣସି କାରଣ ନଥିଲା ।

ଶେଷ ମୁହୂର୍ତ୍ତରେ ଲଳିତା ବି କାନ୍ଦିଲା । କହିଲା—ଜୋଇଁ, ସତରେ ଛାଡ଼ିଯାଉଚ !

ପ୍ରୌଢ଼ା ବର୍ତ୍ତମାନର ଆଶା ଛାଡ଼ି ମଧ୍ୟ ଭବିଷ୍ୟତର ଆଶା ଛାଡ଼ିନାହିଁ । ସେ କହିଲା—ଚିରକାଳ ତ ମଣିଷର ମନ ବଇରାଗୀ ହୋଇ ରହିବନି ବାପା ! ମନ ଦିନେହେଲେ ବଦଳିବ । ପୁଣି ଆଖିରେ ରଙ୍ଗ ଧରିବ । ଫେରି ବି ଆସିବ । ସେତେବେଳେ ଯେମିତି ମାଉସୀକି ଭୁଲନା । ମୋର ଦଳକୁଇ ଆସିବ, ହେଲା ?

ବେଡ଼େହେଲଦାର ମ୍ଳାନ ହସ ହସି କହିଲା—ଆଚ୍ଛା ।

ମଇଁଷିପରି ଲୋକଟା ବି ପଦେ କହିଲା—ଚାଲିଲ ? ଏଁ— । ଟିକିଏ ଚୁପ୍ କରି ରହି ପୁଣି କହିଲା—ସନ୍ନ୍ୟାସୀ ହେଲେ ବି କଷ୍ଟ ଖୁବ୍ । ଭିକ ମାଗି ପେଟ ପୂରେନା —ତା ନହେଲେ—ବେଶ୍, ହଉ ଆସ ତା ହେଲେ ।

ସେମାନେ ଯିବେ ଗ୍ରେଟ ଲାଇନ୍‌ର ଟ୍ରେନ୍‌ରେ—ଯେଉଁ ଲାଇନ୍ ଉପରେ ନିତାଇର ନିଜର ଘର । ସେଇ ଲାଇନ୍‌ର ଟ୍ରେନ୍‌ରେଇ ନିତାଇ ଆସିଥିଲା ଗାଆଁ ଛାଡ଼ି, ସେଇ ଗ୍ରେଟ ଗାଡ଼ିରେଇ ଚଢ଼ିକରି ମାଉସୀ କହିଲା—ଆସ ବାପା, ଏଇ ଗାଡ଼ିରେଇ ଚଢ଼ିଯା । ଏଇ ଲାଇନରେ ତ ଘର । ମନ ଖରାପ ହେଉଛି; ଘରକୁ ଫେରିଚାଲ ବାପା !

ଘର । ନିତାଇ ଚମକିପଡ଼ିଲା । ଘର ! ଷ୍ଟେସନ ! ସେଇ କୃଷ୍ଣଚୂଡ଼ାଗଛ ! ସେଇ ରେଲ ଲାଇନ୍‌ର ବାଙ୍କ ! ସେଇ ସ୍ୱର୍ଣ୍ଣଶୀର୍ଷବିନ୍ଦୁ କାଶତଣ୍ଡୀ ଫୁଲ । ସୁନା ରଙ୍ଗର ଚକଚକ ଚାଲ ମୁଣ୍ଡେଇ ଖାରଧୁଆ ମୋଟା ଅଣଓସାରି ଲୁଗା ପିନ୍ଧା ଅତି କୋମଳ କଳା ଝିଅଟି ! ସେଇ ତାର ଠାକୁରଝୀ ! ଠାକୁରଝୀ ! ସଙ୍ଗେ ସଙ୍ଗେ ମନେ ପଡ଼ିଲା ସେଇ କେତେ ଦିନର ପୁରୁଣା ଗୀତ—

"କଳା ଯେବେ ମନ୍ଦ ତେବେ କେଶ ପାଚିଲେ କାନ୍ଦ କିଆଁ ?
କଳା କେଶେ ଦେଖିଛ କି ରଙ୍ଗ ଫୁଲ କମିଆଁ ?"

ନିତାଇ ମୁହଁରେ ହସର ରେଖା ଦେଖାଗଲା । ଅଦ୍ଭୁତ ହସ । କେତେ କଥା ମନେ ପଡ଼ୁଅଛି । କେତେ କଥା—କେତେ ପୁରୁଣା ଗୀତ !

ତଥାପି ନିତାଇ ବାରମ୍ବାର ମୁଣ୍ଡ ହଲାଇ ନୀରବରେ ଜଣାଇଲା—ନା-ନା-ନା ।

ତାହାର ମନ ଭିତରେ ସେହି ଗୀତର ପଦ ଗୁଞ୍ଜନ କରୁଥିଲା—"ଚାନ୍ଦ ତମେ ଆକାଶେ ଥାଅ ।" ମନେ ମନେ କହୁଥାଏ—"ତେଣୁ ଚାଲିଛୁ ଦେଶାନ୍ତରେ—।" ସେ ପୁଣି ଥରେ ମୁଣ୍ଡ ହଲାଇ ଜଣାଇଲା—ନା, ଠାକୁରଝୀ ଏତେଦିନକେ ଭଲ ହୋଇଛି, ଘରସଂସାର କରୁଅଛି । ସେ ଯାଇ ଆଉ ନୂଆ ଅଶାନ୍ତି ସୃଷ୍ଟି କରିବନି । ନା-ନା, ସେ ଯିବନି । ସେ ଯିବନି ।

ନିତାଇ ନୀରବରେ ହିଁ ବିଦାୟ ନେଲା । ଏହି ବିଦାୟ ତାହାର ଶୋକାଚ୍ଛନ୍ନ ମନକୁ ଆହୁରି ଉଦାସ କରିଦେଲା । ଦଳର ପ୍ରତ୍ୟେକ ଲୋକର ମୁହଁ ତାହାର ଆଖିଆଗରେ କ୍ଷଣେ କ୍ଷଣେ ଜାଗିଉଠୁଥିଲା—ବିଦାୟ-ବ୍ୟଥା-କାତର ମ୍ଳାନ ମୁଖ । କାହାରି ସହିତ କେବେହେଲେ ତାହାର ଝଗଡ଼ା ହୋଇନାହିଁ; କିନ୍ତୁ ସେମାନେ ଯେ ଏତେ ଭଲ—ଏ କଥା ଆଜିକା ଦିନରେ ଏହି ମୁହୂର୍ତ୍ତଟି ଆଗରୁ କେବେ ଅନୁଭ

ଲାଗି ମଧ୍ୟ ମନେ ହୋଇନାହିଁ; ବରଂ ସେତେବେଳେ ସେମାନଙ୍କର ଦୋଷଗୁଡ଼ାକ ଖୁବ୍ ବଡ଼ ହୋଇ ତାହାର ଆଖିରେ ପଡ଼ୁଅଛି । ମାଉସୀଙ୍କୁ ଦେଖି ମନେହେଉଥିଲା, ମୁହଁରେ ମିଠାକଥା କହିଲେ ବି ପୂରା ଅନ୍ତରଟା ବିଷରେ ଭରା, ମିଛ ଛଡ଼ା ସତ କହି ଜାଣେନା । ପୃଥିବୀରେ ଖାଦ୍ୟ ଏବଂ ଅର୍ଥ ଛଡ଼ା ଆଉ କିଛି ବି ଭଲପାଏନା ମାଉସୀ । ଆଜି ମନେ ହେଲା—ନା, ନା, ମାଉସୀ—ମାଉସୀ ଭଲ, ମାଆ ଭଳି ଭଲପାଉଥିଲା ତାହାକୁ । ତାହାର ଆଖିର ସେଇ କେଇ ବିନ୍ଦୁ ଲୁହ ବସନ୍ତର ମରଣକାଳର ଭଗବାନଙ୍କ ନାମ ଭଳି ହିଁ ସତ୍ୟ ।

ନିର୍ମଳା ଚନ୍ଦନ ଭଲ । ମାଆପେଟର ଭଉଣୀ ଭଳିଆ ଭଲ ।

ଲଳିତାର ଟେଖା ଟେଖା ଥଟ୍ଟାଗୁଡ଼ା—ଶ୍ୟାଳିକାର ମୁହଁର ଥଟ୍ଟା ପରି ମିଠା ଥିଲା ।

ବେହେଲଦାରର କଥା ମନେକରି ତାହାର ଆଖିରେ ପାଣି ଆସିଗଲା । କାନ ପାଖରେ ବାଜିଉଠିଲା ସେଇ ସ୍ୱର୍ ।

ସେଇ ସ୍ୱର୍‌ଟାଇ ଆବୃତ୍ତି କରି କରି ସେ ଫେରିଆସି ବସିଲା ଗଙ୍ଗାଘାଟରେ । ଗଙ୍ଗାରେ ଗାଧୋଇ ସେ ମନେ ମନେ ଗୋଟିଏ ଗଙ୍ଗାସ୍ତବ ରଚନା କରିବାର ଚେଷ୍ଟା କଲା । ହେଲା ନାହିଁ । ଘାଟ ଉପରେହିଁ ଗୋଟାଏ ଗଛମୂଳ ଦେଖି ସେ ଆସି ବସିଲା; କିନ୍ତୁ କୁଆଡ଼େ ସେ ଯିବ ? ପଥେ ପଥେ ଭିକ୍ଷା କରି ବୁଲିବ ବାଉଲ୍ ଦର୍‌ବେଶ ଭଳିଆ ? ନା । ଏ କଳ୍ପନା ତାହାକୁ ଭଲ ଲାଗିଲା ନାହିଁ । ତେବେ ? କଣ ବା କରିବ ? କୁଆଡ଼େ ବା ଯିବ ? ହଠାତ୍ ତାର ମନେହେଲା—ହାୟ ହାୟ ହାୟ, ହାଇରେ ପୋଡ଼ା ମନ । ଏଇ କଥା କଣ ଭାବିବାକୁ ଅଛି ? ଠାକୁର, ଠାକୁରଙ୍କ ପାଖକୁଇ ସେ ଯିବ । ଗୋବିନ୍ଦ । ବିଶ୍ୱନାଥ ! ପ୍ରଭୁ, ପ୍ରଭୁଙ୍କ ପାଖ ଯିବ ସେ । ମାଆଙ୍କ ପାଖ ଯିବ । ମା ଅନ୍ନପୂର୍ଣ୍ଣା । ରାଧାରାଣୀ, ରାଧାରାଣୀ । ସେ ସେଇସବୁ ଦେବତାଙ୍କ ଦରବାରରେ ବସି ଗୀତ ଗାଇବ—ମହିମା କୀର୍ତ୍ତନ କରିବ—ଭଗବାନଙ୍କୁ ଗୀତ ଶୁଣାଇବ—ଶ୍ରୋତାମାନେ ଶୁଣି ଆଖିରୁ ଲୁହ ଗଡ଼େଇବେ—ସଙ୍ଗେ ସଙ୍ଗେ ତାହାକୁ ବି କିଛି କିଛି ଦେଇଯିବେ । ସେଇଥିରେଇ ତାର ଦିନ ବିତିଯିବ । ତାହାର ଭାବନା କଣ ? ହାଇରେ ପୋଡ଼ା ମନ—ଏତେବେଳଯାଏ ତୁ ଏଇ କଥାଟାଇ ଭାବିପାରୁନଥିଲୁ ? ଏଠୁ ଯାଇ କାଶୀ, ବାବା ବିଶ୍ୱନାଥ—ମା ଅନ୍ନପୂର୍ଣ୍ଣା । କାଶୀରୁ ଅଯୋଧ୍ୟା, ସୀତାରାମ—ସୀତାରାମ । ସୀତାରାମଙ୍କ ରାଜ୍ୟରୁ ରାଧାଗୋବିନ୍ଦ । ରାଧାରାଣୀଙ୍କ ରାଜ୍ୟ ବୃନ୍ଦାବନ ।

ତା ପରେ ମଥୁରା—ନା-ନା, ମଥୁରା ସେ ଯିବ ନାହିଁ । ରାଧାରାଣୀଙ୍କୁ କନ୍ଦାଇ ରାଜ୍ୟଲୋଭୀ ଶ୍ୟାମ ରାଜା ହୋଇଛି ସେଠାରେ, ସେ ରାଜ୍ୟକୁ କିନ୍ତୁ ଯିବ ନାହିଁ । ମଥୁରାଠାରୁ ବରଂ କୁରୁକ୍ଷେତ୍ର—ହରିଦ୍ୱାର । ହରିଦ୍ୱାର ପରେ ପରେ ହିମାଳୟ ପାହାଡ଼

ଆଉ ପାହାଡ଼ । ପିଲାଦିନରେ ପଢ଼ିଥିବା ଭୂଗୋଳ ମନେ ପଡ଼ିଲା—ପୃଥିବୀ ଭିତରେ ଏତେ ଉଚ୍ଚ ପାହାଡ଼ ଆଉ ନାହିଁ—ହିମାଳୟର ସର୍ବୋଚ୍ଚ ଶୃଙ୍ଗ ଗୌରୀଶଙ୍କର । ହିମାଳୟ ଭିତରେଇ ମାନ-ସରୋବର । ସେଠାଯାକେ ବି କୁଆଡ଼େ ମଣିଷ ଯାଆନ୍ତି । ନିତାଇ ମାନ-ସରୋବରରେ ସ୍ନାନ କରିବ । ତାହାପରେ ଜନଶୂନ୍ୟ ହିମାଳୟରେ କେଉଁଠି ଗୋଟିଏ ଆଶ୍ରୟସ୍ଥଳ ତିଆରି କରି ସେଇଠାରେଇ ରହିଯିବ । ନିତ୍ୟ ନୂତନ ଗୀତ ରଚନା କରିବ—ଗାଇବ, ପାହାଡ଼ ଦେହରେ ଖୋଳି ଖୋଳି ଲେଖିରଖିବ । ସେ ମରିଯିବ । ତାହା ପରେ ଯେଉଁମାନେ ସେ ବାଟଦେଇ ଯିବେ ସେମାନେ ସେ ଗୀତ ପଢ଼ିବେ ଆଉ ମନେ ମନେ ନିତାଇ-କବିକୁ ନମସ୍କାର କରିବେ ।

ଶେଷ ବୈଶାଖର ଦ୍ୱିପ୍ରହର । ନିଆଁ ଭଳି ତପ୍ତ ହାଓ୍ୱା ଗଙ୍ଗାର ବାଲି ଉଡ଼ାଇ ହୁ-ହୁ କରି ବହିଚାଲିଅଛି । ଦୁଇ ପାରିର ଶସ୍ୟହୀନ ଚଷାଭୂଇଁ ଧୂସରବର୍ଣ୍ଣ—ଯେପରି ଧୂ-ଧୂ କରୁଅଛି । ଲୋକବାକ କେହି ନାହାନ୍ତି, କେବଳ ଦୁଇ-ଗୋଟି ଚିଲ ଆକାଶରେ ଉଡ଼ୁଛନ୍ତି—ସେମାନେ ବି ଯେପରି କେଉଁ ଦୂରଦୂରାନ୍ତକୁ ଚାଲିଛନ୍ତି । ସବୁ ଶୂନ୍ୟ—ସବୁ ଉଦାସ, ସବୁ ସ୍ତବ୍ଧ—ଗୋଟାଏ ଅସୀମ ବୈରାଗ୍ୟ ଯେପରି ପୂରା ପୃଥିବୀକୁ ଆଚ୍ଛନ୍ନ କରି ପକାଇଛି । ନିତାଇ ସେହି ଅଗ୍ନିଗର୍ଭ ଖରା ଭିତରେ ହିଁ ବାହାରି ପଡ଼ିଲା । "ଚଲେ ମୁସାଫିର ବାନ୍ଧ ଗଠରିୟା—ବହୁତ ଦୂର ଜାନା ହୋଗା ।" କାଶୀ । ସେ ଷ୍ଟେସନକୁ ଫେରି ବଡ଼ ଲାଇନରେ କାଶୀକୁ ଟିକଟ କାଟି ଟ୍ରେନ୍‌ରେ ଚଢ଼ିଲା ।

ନିତାଇ ଆସି ପହଞ୍ଚିଲା କାଶୀରେ ।

ବ୍ରିଜ ଉପରେ ଟ୍ରେନ୍‌ର ଝିଡ଼ିକିଦେଇ କାଶୀ ଆଡ଼କୁ ଚାହିଁକରି ସେ ମୁଗ୍ଧ ହୋଇ-ଗଲା । ବଙ୍କା ସୁନ୍ଦର ରେଖାପରି ଗଙ୍ଗାର ଧଳା ପାଣି ଚକ୍‌ମକ କରୁଅଛି । ପୂରା କୂଳଟା ଭରି ମନ୍ଦିର, ମନ୍ଦିର ଆଉ ଘାଟ, ଆହୁରି କେତେ ବଡ଼ ବଡ଼ ଘର । ନିତାଇର ମନେହେଲା ମା' ଗଙ୍ଗା ଯେପରି ଆଖିଝଲସା ପକ୍‌କା କୋଠାର କଣ୍ଠି ଗୁନ୍ଥି-କରି ବେକରେ ପିନ୍ଧିଛନ୍ତି । ଟ୍ରେନର ଯାତ୍ରୀମାନେ କଳରବ ଉଠାଉଛନ୍ତି—ଜୟ ବାବା ବିଶ୍ୱନାଥ—ଅନ୍ନପୂର୍ଣ୍ଣା ମାଈ କୀ ଜୟ !

ସେ ବି ସେମାନଙ୍କ କଣ୍ଠସ୍ୱର ସଙ୍ଗେ ନିଜର କଣ୍ଠସ୍ୱର ମିଳାଇଦେଲା । ଜୟଧ୍ୱନିର ସ୍ୱର ସଙ୍ଗେ ସ୍ୱର ମିଶାଇଦେଲା—ଜୟ ବାବା ବିଶ୍ୱନାଥ—ଅନ୍ନପୂର୍ଣ୍ଣା ମାଈ କୀ ଜୟ ।

ଷ୍ଟେସନରେ ଓହ୍ଲାଇ କିନ୍ତୁ ଅକସ୍ମାତ୍ କେତେବେଳେ ତାର ମନର ଛନ୍ଦ କଟିଗଲା । ସେ ଯେପରି ଝୁଣ୍ଟି କରି ଠିଆ ହୋଇଗଲା । ବିବ୍ରତ ଏବଂ ବିହ୍ୱଳ ହୋଇ ଅନୁଭବ କଲା ସେ କେଉଁ ବିଦେଶକୁ ଆସି ପହଞ୍ଚିଯାଇଛି ।

ବଙ୍ଗଳା ଦେଶ ଶେଷ ହେବାଠାରୁ ସେ ଗୋଟାଏ ଅସ୍ୱାଚ୍ଛନ୍ଦ୍ୟ ଅନୁଭବ କରୁଥିଲା ।

ଷ୍ଟେସନ୍‌ରେ କ୍ରମଶଃ ଭିନ୍ନ ଭଷାଭଷୀ ଭିନ୍ନ ବେଶଭୂଷାରେ ଭୂଷିତ ଲୋକଙ୍କର ଭିଡ଼ ବଢ଼ୁଥିଲା । କାଶୀରେ ପହଞ୍ଚିବା ମାତ୍ରେ ସେ ଭିନ୍ନ ଧରଣର ମଣିଷଙ୍କ ମେଳରେ ମିଶି-ଯାଇ ବେଶ୍ ପ୍ରତ୍ୟକ୍ଷଭାବରେ ଅନୁଭବ କଲା ଯେ, ଏଠାକାର ମଣିଷଙ୍କ ଜୀବନର ଛନ୍ଦ ସାଙ୍ଗରେ ତାହାର ଜୀବନର ଛନ୍ଦ କେଉଁଠାରେ ହେଲେ ମିଶୁନାହିଁ । ତାହା ଛଡ଼ା କାଶୀ—କାଶୀ—କାଶୀ—ତାହାର କଳ୍ପନାର କାଶୀ କେଉଁଠାରେ ? ସେ ତ ଏଇ ଦୋକାନବଜାରଭରା କିଣାବିକାର କୋଳାହଳରେ ମୁଖର ଏହି ନଗରୀଟି ନୁହେଁ ! କୁଆଡ଼େ ସେ ବିଶ୍ୱନାଥଙ୍କ କାଶୀ ?

ବିହ୍ୱଳ ହେବାପରି ସେ ଠିଆହୋଇ ରହିଲା ।

ବିହ୍ୱଳ ହେବାପରି ଗୃହଆଡ଼କୁ ଗୁହିଁ ଗୁହିଁ ସେ ଗୋଟିଏ ରାସ୍ତାରୁ ଅନ୍ୟ ରାସ୍ତାକୁ ଚାଲୁଥାଏ । କେତେ ସମୟ ଚାଲିଛି, ତାର ଠିକ୍ ନାହିଁ । ଶେଷକୁ ଗୋଟିଏ ଟାଙ୍ଗା ଗାଡ଼ିରେ ଉଠି ସେ ଟାଙ୍ଗାବାଲାକୁ କୌଣସିପ୍ରକାରେ ବୁଝାଇଲା ଯେ ସେ ବିଶ୍ୱନାଥଙ୍କ ମନ୍ଦିରକୁ ଯିବ । ଟାଙ୍ଗାବାଲା ହିଁ ତାହାକୁ ଗୋଟିଏ ଛକରେ ପହଞ୍ଚାଇ ଦେଇ କହିଲା —ଏଇଆଡ଼େ ଯାଅ । ସେହି ବାଟରେ କେତେ ପାଦ ଅଗ୍ରସର ହୋଇ ଅକସ୍ମାତ୍ ତାହାର ମୁହଁ ଆଖି ଆନନ୍ଦରେ ପ୍ରଦୀପ୍ତ ହୋଇଉଠିଲେ । ପୂଜାଥାଳି ଧରି ଗୋଟିଏ ଉଜ୍ଜ୍ୱଳ ଧଳା ଥାନ ପିନ୍ଧି ଜଣେ ମହିଳା ଯାଉଥିଲେ । ସେ ଆନନ୍ଦରେ ଅଧୀର ହୋଇ ତାଙ୍କ ଆଡ଼କୁ ଆଗେଇଗଲା । ତାହାର ମନେହେଲା—ସେ ତ ତାଙ୍କ ଗାଆଁର ସେଇ ମଣ୍ଟିଆଣୀ ମା' ସାନ୍ତାଣୀ । ହଁ—ସେଇ ତ ! ସେଇମିତି ଝଲମଲ ସମ୍ଭ୍ରମଭରା ଭଙ୍ଗୀରେ ଲୁଗା ପିନ୍ଧିଛନ୍ତି, ମୁଣ୍ଡରେ ସେଇମିତି ଅଧା ଓଢ଼ଣା, ମୁଣ୍ଡର ବାଳତକ ସେଇମିତି ଖ୍ରେଟ କରି କଟୁରା ହୋଇଛି—ଅବିକଳ ସେଇ । ହଜିଯାଇଥିବା ପୁଅ ଯେମିତି ମାଆକୁ ଖୋଜି ପାଇଛି ସେହିପରି—ନଟାଇ ଆଶ୍ୱସ୍ତ ଏବଂ ଉତ୍ଫୁଲ୍ଲ ହୋଇଉଠିଲା । ଧାଇଁଆସି ସେ ତାଙ୍କ ଆଗକୁ ଯାଇ ହାତଯୋଡ଼ି ଠିଆହେଲା ।

ନା, ମଣ୍ଟିଆଣୀ ସାନ୍ତାଣୀ ନୁହନ୍ତି; ତେବେ ଠିକ୍ ମଣ୍ଟିଆଣୀ ମା'ଙ୍କ ପରି । ସେ ଯେ ତାଙ୍କ ଦେଶର ଅନ୍ୟ କେଉଁ ଗ୍ରାମର ଆଉ କେଉଁ ମଣ୍ଟିଆଣୀ ମା, ଏଥିରେ ନଟାଇର ଆଉ କିଛି ସନ୍ଦେହ ରହିଲା ନାହିଁ ଏବଂ ସତରେ ସେ ହିସାବରେ ତାର ଭୁଲ ହୋଇନାହିଁ । —ସେ ବଙ୍ଗାଳୀ ବିଧବା ଏବଂ ଯେଉଁମାନେ ଗ୍ରାମରେ ମା' ସାନ୍ତାଣୀ ହୋଇ ଠିଆହୁଅନ୍ତି ତାଙ୍କର ଭିତରୁ ଜଣେ ଅଟନ୍ତି । ପଚିପ୍ରବିଶ୍ୱାଳା ବଙ୍ଗାଳୀ ବିଧବା କାଶୀରେ ବିଶ୍ୱନାଥଙ୍କ ଆଶ୍ରୟ କରି ମଣିକର୍ଣ୍ଣିକାଘାଟ ଆଡ଼କୁ ଗୁହିଁ ବସିଛନ୍ତି । ଜୀବନର ବୋଝଟି ପହଞ୍ଚାଇ-ଦେବେ ସେଇଠାରେ । ମନ୍ଦିରରେ ପୂଜା ସାରି ସେ ଘରକୁ ଫେରୁଥିଲେ । ନଟାଇ ହାତ ଯୋଡ଼ିକରି କହିଲା—ମା' ସାନ୍ତାଣୀ !

ସେ ଥମକି ଠିଆ ହୋଇଗଲେ । ପ୍ରଥମେ ଭ୍ରୂ କୁଞ୍ଚିତ ହୋଇ ଉଠିଲା । ନିତାଇ ଆଡ଼କୁ ଗୁହିଁ ଦେଖି ପ୍ରସନ୍ନ ହୋଇ କହିଲେ –କଏ ତୁ ବାପା ?

ନିତାଇ ଭୂମିଷ୍ଠ ପ୍ରଣାମ କରି କହିଲା—ଆଜ୍ଞା ମା, ମୁଁ ଏଠେଇଁ ବଡ଼ ‘ବେପଦ’ରେ ପଡ଼ିଚି ।

‘ବେପଦ’ ଶବ୍ଦଟି ତାହାକୁ ସମସ୍ତ ବିପଦରୁ ରକ୍ଷାକଲା । ଶବ୍ଦଟି ଶୁଣି ସେ ବୁଝିଲେ ଲୋକଟି ପଲ୍ଲୀର ମନୁଷ୍ୟ ଏବଂ ଏକଦାରେ ନୂଆ ଏଠିକି ଆସିଅଛି ।

ସେ ପ୍ରସନ୍ନ କଣ୍ଠରେ ପଚାରିଲେ—କି ବିପଦ ବାପା ?

—ମୁଁ ଏଠାକାର କଥାବାର୍ତ୍ତା କିଛି ବୁଝିପାରୁନି ମା ! ତହିଁକି ଗରିବ ‘ନୋକ’, ଆଶ୍ରୟ ନାଇଁ, ନୂଆ ଆଇଚି ।

ହସିକରି ସେ କହିଲେ—ବୁଝିଲି, ଆ ମୋ ସାଙ୍ଗରେ ଆ, ଷ୍ଟେସନରୁ ଆସୁଛି ନା କଣ ?

—ହିଁ ମା ! ବାଟ ଘାଟ ବୁଲିବାରୁ ନିତାଇ ଯେମିତି ବଞ୍ଚିଗଲା ।

ତାହାର ଏଇ ନୂଆ ମା’—ତାଙ୍କୁ ସେ ନୂଆ ମା’ ହିଁ ଡାକିଲା; ସେ ନିତାଇକୁ ନିଜ ବସାକୁ ନେଇଗଲେ । ଲୋକ ଖୁବ୍ ଭଲ ।

ନିତାଇ ମନେ ମନେ ନିଜର ଭାଗ୍ୟକୁ ଧନ୍ୟବାଦ ଦେଲା । ଭାଗ୍ୟବିଧାତାଙ୍କୁ କହିଲା —ପ୍ରଭୁ, ତମ ଭଳିଆ ଦୟାଳୁ ଆଉ କଏ ଅଛି । ଅଧମ ଉପରେ ଦୟାର ତମର ଶେଷ ନାହିଁ । ନଇଲେ ଏମିତି ବିଦେଶ ଭୂଇଁରେ ଆସିକରି ବି ମା’ ଯଶୋଦାଙ୍କପରି ମାଆଙ୍କର ଆଶ୍ରୟ ପାଇଲି କେମିତି ?

ଏଇ ନୂଆ ମା’ ତାହାକୁ ନିଜ ବସାକୁ ନେଇଗଲେ । କେଉଁ ଏକ ଆଦିଅନ୍ଧକାର ଅଙ୍କାବଙ୍କା ଗଳି ଭିତରେ ତାଙ୍କ ବସା—ଖଣ୍ଡିଏ ବୋଲି ଘର, ତାର ଟିକେନାକୁରୁ ବାରଣ୍ଡା ଆଉ ରାନ୍ଧିବା ସକାଶେ ସ୍ଲୋଟ ଆଉ ଗୋଟିଏ ବାରଣ୍ଡାର କୋଣଟି । ନିତାଇ ସଙ୍କୁଚିତ ହୋଇ କହିଲା—ମୁଁ ବରଂ ଘରର ବାହାରେ ବସେ । ଜାତିରେ ମୁଁ ବଡ଼ ନୀଚ ।

—କାହିଁକି ବାପା ? ଏଇ ବାରଣ୍ଡାରେ ବସ । ହେଲା ଏବେ ନୀଚଜାତି ।

ନିତାଇ ଆଖିରେ ଲୁହ ଆସିଗଲା । ସତରେ ମା ଯଶୋଦା । ବୃନ୍ଦାବନର ମା’ମାନେ —ଯଶୋମତୀ ଦେଶର ମା’ମାନେ କେମିତି ମା’ ସେ ଜାଣେନା; କିନ୍ତୁ ତାହା ଦେଶର ମା’ମାନଙ୍କୁ ଛାଡ଼ି ଯଶୋଦା ପରି ମା’ ଅନ୍ୟ କେଉଁ ଦେଶରେ ଅଛନ୍ତି ବୋଲି ତାର ମନେ ହୁଏନା । ସେ ଦେଖିଛି ଏଇ ଦେଶର କେତେ ଲୋକ—ହିନ୍ଦୁସ୍ଥାନୀ କଥା ଯେଉଁମାନେ କହନ୍ତି—ସେମାନେ ତାଙ୍କ ରାଜ୍ୟକୁ ଯାଆନ୍ତି—ଅନାୟାସରେ ବର୍ଷେ, ଦୁ’ବର୍ଷ ଏକାଲିଟେ

କଟାଇ ଦଅନ୍ତୁ, କାହିଁ ମା'ଙ୍କୁ ଦେଖିବାକୁ ତ ସେମାନେ ଛୁଟିଯାଅନ୍ତିନ ! ମା'ମାନେ ବି ନିଶ୍ଚୟ ତାଙ୍କ ଦେଶରେ ଆପଣା ମଣ୍ଡଳରେ ଥାଆନ୍ତି ! ଯେଉଁ ଯଶୋଦା ଗୋପାଳଙ୍କୁ ଓଳକ ଲାଗି ଗୋଷ୍ଠକୁ ପଠାଇ କାନ୍ଦିବସୁଥିଲେ, ସେ ଯଶୋଦା ଭଳି ମା' ସେମାନେ କେମିତି ହେବେ ? ତାଛଡ଼ା ଏପରି ମିଠା କଥା—ଆ ହା ହା ରେ ! —ମାଗୋ ମା ! ନା—କଣ ବାପ ଗୋପାଳ ! ଏମିତି ଡାକ—ଏମିତି ଜବାବ—ଆଉ କୋଉଠି ମିଳିବ ?

ମା' ତାହାକୁ ଗୋଟି ଗୋଟି କରି କେତେ କଥା ପଚାରିଲେ—କଣ ନାଁ, ଘର କୋଉଠି, କି ପୋଷ୍ଟାଫିସ୍, କି ଜିଲ୍ଲା ? ଶେଷକୁ ପଚାରିଲେ—ଘରେ କିଏ କିଏ ଅଛନ୍ତି ବାପା, ମା, ଭାଇ ? ବାହା ହେଇନ ବାପା ? ନଟାଇର ମନେ ପଡ଼ିଗଲା ଠାକୁରାଣୀଙ୍କ, ମନେପଡ଼ିଗଲା ବସନ୍ତକୁ । ସେ ଗୋଟାଏ ଦୀର୍ଘନିଃଶ୍ୱାସ ପକାଇ କହିଲା— ନା ।

ନୂଆ ମା' କିଛି ସମୟ ଚୁପ୍ କରି ରହି ପଚାରିଲେ—ତମ ଗାଆଁରେ କେତେ ଘର ବ୍ରାହ୍ମଣ—କେତେ ଘର କୋଉ ଜାତି ଅଛନ୍ତି ବାପଧନ ? ତମର କୋଉ ଷ୍ଟେସନ ? ତମ ସିଆଡ଼େ ଗଲା ସନ ଧାନ କେମିତି ହୋଇଥିଲା ବାପା ? ଧାନ ଛଡ଼ା ଆଉ କୋଉ ଫସଲ ହୁଏ ? ବର୍ଷା କେମିତି ହୁଏ ବାପା ! ମେଘ ହୁଏ ଘନ ଘନ ?

ମାଆଙ୍କ ଆଖି ଦୁଇଟି ସ୍ୱପ୍ନାତୁର ହୋଇଉଠିଲା ।

—ବର୍ଷାରେ କାଦୁଅ କେମିତି ହୁଏ ବାପା ? ତମ ଗାଁରେ ନଡ଼ିଆଗଛ ବେଶୀ, ନା ତାଳଗଛ ବେଶୀ ? ପଇଡ଼ ଦାମ କେମିତି ? ମାଛ—କୋଉ ମାଛ ବେଶୀ ? ତମ ଗାଁରେ ମୁଢ଼ି କେମିତି ହୁଏ ବାପା ?

ନଟାଇ ଗୋଟି ଗୋଟି କରି ଜବାବ ଦେଇଗଲା । ସଙ୍ଗେ ସଙ୍ଗେ ତାହାର ମନରେ ଭାସିଉଠିବାକୁ ଲାଗିଲା ଗୋଟିଏ ଗୋଟିଏ ଛବି ।

—ତମ ଗାଆଁରେ ନଈ ଅଛି ବାପା ? ବଡ଼ ପୋଖରୀ ଅଛି ଗାଁରେ ? ଆଃ, କେତେ ଦିନ ପୋଖରୀରେ ଗାଧୋଇନ । ପୋଖରୀରେ ପଦ୍ମଫୁଲ ଫୁଟେ ? କଇଁ ତ ସବୁ ଗାଁରେ । ନେଳିଆ କଇଁ ହୁଏ ତମ ଗାଁରେ ? ଛୁନଛୁନିଆ ଆଉ କଳମ ଶାଗ ହୁଏ ବାପା ?

ମଝିରେ ମଝିରେ ପ୍ରଶ୍ନ ସରିଯାଏ । ମା' ଚୁପ୍ କରି ରହନ୍ତି ଉଦାସ ମନରେ । ବୋଧ-ହୁଏ ତାଙ୍କର ବି ମନେ ପଡ଼େ ଦେଶକଥା । ପୁଣି ହଠାତ୍ ମନେ ପଡ଼ିଯାଏ ଗୋଟାଏ ନୂଆ କଥା, ସେଇଟାର ପଛେ ପଛେ ଆସି ଠିଆହୁଏ ପୁଣି ପଲେ ପ୍ରଶ୍ନ ।

—ତମର ସିଆଡ଼େ ସଜନାଛୁଇଁ ହୁଏ ? 'ନଜନା' ହୁଏ ? ପାନବରଜ ଅଛି ? କିଆ ବୁଦା ଅଛି ତମ ଗାଁରେ, ସାପ ଥାଏ ସେଠି ? ଗୋଖର ତମ୍ପ ସେଆଡ଼େ ଖୁବ୍ ବେଶୀ, ନା ? ନଈକୂଳରେ ଶାମୁକାଭଙ୍ଗା ତମ୍ପ ଥାଏ ? ପାଣିକୁଆ ଅଛି ? 'ଉଠରେ ପୁତ' ଚଢ଼େଇ ଅଛି ? ଥିବ ତ ନିଶ୍ଚୟ । 'ଆଖି ଗଲା' ଚଢ଼େଇ ଅନେକ ଥିବେ, ନାଇଁ ? "କୃଷ୍ଣ

କୁଆଡ଼େ' ଚଢ଼େଇ ? କେତେ ତାକୁ କହନ୍ତି, 'ଗେରସ୍ତର ପୁଅ ହଉ' ଚଢ଼େଇ ଦେହର ରଙ୍ଗ ହଳଦିଆ, ମୁଣ୍ଡଟି କଳା, ଥଣ୍ଟଟି ଲାଲ୍ ଗୁଲୁଗୁଲୁ । ଆମେ ତାକୁ କହୁ 'କୃଷ୍ଣ କୁଆଡ଼େ' ଚଢ଼େଇ; ବଣିଆ-ବୋହୂ ବି କହୁଁ—ସେ ଚଢ଼େଇ ଅଛୁ ?

ହଠାତ୍ ମାଆଙ୍କ ଆଖି ଲୁହରେ ଭରିଗଲା । ସେ ନୀରବରେ ବସିରହିଲେ କିଛି ସମୟ । ଦେଖୁ ଦେଖୁ ଦି'ବୁନ୍ଦା ଲୁହ ଯେମିତି ଆପେ ଆପେ ଆଖି ଫିଟାଇ ବାହାରି ଆସି ଟପ୍‌ଟପ କରି ଝରିପଡ଼ିଲା ।

ନିତାଇ କିଛି ପଚାରିବାକୁ ସାହସ କଲା ନାହିଁ । କିନ୍ତୁ 'କୃଷ୍ଣ କୁଆଡ଼େ' ଚଢ଼େଇ କଥା ପଚାରିବାକୁ ଯାଇ ଆଖିରେ ଲୁହ ଆସିଗଲା ଦେଖି ତାହାର ମନେ ହେଲା, ବୋଧହୁଏ ତାଙ୍କ କୃଷ୍ଣ ବି କୁଆଡ଼େ ଚାଲିଯାଇଛି ।

ମା' କହିଲେ—ମା' ଯଶୋଦା ଗୋପାଳ ଲାଗି କାନ୍ଦୁଥିଲେ ଆଉ ହଳଦି ବାଟୁଥିଲେ । ବଟା ହଳଦି ନେଇ କାନ୍ଦି କାନ୍ଦି ସେ ଗଢ଼ିଲେ ଗୋଟିଏ ଚଢ଼େଇ । ସେଇ ଚଢ଼େଇର ମୁଣ୍ଡରେ ଝରିପଡ଼ିଲା ତାଙ୍କ ଆଖିର ବୁନ୍ଦାଏ ଲୁହ ! ସେଇ ଲୁହର ତାଡ଼ରେ ପୋଡ଼ି ତାର ମୁଣ୍ଡଟି ହୋଇଗଲା କଳା—ଆଉ ଲୁହ ସାଙ୍ଗରେ ଥିଲା ଯୋଉ ଆଖିର ରକତ, ସେଇ ରକତରେ ତାର ଥଣ୍ଟଟି ହେଲା ନାଲି । ଚଢ଼େଇଟିକି ଛାଡ଼ିଦେଇ କହିଲେ—ଚଢ଼େଇ, ତୁଇ ଦେଖିଆ ମୋ କୃଷ୍ଣ କୋଉଠି । ଚଢ଼େଇ ବୁଲି ବୁଲି ଡାକିବାକୁ ଲାଗିଲା—'କୃଷ୍ଣ କୁଆଡ଼େ ?' —କୃଷ୍ଣ କୁଆଡ଼େ ? ଚିରକାଳ ସେ ଡାକି ବୁଲୁଛି ।

ନିତାଇର ଆଖିଦେଇ ବି ଲୁହ ଝରିବାକୁ ଆରମ୍ଭ କଲା ।

ମା' କହିଲେ—ମୋ କୃଷ୍ଣ ବି ଚାଲିଯାଇଛି ବାପା ! ବ୍ରହ୍ମାଣ୍ଡରେ ବି କେହି ନାହିଁ ଆଉ । ତେଣୁ ଆସିଛି ବାବାଙ୍କ ଚରଣତଳକୁ । ନଇଲେ ଦେଶ ଛାଡ଼ି— । ଅଧବାଟରେଇ ଅଟକି ମା' ଆଖି ପୋଛିଲେ । ପୁଣି ପଚାରିଲେ—ତୁ କାଶୀ ଆସିଚୁ ତୀର୍ଥ କରିବାକୁ ? ଏଇ ବୟସରେ ତୀର୍ଥ ? କିଛି ମନେ କରିବୁନି ବାପା—ତମ ଜାତିର କେହି ତ ଏମିତି ଖବରେ ଆସେନା ! ସେଇଥିରୁ ପଚାରୁଛି ।

ହାତ ଦୁଇଟି ଯୋଡ଼ି ନିତାଇ କହିଲା—ପୂର୍ବଜନ୍ମର କର୍ମଫଳ—ହୁଏତ ମୋର କର୍ମ ବଦଳି, ନଇଲେ । —ନିତାଇ କଥାଟାକୁ ଶେଷ ନକରି ଚୁପ୍ କରିଗଲା । ମା' ପଚାରିଲେ—କଣ କହୁଥିଲୁ ବାପା ?

ନିତାଇ ଟିକିଏ ଚୁପ୍ ରହି କହିଲା—ଆପଣଙ୍କ ଆଗରେ ଲୁଚେଇବିନି ମା ! ମୋର ବାପା, ଦାଦା, ଭାଇ, ମାମୁ, ମଉସା ଏମାନେ ସବୁ ଚୋରି-ଡକେଇତି କରୁଥିଲେ; ଜେଲ ବି ଖଟୁଥିଲେ । ସେଇ ବଂଶରେ ମୋର ଜନ୍ମ ମା ! ମୁଁ—କହି ସେ ଅଟକିଗଲା । କେତେକ ମୁହୂର୍ତ୍ତ ପରେ ସେ ପୁଣି କହିଲା—କହିବାକୁ ସେ ବୋଧହୁଏ ସଙ୍କୋଚ

ଅନୁଭବ କରୁଥାଏ, ସସଙ୍କୋଚରେ ହିଁ କହିଲା—ଦେଶରେ କବି-ଗାଉଣା ଶୁଣିଛନ୍ତି ମା ? ଦୁଇଜଣ କବିୟାଲ ମୁହେଁ ମୁହେଁ ଗୀତ ବାନ୍ଧି ଲଢ଼େଇ ପାଲା କରି ଗୀତ ବୋଲନ୍ତି ?

—ନିଶ୍ଚୟ ଶୁଣିଚି ବାପା । କେତେ ଶୁଣିଚି । ଆମ ଗାଁରେ ନବାନ୍ନବେଳେ ବାରଓ୍ୟାରି (ସାର୍ବଜନୀନ) ଅନ୍ନପୂର୍ଣ୍ଣା ପୂଜା ହଉଥିଲା । କବିଗାଉଣା ହଉଥିଲା ପୂଜାରେ । ଦୁର୍ଗା-ପୂଜାରେ ହଉଥିଲା ଯାତ୍ରାଗାଉଣା, କୃଷ୍ଣଯାତ୍ରା—ସଖୀଯାତରା । ନୀଳକଣ୍ଠର ଗୀତ—"ସତେ କି ତୋର ଗୋପାଳ ଲେଡ଼ା ଗୋ ? ଶୁଣ ଯଶୋଦେ !" ସେସବୁ ଗୀତ କଣ ଭୁଲିବାର ! ମନସାଙ୍କ ଭସାଣ ଗୀତ ହଉଥିଲା ମନସାପୂଜାବେଳେ । ଚବିଶପ୍ରହର ବେଳେ କୀର୍ତ୍ତନ ହଉଥିଲା । ବାଉଲ୍ ବଇରାଗୀମାନେ ଖଞ୍ଜଣି ଗୋପୀଯନ୍ତ୍ର ଘେନି ଗୀତ ଗାଇ ଭିକ ମାଗୁଥିଲେ—'ମୁଁ ଯେବେ ମୋର ଥାନ୍ତି ଗୋଟେଇ ପା'ନ୍ତି ହେମର ଘଡ଼ା' ଆହା-ହା ! ବାପା, ସେଇ କୀର୍ତ୍ତନ ଗୀତରେ ଶୁଣିଥିଲି—'ଅମିୟ ମିଶାଇ କେବା ଲବଣୀ କାଢ଼ିଲା ଗୋ, ତହିଁରେ ଗଢ଼ିଲା ଗୋରାଦେହ'—ଗୋରାଚାନ୍ଦଙ୍କ ଦେହ ଅମୃତ ଛାଣି ତିଆରି ହେଇଛି । ଏସବୁ ଗୀତ ଯେ ଅମୃତଛଣା ଜାଣସ ବାପା ! କବିଗାଉଣା ନିଶ୍ଚୟ ଶୁଣିଛି !

ନିତାଇ ଚୁପ୍ ହୋଇଗଲା । ଏହା ପରେ ଆଉ ନିଜକୁ କବିୟାଲ ବୋଲି ପରିଚୟ ଦେବାକୁ ତାର ସାହସ ହେଲାନାହିଁ ।

ବିଧବା ପୁଣି ପଚାରିଲେ—ତୁ କଣ କବିଦଳରେ ଥିଲୁ କି ବାପା ? ନିଜେ କବିଗାନ କରୁଥିଲୁ ?

ହାତ ଯୋଡ଼ିକରି ନିତାଇ କହିଲା—ହଁ ମା ! ଅଧମ ଜଣେ କବିୟାଲ । ତେବେ ମା, ବଡ଼ ଦରର କବିୟାଲ ମୁଁ ନୁହେ । ମୁଁ ଝୁମରଆଦଲ ସାଙ୍ଗରେ ଥାଇ ଗୀତ ଗାଉଥିଲି ।

—ତା ହଉନା ବାପା ! କବିୟାଲ ତ ନିଶ୍ଚୟ ! ହଉ, ତୀର୍ଥ କରିବାକୁ ବାହାରିଚୁ ବୋଧେ ?

ଟିକିଏ ଚୁପ୍ କରି ରହି ନିତାଇ କହିଲା—ଆଉ ଫେରିବି ବୋଲି ବାହାରିନାହିଁ ମା' । ଇଚ୍ଛା ଅଛି ଭଗବାନଙ୍କ ଛାମୁରେ ନିତିପ୍ରତି ଗୀତ ଗାଇବି । ସେଇଥିରେଇ ଦିନ କେଇଟା ବିତିଯିବ ମୋର ।

ବିଧବା ଅନେକ ସମୟ ଚୁପ୍ କରି ରହି କହିଲେ—ସେଥିରେ ତ ତୁ ସୁଖ ପାଇବୁନି ବାପା ! ତୁ କବିୟାଲ—ଗୀତ ଗାଇବୁ—ଲୋକଙ୍କୁ ଆନନ୍ଦ ଦବୁ, ହସେଇବୁ, କନ୍ଦେଇବୁ, ମେଡ଼େଲ୍ ପାଇବୁ, କେତେ ଲୋକ କେତେ ପ୍ରଶଂସା କରିବେ—ତେବେ ତ ତୋର ଆନନ୍ଦ ହବ, ସୁଖ ହବ ! କହୁ କହୁ ସେ ହଠାତ୍ ଚୁପ୍ ହୋଇଗଲେ । —ସୁଖ

ସଂସାରରେ ମିଳେନା ବାପା ! ଯେବେ ମିଳେ, ବାବା ବିଶ୍ୱନାଥ ଦେବେ । ତେବେ ତୋର ନଜର କାମ ଭିତରେଇ ପାଇବୁ ।

ଅପରାହ୍ନରେ ସେ ମାଆଙ୍କ ପାଖରୁ ବିଦାୟ ନେଲା । ଏହାର ଭିତରେ ମେ ତାର ସବୁ କଥା ହିଁ କହିଲା—ରାଜା କଥା, ବିପ୍ରପଦ କଥା । ଏପରିକି ବସନ୍ତ କଥା ବି କହିଲା । କହିଲାନି ଖାଲି ଠାକୁରାଣୀ କଥା । ଖାଲି ସେତିକି ନୁହେଁ, ତାଙ୍କୁ ସେ ଗୀତ ବି ଶୁଣାଇଲା ।

ମାଆଙ୍କ ବୃତ୍ତାନ୍ତ ବି ସେ ସବୁ ଜାଣିଲା । ନିଜର ହେଲେ ମାଆଙ୍କର କେହି ନାହିଁ, ଏକମାତ୍ର ସନ୍ତାନକୁ ହରାଇ ମା' ଏଠାକୁ ଆସି ଆଶ୍ରୟ ନେଇଛନ୍ତି । ଦେଶରୁ ଜ୍ଞାତିକୁଟୁମ୍ବ, ଯେଉଁମାନେ ତାଙ୍କ ଶ୍ୱଶୁରଙ୍କ ସମ୍ପତ୍ତିର ଉତ୍ତରାଧିକାର ପାଇଛନ୍ତି, ସେମାନେ ମାସକୁ ଦଶଟି ଲେଖାଏ ଟଙ୍କା ପଠାନ୍ତି । ତାହା ବି ଅନିୟମିତ । ମା' ହସି କହିଲେ—ପେଟ ଲାଗି କଜିଆ କରିବାକୁ ମନ ହୁଏନା ବାପା, ଲାଜ ମାଡ଼େ । ଆହାର କମାଇ ଅଧାପେଟ ଅଭ୍ୟାସ କଲେ ମାସକର ଖୋରାକ ବି ଦୁ'ମାସ ଯାଏ । ତା ଭିତରେ ଉପାସ କରିପାରିଲେ—ବୁଧବାର ଉପାସ ତ ଅନେକ ।

ନିତାଇ ଅଧୀର ହୋଇ ଉଠି ଠିଆହେଲା । ଓଃ—ସେ ମାଆଙ୍କର ସେଇ ଅଧାପେଟ ଅନ୍ନରେ ଭାଗ ବସାଇଛି । ମା' ତାହାକୁ ହସମୁହଁରେ ଦେଇଛନ୍ତି । ଓଃ ! ସେ କହିଲା—ମୁଁ ଏଥରକ ଉଠେଁ ମା ! ଥିଲେ ପୁଣି ଆସିବି ।

ନିତାଇ ପ୍ରଣାମ କଲା ଦୂରରୁ ଭୂମିଷ୍ଠ ହୋଇ, କହିଲା—ଆପଣ ଦୁ' ପାଦ ପଛେଇ ଯାଆନ୍ତୁ ମା' । ମୁଁ ସେଇ ଠାଆଟିର ଧୂଳି ନେବି ।

ମା କହିଲେ—ତୁ ମୋର ଗୋଡ଼ ଛୁଇଁକରି ନେ ବାପା । ମୁଁ ତ ଗାଧୋଇବି ଏଇଲାଗେ ।

—ନା । ନିତାଇ ତାଙ୍କ ଗୋଡ଼ ଛୁଇଁଲାନି ।

ମା' କହିଲେ—ଅନେକ ଛତ୍ର ଅଛି; ଜାଗା ମିଳିଯିବ ; ମୋର ଘର ଏଇ ତ ଦେଖୁଚୁ—ତା ଛଡ଼ା ଏ ଘରେ ଆହୁରି ଦଶଜଣ ଥାଆନ୍ତି । ସମସ୍ତେ ମାଇପେ ଏଠି—

ନିତାଇ ହସି କହିଲା—ଦେବତାଙ୍କ ଦେଖା ଅଳ୍ପ ସମୟ ପାଇଁ ଘଟେ ମା' । ଚିରକାଳର ପୁନଅଁ ତ ମୋର ନୁହେଁ ମା' ଅନ୍ନପୂର୍ଣ୍ଣା । ଆପଣ ମୋର ସାକ୍ଷାତ୍ ମା ଅନ୍ନପୂର୍ଣ୍ଣା ।

ମା' କହିଲେ—ତୋର କଞ୍ଚା ବୟସ, ତୁ କବିୟାଲ—ତୁ ଦେଶକୁ ଫେରିଯା ବାପା । ଚମତ୍କାର ତୋର କଣ୍ଠ । ଗୀତ ବି ତୋର ଭଲ ! ଦେଶରେ ତୋର କଦର ହବ । ସେ ତ ଆଉ ବଙ୍ଗଳା ଗୀତର ଦେଶ ନୁହେଁ ବାପା ! ଅବଶ୍ୟ ଗଙ୍ଗାଘାଟରେ—ଘାଟ ତ ଏଠି

ଅନେକ; ଆଉ ବଙ୍ଗାଳୀ ବି ଅନେକ । ସେଠି ବସି ଗୀତ ଗାଇଲେ ଅନେକ ଶୁଣିବା ଲୋକ ପାଇବୁ—କିଛି କିଛି ହୁଏତ ପାଇବୁ ବି । କିନ୍ତୁ ସଂସାରରେ ପେଟ ଚଳେଇବା ଟା ତ ସବୁକିଛି ନୁହେଁ ବାପା ! ଟିକିଏ ବିଷଣ୍ଣ ହସ ସଙ୍ଗରେ କଥାଟି ଶେଷ କଲେ ମା' ।

ଏଇ କଥାଟାରେ ନିତାଇ ଟିକିଏ କ୍ଷୁଣ୍ଣ ହେଲା । ଏଇଟା ମିଶେଇ ମା' ତାହାକୁ ଦୁଇଥର କଥାଟା କହିଲେ ।

ସନ୍ଧ୍ୟାବେଳେ ବିଶ୍ୱନାଥଙ୍କ ମନ୍ଦିର ପ୍ରାଙ୍ଗଣକୁ ଆସି ମାଆଙ୍କ କଥାର ସତ୍ୟତା ସେ ଅନୁଭବ କଲା । ଘଟଣାଟା ଘଟିଲା ଏହିଭାବରେ । ପ୍ରାଙ୍ଗଣର ଏକ ପ୍ରାନ୍ତରେ ଠିଆ ହୋଇ ମନ୍ଦିରଶୀର୍ଷର ଧ୍ୱଜା ଓ କଳସ ଆଡ଼କୁ ସେ ଅନାଇଥିଲା । ସୁନାପଣ ଦେଇ ମଣ୍ଡା ହୋଇଥିବା ମନ୍ଦିର, ଆକାଶରେ ଥିଲା ପରିପୂର୍ଣ୍ଣ ଜ୍ୟୋତ୍ସ୍ନା । ସେହି ଜ୍ୟୋତ୍ସ୍ନାର ଛଟାରେ ଝଲମଲ କରୁଥିଲା ।

ଶୃଙ୍ଗାରବେଳେ ଆରତି ଓ ଶୃଙ୍ଗାର-ବେଶ ଦର୍ଶନାର୍ଥୀଙ୍କ ଭିଡ଼ । ହଜାର କଣ୍ଠରେ ବିଶ୍ୱନାଥଙ୍କ ଜୟଧ୍ୱନି । ସେହି ଜୟଧ୍ୱନି ସଙ୍ଗରେ ନିଜର କଣ୍ଠ ବି ମିଶାଇଦେଲା—ଜୟ ବିଶ୍ୱନାଥ !

ତାପରେ ସେ ମନେ ମନେ ଗୀତ ରଚନା ଆରମ୍ଭ କଲା—

"ଭିକାରୀ ହୋଇଛି ରାଜା ମନ ମୋର ଦେଖିଥାରେ ନୟନ ମେଲି
ସାତମହଲା ସୁନାର ଦେଉଳ ଗଢ଼ାଇଛି ସେ ଶ୍ମଶାନ ଭୁଲି ।"

ଗୁଣୁଗୁଣୁ କରି ସୁର ଭାଙ୍ଗି ଗୀତଟି ରଚନା ଶେଷ କରି ସେ ଗଲା ଝାଡ଼ି ଗାଇବାକୁ ଆରମ୍ଭ କଲା—ଆହା ! ପ୍ରାଣ ଦେଇ ସେ ଗାଉଥିଲା ।

ଗୀତ ଶେଷ ହେବା ପରେ—ଅଳ୍ପ କେଇଜଣ ଲୋକ । ଯେଉଁମାନେ ଶେଷଆଡ଼କୁ ଆସି ଜମାହୋଇଥିଲେ—ସେମାନଙ୍କ ଭିତରୁ ଜଣେ ତାହାକୁ କିଛି କହିଲା—ତାହାର ବକ୍ତବ୍ୟ ସମ୍ପୂର୍ଣ୍ଣ ବୁଝି ନପାରି ନିତାଇ ସବିନୟରେ କହିଲା—କଣ କହିଲେ ପ୍ରଭୁ ? ମୁଁ ବୁଝି ପାରିଲା ନେଇଁ ।

ଜଣେ ହସି ବଂଗଳାରେ କହିଲା—ତମେ କଣ ଏଇ ଆସିଛ ଦେଶରୁ ?

—ଆଜ୍ଞା ହଁ ।

—ସେ କହୁଛନ୍ତି ହିନ୍ଦୀ ଭଜନ ଗାଇବାକୁ । ତମର ଏତେ ମିଠା କଣ୍ଠ, ତମ ପାଖରୁ ହିନ୍ଦୀ ଭଜନ ଶୁଣିବାକୁ ଚାହୁଁଛନ୍ତି ।

—ହିନ୍ଦୀ ଭଜନ ? ନିତାଇ ହାତ ଯୋଡ଼ି ବିନୟ କରି କହିଲା—ଆଜ୍ଞା ପ୍ରଭୁ, ମୁଁ ତ ହିନ୍ଦୀ ଭଜନ ଜାଣେନା ।

ବଙ୍ଗାଳୀ ଜଣକ ହିନ୍ଦୀଭାଷୀ ପ୍ରଶ୍ନକାରୀ ଲୋକଟିକୁ ଯାହା କହିଲା, ଅନ୍ଦାଜ କରି ନନ୍ଦାଇ ସେଇଟା ବୁଝିଗଲା; ବୋଧେ କହିଲା—ହିନ୍ଦୀ ଭଜନ ସେ ଜାଣେନା ।

ଜନତାର ଅଧିକାଂଶ ହିଁ ଏଥର ଚାଲିଗଲେ । ଯେପରି ତାହା ମଧ୍ୟରେ ଉପେକ୍ଷା ଥିଲା ବୋଲି ନନ୍ଦାଇର ମନେ ହେଲା ।

ମନ୍ଦିରରୁ ସିଧାସଳଖ ଆସିକରି ସେ ଗଙ୍ଗାଘାଟରେ ହାଜର ହେଲା ।

ଆଖି ତାର ପୂରିଗଲା । ଆହା, ଏଠି ଯେ ଦିନରାତି ମେଳା ଲାଗିରହିଛି । ଆଉ ଇଏ କି ବିଚିତ୍ର ମେଳା ! ମା' ଗଙ୍ଗାଙ୍କ ସାମନାରେ ଏ ଯେପରି ଭବଖେଳାର ହାଟ ବସି-ଯାଇଛି । ପାଖକେ ମଣିକର୍ଣ୍ଣିକା; ଅନ୍ୟ ପାଖରେ ରାଜା ହରିଶ୍ଚନ୍ଦ୍ରଙ୍କ ଘାଟରେ ଶ୍ମଶାନଚୁଲି ଜଳୁଅଛି ଅବିରାମ; ଧ୍ୱନି ଉଠୁଅଛି—ରାମନାମ ସତ୍ୟ ହେ । ଲୋକେ କହନ୍ତି, ଏଠି ଯେ ଭସ୍ମ ହେଲା ସେ ଶିବଲୋକକୁ ଚାଲିଗଲା । ଶିବରାମ ! ଶିବରାମ ! ଶିବଶମ୍ଭୁ । କଣ ତାର ମନେ ହେଲା, ଦଶାଶ୍ୱମେଧଠାରୁ ବାଟଚଲା ଲୋକଙ୍କ ପଛରି ପଚାରି ଆସି ପହଞ୍ଚିଲା ମଣିକର୍ଣ୍ଣିକାଘାଟରେ । ମଣିକର୍ଣ୍ଣିକାଘାଟକୁ ଆସି ହଠାତ୍ ସେ ପୋଟଳିଟି ଖୋଲି କାଢ଼ିଲା ଗୋଟାଏ ପିତ୍ତଳ ମୁଦି । ମୁଦିଟି ବସନ୍ତର, ବସନ୍ତର ଏହି ଗୋଟିଏ ମାତ୍ର ସ୍ମୃତି-ଚିହ୍ନ ତାହା ପାଖରେ ଅଛି । ସେଇଟିକି ସେ ଏହି ମଣିକର୍ଣ୍ଣିକାଘାଟରେ ପାଣିରେ ପକେଇଦେବ । ଏହି ପୁଣ୍ୟରେ ବସନ୍ତର ସବୁ ପାପ ଧୋଇହୋଇଯାଉ ।

—ବସନ୍ତ ତମେ ସ୍ୱର୍ଗକୁ ଯାଅ ।

କିନ୍ତୁ ପକେଇବାକୁ ଯାଇ ମଧ୍ୟ ସେ ପକାଇ ପାରିଲା ନାହିଁ । ହାତ ଉଠେଇ କେତେକ ମୁହୂର୍ତ୍ତ ଠିଆହୋଇ ରହି ସେ ପ୍ରାୟ ଧାଇଁ ପଳାଇ ଆସିଲା । ବସନ୍ତର ଆଉ କିଛି ନାହିଁ, ଖାଲି ଏଇ ଟିକକ ! ନା—ଥାଉ ଏ ଟିକକ; ଥାଉ । ତାହାର ଶେଷ ପର୍ଯ୍ୟନ୍ତ ଥାଉ । ଓଃ ! ବସନ୍ତ ଦିନକୁ ଦିନ ହଜିଯାଉଛି । କାଶୀ ଆସିବାଠାରୁ ବସନ୍ତକୁ ମନେକଲେ ତାର ମନେଇ ପଡ଼ୁନାହିଁ, ସ୍ୱପ୍ନ ବି ଦେଖିନାହିଁ । କଟଓ୍ୱା ଘାଟରେ ବସି ସେ ଆଖି-ବୁଜିଲେଇ ବସନ୍ତକୁ ଦେଖିପାରୁଥିଲା । ଗୀତ ବାନ୍ଧିଥିଲା—

> "ମରଣ ତମର ହାର ହେଲା ଯେ ମନର ସାଙ୍ଗରେ
> ଭାବିଲି ଯାରେ କାଢ଼ିନେଇଚ ସେ ତ ଅଛି ମନ ଭିତରେ ।"

କିନ୍ତୁ କାହିଁ ? ଓଃ । ମନର କଦମ୍ବମୂଳ ବି ଶୁଖିବାକୁ ଆରମ୍ଭ କରିଅଛି । ବସନ୍ତର

ମୁହଁଟା ଝାପ୍‌ସା ହୋଇଯାଇଛି । ଆଖି ଦ'ଟା ତାର ଲୁହରେ ପୂରିଉଠିଲା । ମନ ଭିତରେ ସେଇ ଗୀତଟି ପୁଣି ଗୁଣୁ-ଗୁଣୁ କରି ଉଠିଲା—

"ଏଇ ଖେଦ ମୋର ମନେ
ଭଲ ପାଇ ମେଣ୍ଟିଲାନି ଆଶା—ଅଣ୍ଟିଲାନି ଏ ଜୀବନେ
ହାୟ, ଜୀବନ ଏତେ ଶ୍ରେଷ୍ଠ କଅଁ।
ଏ ଭୁବନେ ?"

ମୁଦଟା ସେ ହାତର ଜାଣି ଆଙ୍ଗୁଠିରେ ପିନ୍ଧି ଫେରିଆସିଲା । ଦଶାଶ୍ୱମେଧଘାଟକୁ ଆସି ବସିଲା । ଧୀରେ ଧୀରେ ମନଟା ତାର ଥଣ୍ଡା ହୋଇଆସିଲା । ବଡ଼ ଭଲ ଜାଗା ଏଇ ଦଶାଶ୍ୱମେଧଘାଟ । ଏତେ ବଡ଼ ତୀର୍ଥ ଆଉ ନାହିଁ ! କେତେ ସ୍ୱାଇଜର କେତେ ମଣିଷ । କେତେ ପାଠ । କେତେ ଗୀତ । କେତେ ଦାନ । କେତେ ଭିକ୍ଷା । କେତେ କାମନା । କେତେ ଦୁଃଖ । ଏପାଖରୁ ସେପାଖଯାକେ ଘାଟଟା କେଡ଼େ ପ୍ରଶସ୍ତ ! ମନେ ହେଲା—ଏଇ ଭଲ । ବାକି ଦିନ କେଇଟା ଏଇ ଘାଟରେ ବାଟରେ ବସା ବାନ୍ଧି ଗୀତ ଗାଇ ଭିକ୍ଷା କରି କଟାଇଦେବ ସେ ।

ପର ଦିନ ଅପରାହ୍ଣରେ ଆଗରେ ଗାମୁଛା ପକାଇ ଘାଟର ପାଙ୍‌ଜରେ ବସି ସେ ଗୀତ ଧରିଲା—

"ଏଇ ଖେଦ ମୋର ମନେ"—

କଣ୍ଠସ୍ୱର ତାହାର ଅତି ମିଷ୍ଟ । ଲୋକ ଜମିଲେ । ପଇସା ବି କିଛି ପଡ଼ିଲା; କିନ୍ତୁ ଗୀତ ଶେଷରେ ଜଣେ କହିଲା—କାଶୀକୁ ଆସି ଏ ଖେଦ କାହିଁକି ରେ ଟୋକା ?

ଜଣେ ମହିଳା କହିଲେ—ହଁ ବାବା, ଭଲ ଗୀତ ଗାଅ । ମହାଜନଙ୍କ ପଦ ଗାଅ । ରାମପ୍ରସାଦଙ୍କ ଗୀତ—କମଳାକାନ୍ତଙ୍କ ଗୀତ—ଏଇସବୁ ଗୀତ ।

ସେ ଏଥର ଧରିଲା—

"ମୋର କାଶୀ ଯିବାକୁ ମନ ନାହିଁ ଛଲେ
ସର୍ବନାଶୀ ମୁକ୍ତକେଶୀ—ସେ ଯେ ସଙ୍ଗେ ସଙ୍ଗେ ବୁଲେ ?"

ଗୀତ ହାରିବା ସଙ୍ଗେ ସଙ୍ଗେ ମନ ଯେପରି ତାହାର ବିକଳ ହୋଇଗଲା । ତାହାର ପୂର୍ବ ଅନ୍ତରଟା ଗୋଟାଏ ଗମ୍ଭୀର ବେଦନାର ଉଦାସୀନତାରେ ଭରିଉଠିଲା । ତାହାର ମନେ ପଡ଼ିଗଲା ଗ୍ରାମର ମା' ଚଣ୍ଡୀଙ୍କ କଥା । ରାମପ୍ରସାଦଙ୍କ ମୁକ୍ତକେଶୀ ଭଲା ମା' ଚଣ୍ଡୀ

ଆଜି ଏହି କାଶୀ ବି ଆସି ତାହାର ଆଖପାଖରେ ବୁଲୁଛନ୍ତି । ମାଆଙ୍କ ପଛେ ପଛେ ଯେମିତି ବସନ୍ତ ବୁଲୁଅଛି, ଠାକୁରଝୀ ବୁଲୁଅଛି, ରାଜନ ବୁଲୁଅଛି । ବିପ୍ରପଦ ବୁଲୁଅଛି । ମାଉସୀ, ବେହେଲ୍‌ଦାର—ଭିଡ଼ କରି ବୁଲୁଛନ୍ତି । କାଶୀଠାରୁ ତାହାର ଗ୍ରାମ ଭଲ । କାଶୀରେ ଜୀବନ ପାଇଁ ଖେଦ କରିବାର ନାହିଁ; କିନ୍ତୁ ଜୀବନଲାଗି ଖେଦ ନ କରି ସେ ବଞ୍ଚିବ କେମିତି ? ନିତାଇ ଚୁପ୍ ହୋଇ ବସିରହିଲା ।

ଗ୍ରୀଷ୍ମକାଳର ସନ୍ଧ୍ୟା । ଏଠାରେ ଏଇଲା ପ୍ରଚଣ୍ଡ ଗରମ । ପାଟ ଓ ଘାଟ ଉପରର ରାସ୍ତାରେ ଦଳକୁ ଦଳ ଲୋକ ଯା' ଆସ କରୁଚନ୍ତି, କଥାବାର୍ତ୍ତା କରୁଚନ୍ତି—କିନ୍ତୁ ସବୁ କଥାଗୁଡ଼ାକ ହିଁ ଯେପରି ନିତାଇ ପାଖରୁ ବହୁଦୂରର କଥା ଭଳି ମନେ ହେଉଅଛି, ସ୍ୱରଧ୍ୱନିର ରାହାଟି ମାତ୍ର କାନକୁ ଆସୁଅଛି; କିନ୍ତୁ ଶବ୍ଦର ଅର୍ଥ ଅସ୍ପଷ୍ଟ ଓ ଦୁର୍ବୋଧ । ପାଖରେ ଥାଇ କରି ବି ମଣିଷଗୁଡ଼ିକ ଯେପରି ଅନେକ ଦୂରର ମଣିଷ ।

ଭଲ ଲାଗୁନାହିଁ । ଏ ତାହାକୁ ଭଲ ଲାଗୁନାହିଁ ! ହେଉ ପଛେ କାଶୀ, ବିଶ୍ୱନାଥଙ୍କ ରାଇଜ, ସ୍ୱର୍ଗର ସିଂହଦରଜା; ତଥାପି ତାହାକୁ ଭଲ ଲାଗୁନାହିଁ । ଭିକ୍ଷା ତାକୁ ଭଲ ଲାଗୁନାହିଁ । ମହାଜନଙ୍କ ପଦ ତାହାକୁ ଭଲକରି ଜଣାନାହିଁ । ଆଉ ନିଜ ଗୀତ ଗୁଡ଼ା ଏସବୁ ଗୀତ ଯେତେ ଭଲ ହେଉ ପଛେ ଗାଇକରି କାଳ କଟାଇବାର କଳ୍ପନା ବି ସେ କରିପାରେ ନାହିଁ । ନିଜର ଯେପରି ସେଭଳି ପଦ ଆସିବ ନାହିଁ । ତା ଛଡ଼ା ଏଇ ଭିକ୍ଷା ବୃତ୍ତିରେ ସେ ବି ଠିକ୍ ଆନନ୍ଦ ପାଉନାହିଁ । କାହିଁ ଆନନ୍ଦ ! ସେ ଅନ୍ତତଃ ପାଉନାହିଁ ସେହି କବିଗାନର ଆସର । ଝଲମଲ ଆଲୁଅ । ହଜାର ହଜାର ଲୋକ ! ଭଲ ଲାଗୁନି ତାକୁ ।

ମନେ ପଡ଼ିଲା ମାଆଙ୍କ କଥା କେଇଟି—କବିୟାଲ ତୁ, ଦେଶକୁ ଫେରିଯାଅ । ସ୍ତବ୍ଧ ହୋଇ ଅନେକ ସମୟ ସେ ବସିରହିଲା । କେତେବେଳ ପରେ—ତାର ଖିଆଲ ନାହିଁ—ଅକସ୍ମାତ୍ ସେ ଅନୁଭବ କଲା—ଲୋକ-କୋଳାହଳ ବନ୍ଦ ହୋଇଯାଇଅଛି । ସଚେତନ ହୋଇ ଚାରିଆଡ଼େ ଚାହିଁ ଦେଖିଲା—ଲୋକବାକ ନାହାନ୍ତି; ବୋଧେ ଯେଝା ଘରକୁ ଫେରିଗଲେଣି । ଘାଟ ଉପରେ ଦୁ ଚାରିଜଣ ଲୋକ ନିଦରେ ଅଚେତନ ହୋଇ ପଡ଼ିଛନ୍ତି । ସେ ବି ଘାଟ ଉପରେ ଶୋଇପଡ଼ିଲା । ଏଇ ଗଭୀର ରାତିରେ ଅଚିହ୍ନା ସହରରେ ବାଟ ଚିହ୍ନି ଯିବା ସମ୍ଭବପର ହେବ ନାହିଁ । ଆଉ କୁଆଡ଼କୁ ବା ଯିବ ? ଚାରିଆଡ଼ ନିସ୍ତବ୍ଧ । କେବଳ ଘାଟତଳେ ଗଙ୍ଗାସ୍ରୋତର ନିମ୍ନସ୍ୱରର କଳଧ୍ୱନି ଶୁଣା-ଯାଉଅଛି । ସେହି ଶବ୍ଦ ହିଁ ସେ ଶୁଣିବାକୁ ଲାଗିଲା । ଅପରିଚୟର ପୀଡ଼ାରେ ପୀଡ଼ିତ ଅସ୍ୱଚ୍ଛନ୍ଦ ତାହାର ମନ ଅଦ୍ଭୁତ କଳ୍ପନାପ୍ରବଣ ହୋଇଉଠିଥିଲା—ଗଙ୍ଗାସ୍ରୋତର ଶବ୍ଦ ଶୁଣି ଶୁଣି ନିତାଇର ମନେହେଲା—ଗଙ୍ଗା ବି ଯେପରି ଦୁର୍ବୋଧ ଭାଷାରେ କଥା କହୁଅଛି ।

କଣ୍ଠଓ୍ୱାରେ, ନବଦ୍ୱୀପରେ ତ ସେ ଗଙ୍ଗାର ଶବ୍ଦ ଶୁଣିଅଛି; କଣ୍ଠଓ୍ୱାରେ ଯେଉଁ ଦିନ ବସନ୍ତର ଦେହ ପୋଡ଼ାଇଥିଲି, ସେଦିନ ତ ଗଙ୍ଗା ସ୍ପଷ୍ଟଭାଷାରେ କଥା କହିଥିଲି । ଏଠାକାର ସବୁକିଛି କଣ ଦୁର୍ବୋଧ ଭାଷାରେ କଥା କହନ୍ତି ?

ପୁଣି ତାର ମାଆଙ୍କ କଥା ମନେ ପଡ଼ିଗଲା । ଦିନସାରା ସେ ଚଢ଼େଇଙ୍କ ଡାକ କେତେ ଶୁଣିଅଛି; କିନ୍ତୁ 'ଉଠରେ ପୁତ୍ର' ବୋଲି ତ ତାଙ୍କ ଭିତରୁ କେହି ଡାକନାହିଁ—'ଆଖି ଗଲି' ବୋଲିକରି ତ କୋଉ ଚଢ଼େଇ ଡାକ ନାହିଁ—'କୃଷ୍ଣ କୁଆଡ଼େ' କହିକରି ବି ତ କେଉଁ ଚଢ଼େଇ କାନ୍ଦି ବୁଲିନାହିଁ ଏଠାରେ । କୁଆର ଡାକ ବି କେମିତିକା ଭିନେ ଏଠାରେ ! ମା ତାକୁ ଯାହାସବୁ କହିଛନ୍ତି ତାହାହିଁ ଠିକ୍ କଥା ।

ଅକସ୍ମାତ୍ ତାହାର ମନେ ହେଲା—ବିଶ୍ୱନାଥ ? ବିଶ୍ୱନାଥ ହିଁ ଯେ ଏହି ରାଜ୍ୟର ରାଜା, ତେବେ ସେ ବି କଣ—ଏଇ ଦେଶର ଭାଷା କହନ୍ତି ? ତାଙ୍କର ଏହି ଭକ୍ତମାନଙ୍କ ଭଳି ତେବେ କଣ ସେ ବି ତାର କଥା—ତାହାର ବନ୍ଦନା ବୁଝିପାରନ୍ତିନ ? ହିନ୍ଦୀ ଭଜନ ? ହିନ୍ଦୀ ଭଜନରେ ହିଁ କଣ ସେ ବେଶୀ ଖୁସି ହୁଅନ୍ତି ? 'ମା ଅନ୍ନପୂର୍ଣ୍ଣା'—ସେ ବି କଣ ହିନ୍ଦୀ କହନ୍ତି ? ଭୋକବେଳେ ସେ ଯେବେ ନିତାଇକୁ ପଗ୍ଭରିବେ—ତେବେ କଣ ସେଇ ହିନ୍ଦୀରେ କଥା କହିବେ ? ତେବେ ? ତେବେ ସେ କାହାକୁ ଗୀତ ଶୁଣାଇବ ? ପୁଣି ତାର ମନେ ପଡ଼ିଲା—ତାଙ୍କ ଗାଆଁର ଚଣ୍ଡୀଙ୍କ କଥା, ସଙ୍ଗେ ସଙ୍ଗେ 'ବୁଢ଼ା ଶିବ'ଙ୍କୁ । ପାଗଳିନୀ ବାଉଳି ମାଆ । ଭାଙ୍ଗୋଡ଼ ଭୋଳା !

"ଆଲୋ ଦିଗମ୍ବରୀ ନାଚ ଗୋ ।"

ସଙ୍ଗେ ସଙ୍ଗେ ବେହେରାର କାନ୍ଧରେ ଚଢ଼ି ବାଉଳି ମାଆ ନାଚେ ।

"ହାଡ଼ର ମାଳ ବେକରେ ଝୁଲେ ଭୋଳା ନାଚେ ଥେଇଥା ଥେଇ ।"

ଭୋଳାନାଥ ନାଚନ୍ତି, ତାଙ୍କ ସାଙ୍ଗରେ 'ଗାଜନ'ର ଭକ୍ତମାନେ ବି ନାଚନ୍ତି । ହଜାର ହଜାର ଧାଡ଼ି ଧାଡ଼ି ଲୋକ ପାଖଆଖରେ ଯେଉଁମାନେ ଠିଆହୋଇଥାନ୍ତି, ସେମାନେ ବି ମନେ ମନେ ନାଚନ୍ତି । ପୁଣି ସର୍ବନାଶୀ ମୁକ୍ତକେଶୀ ପରି ମା' ଚଣ୍ଡୀ ଆସି ତା ଆଗରେ ଠିଆହେଲେ । ତାଙ୍କ ସାଙ୍ଗରେ ସମସ୍ତେ ! ସମସ୍ତଙ୍କୁ ମନେ ପଡ଼ିଲା ।

ପ୍ରଥମରେ ମନେ ପଡ଼ିଲା ଝୁମୁର ଦଳଟିକି—ନିର୍ମଳା ଭଉଣୀ ବି ମନେ ପଡ଼ିଲା—ଲଳିତା ମନେ ପଡ଼ିଲା—ମାଉସୀ ଆସି 'ବାପା' କହି ତାହାର ଆଖିଆଗରେ ଉଭା ହେଲି । ବେହେଲଦାର, ପାଲଆ, ବାଜଣାଦାର, ରାଜନ, ବଣିକ ମାତୁଳ, ବିପ୍ରପଦ ବ୍ରାହ୍ମଣ—ମନେ ପଡ଼ିଲା କୃଷ୍ଣଚୂଡ଼ା ଗଛମୂଳେ ବାଟକୁ ଗୃହିଁ ଠିଆହେଇଚ, ଏଇ ତ !—

ଗାଆଁ ପାଖର ନଈକୂଳରେ ଚଡ଼ାଭୂଇଁରେ ପଶିବା ଗୃଷ, ବସ୍ତ୍ରୀର୍ଣ୍ଣ ପଡ଼ିଆ, ବୈଶାଖରେ ପଡ଼ିଆର ଧୂଳି, କାଳବୈଶାଖି ଝଡ଼, କଳା ମେଘ, ଘନଘୋର ଅନ୍ଧାର, ସେଇ ଆଖିଝଲସା ବିଦ୍ୟୁତ୍—ସେଇ କଡ଼ମଡ଼ ଶବ୍ଦରେ ମେଘ ଗର୍ଜନ—ଝରଝର ବର୍ଷା —ସବୁ ମନେ ପଡ଼ିଲା । ପୂର୍ଣ୍ଣିମାରେ ଧର୍ମରାଜ-ପୂଜାର ଉତ୍ସବ । ଢୋଲ କାହାଳୀ ଘଣ୍ଟ ବାଜଣା ସାଙ୍ଗରେ ଫୁଲମାଳ ବେକରେ ଝୁଲେଇ ଭକ୍ତଙ୍କର ନାଚ । ଗଞ୍ଜର ବାଡରେ ବଗିଗୃରୁ ଭକ୍ତଦଳଙ୍କର ଫଳ ସଗ୍ରହ; କେତେ କଥା ମନେ ପଡ଼ିଗଲା; ବାବୁଘର ପୁରୁଣା ବଗିଗୃରେ ଗଛ କୋରଡ଼ରେ ଅଜଗର ପରି ଗୋଖର ସାପର ବସା; ଗୋଖରଗୁଡ଼ାକ ଡାଳକୁ ଡାଳ ବୁଲନ୍ତି, ଦୋଳି ଖେଳନ୍ତି; କିନ୍ତୁ ଭକ୍ତମାନେ ଯେତେବେଳେ 'ଜୟ ଧର୍ମରାଜା' କହି ରୋଳ କରି ଗଛରେ ଚଢ଼ନ୍ତି, ସେତେବେଳେ ସେଗୁଡ଼ା ସନ୍ତର୍ପଣରେ କୋଉଠି ଯାଇ ଲୁଚିଯାଆନ୍ତି । ବଗିଗୃର ସେହି ପୁରୁଣା ବରଗଛମୂଳେ ଅରଣ୍ୟଷଷ୍ଠୀ ଦିନ ଝିଅଙ୍କ ସମାରୋହ ମନେ ପଡ଼ିଲା । ହିଡ଼ବାଟ ଦେଇ ବିଚିତ୍ର ବର୍ଣ୍ଣର ଲୁଗାପଟାପିନ୍ଧା ଧାଡ଼ି ଧାଡ଼ି ଝିଅଙ୍କର ଯିବାର ଛବି ନିତାଇର ଆଖିଆଗରେ ଭାସିଉଠିଲା । ହିଡ଼ର ଦି'କଡ଼େ ନହନହକା ଘନ ସବୁଜ ବିଆଲି ଧାନର ବିଲ, ମଝିରେ ବାଟ । ଆଷାଢ଼ ଆସୁଅଛି ଆକାଶରେ ହୁଏତ । ଏହାରି ଭିତରେ ମେଘ ଦେଖାଦେଇଛି, ଶ୍ୟାମଳ ରଙ୍ଗର ଜଳଭରା ବିଜିଦ ! ଭାବୁ ଭାବୁ ନିତାଇର ବାରମାସୀ ଗୀତ କଥା ମନେ ପଡ଼ିଲା ।

"ବଇଶାଖେ ସୂର୍ଯ୍ୟଛଟା—
ଯେତେ ସୂର୍ଯ୍ୟଛଟା—
କାଠ ଫଟା—
ସେତେ ଘଟା
କାଳବୈଶାଖି ମେଘରେ
ଲକ୍ଷ୍ମୀ ମାପନ୍ତି ବିହନ ଧାନ ଗୃଷ ଖେତ ଆଗରେ
ପୁଣ୍ୟ ଧରମ ମାସରେ —
ପୁଣ୍ୟ ଧରମ ମାସରେ—ଧରମ ଆସଇ—ପୂର୍ଣ୍ଣିମାରେ ଧର୍ମରଜାଙ୍କ ପୂଜାଗୋଟି
ମୋ ପରାଣ କାନ୍ଦେରେ ହାଇରେ ବିଧି, କାଠ ପରି ମୋ' ବକ୍ଷ ଯାଏ ଫାଟି ।

ତାପରେ ଜ୍ୟୈଷ୍ଠ ଆସେ—
ଜ୍ୟୈଷ୍ଠ ଆଇଲେ ଗଛମୂଳେ ଝିଅଙ୍କ ମେଳେ ଅରଣ୍ୟଷଷ୍ଠୀ ପୂଜା
କୋଇଁ ଆସେ କନିଆଁ ହସେ ସାଜହୁଏ ନାନା ସଜା
ଦଶହରାରେ ଚତୁର୍ଭୁଜା —

ଦଶହରାରେ ଚତୁର୍ଭୁଜା—ଗଙ୍ଗାପୂଜା, ଏଥର ସିଧା ବାଲି ଭାସିବ ବଢ଼ିରେ
ମୋହର ପରାଣ କାନ୍ଦେ ହାଇ ରେ ବନ୍ଧୁ, ଆଖିଲୁହ ବକ୍ଷେ ଯାଏ ଗଡ଼ିରେ ।"

ଏମିତି କରି ଆଷାଢ଼ର ରଥଯାତ୍ରା—ବର୍ଷାର ବାଦଲରେ ବିଜୁଳୀଙ୍କ ଲଢ଼େଇ, ଶ୍ରାବଣର ଝୁମ୍‌ଝୁମ୍ ବରଷାରେ ତନ୍ତୁ ଧାନଭରା ବିଲ ପାରିହୋଇ ବାବାଜୀଙ୍କ ଆଖଡ଼ାରେ ଝୁଲଣ ଉତ୍ସବ ଦେଖିବାର ସ୍ମୃତିଠାରୁ ଚଇତର ଗାଜନ*—ମନେ ପକାଇ ପକାଇ ସେ ଗୋଟିଏ ନୂଆ ବାରମାସୀ ଗୀତ ମନର ଆବେଗରେ ରଚନା କରି ପକାଇଲା—

> "ବରଷ ଶେଷେ ଚଇତ ଆସେ—
> ବରଷ ଶେଷେ ଚଇତ ଆସେ, ଆସି ବସେ ଅନ୍ନପୂର୍ଣ୍ଣା ପୂଜାର ମେଢ଼େ
> ଭଣ୍ଡାର ତ ପରିପୂର୍ଣ୍ଣ, ବିଲ ଶୂନ୍ୟ, ଡାଳପୁଷ୍ପ ଫୁଟଇ ଡାଳି ବିଲେ
> ତେଲ ନାହିଁ ହାଣ୍ଡି ଶିବଙ୍କ ମାଥେ, ଭରତ କଟେ, ଅଙ୍ଗେ ପାଉଁଶ
> ଗାଜନରେ ଭୂତ ନାଚଲେ ।
> ମୋହର ପରାଣ କାନ୍ଦେ—ହାଇରେ ବନ୍ଧୁ—
> ତେଣା ମେଲଇ ଉଡ଼ିଯାନ୍ତୁ କି ହେଲେ ।"

ଅଧୀର ହୋଇ ସେ ପ୍ରଭାତର ପ୍ରତୀକ୍ଷା କରି ରହିଲା । ବାର ବାର ଏଠାକାର ନୂଆ ମାଆଙ୍କୁ ଉଦ୍ଦେଶ୍ୟ କରି ମନେ ମନେ କହିଲା—ତମେ ମତେ ଛଳନା କରୁଛ ମା' ! ସେଠାକାର ମାଆ ତମେ, ମୋତେ ଲେଉଟାଇବାକୁ ପରା ଆଗରୁ ଏଠାରେ ବସିରହିଛ ! ତମର ଆଜ୍ଞା ମୁଁ ମଥାପାତି ନେଲି । ଶିରୋଧାର୍ଯ୍ୟ କଲି ।

ମାସେ ପରେ କୌଣସି ପ୍ରକାର କାଶୀରେ କଟାଇ ନିତାଇ ପୁଣି ଥରେ ଟ୍ରେନରେ ଚଢ଼ିଲା । କେମିତି ହେଲେ ସେ ଏଠାରେ ରହିପାରିଲାନି ।

ଏଇ ମାସକ ସେ ଭଲକରି ଶୋଇପାରିନାହିଁ । ତାହା ସଙ୍ଗରେ ଉତ୍କଣ୍ଠାର, ଉଦ୍‌ବେଗର ତାର ଅବସାନ ହୋଇଅଛି ! ନିଦ ଯେପରି ତାହାକୁ ମାଡ଼ିବସିଅଛି । ମୋଗଲସରାଇ ଜଙ୍କ୍‌ସନରେ କୌଣସିମତେ ଉଠି ଟ୍ରେନ୍ ବଦଳାଇ ନୂଆ ଗାଡ଼ିରେ ଚଢ଼ି ସେ ବର୍ତ୍ତିଗଲା । ଛାତରୁ ଝୁଲୁଥିବା ବେଞ୍ଚ୍‌ରୁ ଗୋଟିଏ ଖୋଲିଥିଲା, ସେଇ

* ପର୍ବବିଶେଷ; ଶିବପୂଜା ହୁଏ ।

ବେଞ୍ଚ୍‌ରେ ଚଡ଼ିକରି ସେ ଶୋଇପଡ଼ିଲା । ଆଃ—ନିଶ୍ଚିନ୍ତ ! ଆପଣାର ସୁନା ଦେଶକୁ ନିଜ ମାଆକୋଳକୁ ଫେରିଚାଲିଛି ସେ ।

ପରଦିନ ସକାଳେ ଯେତେବେଳେ ତାହାର ନିଦ ଭାଙ୍ଗିଲା, ସେତେବେଳେ ମନେ ହେଲା ଅତି ପରିଚିତ କେହି ଜଣେ ତାହାକୁ ଡାକୁଅଛି । ପରିଚିତ କେହି ଖୁବ ମିଠା ସୁରରେ ତାହାକୁ ଡାକୁଛି—

—ଉଠ, ଉଠ, ଉଠ ।

—କିଏ, କିଏ ?

ନିତାଇ ଧଡ଼ପଡ଼ କରି ଉଠିବସିଲା ।

ନା, ଚନ୍ଦ୍ରାଜଣା କେହି ନୁହେ, ତାକୁ ବି ନୁହେ । ତଳ ବେଞ୍ଚରେ ଜଣେ ଲୋକ ବେଞ୍ଚଟାଯାକ ମାଡ଼ି ଶୋଇରହିଛି, ତାହାକୁଇ କେତେଗୁଡ଼ାଏ ନବାଗତ ଯାତ୍ରୀ ଡାକୁଚନ୍ତି —ଉଠ, ଉଠ ।

ନିତାଇ ନିଃଶ୍ୱାସ ଛାଡ଼ି ଉଠିବସିଲା । ଆଃ, ଗାଡ଼ିଟା ଚନ୍ଦ୍ରାମୁହଁରେ ଯେମିତି ଯୁରି-ଯାଉଛି । ନମସ୍ତେ ଚନ୍ଦ୍ରା, ନମସ୍ତେ ଚନ୍ଦ୍ରା ! ନିତାଇ ଜଲଦି ଜଲଦି ଉପରୁ ତଳକୁ ଆସି ସବିନୟରେ ଆଗନ୍ତୁକ ଯାତ୍ରୀମାନଙ୍କ ଭିତରୁ ଜଣକୁ କହିଲା—ମାଲଗୁଡ଼ା ଉପରକୁ ଟେକି ଦେବି ?

—ଦିଅ ତ ଭାଇ, ଦିଅ ତ ।

—ବୁଢ଼ାଟିଏ ହେଇଥା ବାପା, ବଡ଼ ଭଲ ପିଲା ତୁ । ଜଣେ ବୃଦ୍ଧ ତାହାକୁ ଆଶୀର୍ବାଦ କଲା ।

ମାଲଯାକ ଟେକିଦେଇ ନିତାଇ ଝରକାଦେଇ ମୁହଁ ବଢ଼ାଇ ଦେଖିଲା । ଇଷ୍ଟସନ ବାହାର ଆଡ଼କୁ ଚାହିଁ ତାହାର ଆଖିଟି ପୂରିଉଠିଲା । ସବୁ ଚନ୍ଦ୍ରା—ସବୁ ଚନ୍ଦ୍ରା ! ଆଃ—ତେବେ ତ ଦେଶକୁ ଆସିଯାଇଚି ସେ ! ଝରକାର ବାହାରେ ବଙ୍ଗଳା ଦେଶ । ସବୁ କିଛି ଚନ୍ଦ୍ରା । ରାଣୀଗଞ୍ଜ ପାରିହେଲା । ଏଇଥର ବର୍ଦ୍ଧମାନ । ବାହାରେ ଆକାଶରେ ମେଘ ଘୋଟିରହିଛି ।

ବର୍ଦ୍ଧମାନରେ ଗାଡ଼ି ବଦଳ କରି—ଘଣ୍ଟା ଦି'ଘଣ୍ଟା ମାତ୍ର, ତାହାପରେଇ ସେ ଗାଆଁକୁ ଯାଇ ପହଞ୍ଚିବ । ମା ଚଣ୍ଡୀ, ବୁଢ଼ା ଶିବ ।

ମା ଚଣ୍ଡୀ, ବୁଢ଼ା ଶିବଙ୍କ ସମ୍ମୁଖରେ ବସିକରି ସେ ଭଗବାନଙ୍କୁ ଗୀତ ଶୁଣାଇବ । ତୀର୍ଥରୁ ତୀର୍ଥ, ମେଳାରୁ ମେଳା—ତାରକେଶ୍ୱର କାଳିଘାଟକୁ ଯାଇ ଗୀତ ଶୁଣାଇ ଆସିବ । ଦେଶର ଜିଲ୍ଲାକୁ ଜିଲ୍ଲା ବୁଲି ଲୋକଙ୍କୁ ଗୀତ ଶୁଣାଇବ । ନିଶ୍ଚୟ କରି ସେ ଜାଣେ ଯେ, ସେ ସେମାନଙ୍କୁ ଗୀତ ଶୁଣାଇ ପରିତୃପ୍ତ କରି ପାରିବ । ସେ ଏଥର ନିଜେଇ

କବିଦଳ କରିବ । ଏଇଟା ତାର ନାଁ ହୋଇଛି, ବନ୍ଧନାର ଅଭାବ ହେବନାହିଁ । କବିୟାଲ ନିତାଇ ଚରଣ ନାଆଁରେ ଦେଶଲୋକ ବି ଲହଡ଼ି ଭଳି ମାଡ଼ିଆସିବେ । ମେଳା-ମଉଚ୍ଛବରେ ଗାଳିଗୁଲଜ କରି ଗୀତ ନହେଲେ ଚଳିବନି । ତାହା ଭିତରେ ବି କୌତୁକ ଅଛି; ତଥାପି ସେ ଭଲ ପାଇବାର ଗୀତକୁଇ ସାର କରିବ । ବସନ୍ତକୁ ହରାଇ ସେ ବୁଝିପାରିଅଛି ପୃଥିବୀମଧ୍ୟ ସେଇ ଗୋଟିଏ ଖେଦ—ଜୀବନ ଏତେ ଶ୍ରେଷ୍ଠ କିପାଁ ? ଭଲପାଇ ଆଶା ମେଣ୍ଟିଲା ନାହିଁ, ଶ୍ରେଷ୍ଠ ଏତେ ଟିକିଏ ଜୀବନର ପରିସର, ସେତିକି ଭଲପାଇବା'ଲାଗି ଅଣ୍ଟେନା ? ଭଲ ପାଇବାର ଗୀତ । ଖେଦର ଗୀତ—'ଏଇ ଖେଦ ମୋର ମନେ ।'—ସେଇ ଖେଦର ଗୀତ ! ବସନ୍ତର ନାଁ ନେଇ ଗୀତ ।

କୋକିଳ କଣ ବସନ୍ତକୁ ଭୁଲିପାରେ ?

ଏକ୍ସପ୍ରେସ ଟ୍ରେନ୍‌ଟା ରହିଗଲା । ଗୋଟାଏ ବଡ଼ ଷ୍ଟେସନ ଆସିଯାଇଛି ।

ବର୍ଦ୍ଧମାନ ! ବର୍ଦ୍ଧମାନ !

ବର୍ଦ୍ଧମାନଠାରୁ ଲୁପ୍-ଲାଇନ୍‌ର ଟ୍ରେନ୍ । ନିତାଇ ପୁଣି ସେଇ ଟ୍ରେନ୍‌ରେ ଚଢ଼ି ବସିଲା ! ମନେ ମନେ ସେତେବେଳକୁ ତାହାର ଗୀତବନ୍ଧା ଆରମ୍ଭ ହୋଇଯାଇଛି । ଗାଆଁରେ ପହଞ୍ଚିକରି ସେ ସବାଆଗ ମା' ଚଣ୍ଡୀଙ୍କ ପାଖୁ ଯିବ ପ୍ରଣାମ କରିବାକୁ । ସେହି ପ୍ରଣାମ ପାଇଁ ସେ ଗୀତ ବାନ୍ଧିବା ଆରମ୍ଭ କରିଅଛି । ଏହି ଗୀତ ଗାଇକରି ସେ ମାଆଙ୍କୁ ପ୍ରଣାମ କରିବ । ଜୟନ୍ତୀ ମଙ୍ଗଳା କାଳୀ ନୁହେଁ, ସେ ନିଜର ଗୀତ ଗାଇକରି ମାଆଙ୍କୁ ପ୍ରଣାମ କରିବ ।

“ଓ କର ମା'—ହେ ମା' ଓଁ କର
ଘରଛଡ଼ା ପୁଅ ତୋ ଆଇଚି କେତେ ବିଦେଶଭୁଇଁ ବୁଲି
ତୋ ଜବାବ ନ ପାଇଲେ ମା' ଆଉ କିଛିରେ ମନ ଲାଗେନା,
ନାଚ ତାଳରେ ଗୋଡ଼ ଚଳେନା, ଆଖିରୁ ଲୁହ ବୁହଇ ଖାଲି ।”

ଆକାଶ ସାରା ଘନକଳା ମେଘ । ସୁ-ସୁ କରି ମେଘ ବତାସ ବହୁଛି । ଆଃ, ଦେହ ଅଣ୍ଡା ହୋଇଯାଉଛି । ମାଟିର ଗୁନ୍ଧ ଆଉ ଦଶୁନାହିଁ, ନହନହକା କଞ୍ଚା ଘାସରେ ଭରିଯାଇଛି । ଓଃ—ଏହାର ଭିତରେ ଏଆଡ଼େ ବର୍ଷା ହୋଇଗଲାଣି ! ଶୁଷ ହୋଇଥିବା

ବାଲଗୁଡ଼ିକର କଳା ମାଟି ପାଣିରେ ଚନ୍ଦ୍ର ଆଦରଣୀ ଟିଅଟି ଭଳି ଡୋଳାଧରିଲେ ଯେମିତି ତରଳିଯିବାକୁ ଚାହିଁବ । ଟେଲିଗ୍ରାଫ୍ ଖୁଣ୍ଟ ଉପରେ ଗୋଟାଏ ଓଦା କୁଆ ଡେଣା ଦିଟା ଅଳ୍ପ ମେଲାଇ ଦେଇ ବେକ ବଙ୍କେଇ ବସିରହିଛି; ମନଖୁସିରେ ଥନ୍ଥୁଅଛି । ଅଶ୍ୱତ୍ଥ ବଟ ଶିରଷର ନୂଆ ପତ୍ରଗୁଡ଼ିକ ଓଦା ହୋଇ ଥରୁଛନ୍ତି । ଲାଇନର ଦୁ'କଡ଼ରେ ବୁଦା-ଗୁଡ଼ିକରେ ଗୋଛା ଗୋଛା କେତକୀ ଫୁଲ ଫୁଟିଅଛି ! ଆହା—ହା ! ହେଇ, ଦୂରରେ ନାଳକୂଳରେ ଗୋଟାଏ କିଆବୁଦା ପବନରେ ଦୋହଲୁଛି । କିଆବୁଦାଟାର ସୌନ୍ଦର୍ଯ୍ୟ ଦେଖାଉଛି ସବୁଠୁଁ ବେଶୀ ! ସଙ୍ଗେ ସଙ୍ଗେ ପୁଣି ତାର ବସନ୍ତ କଥା ମନେ ପଡ଼ିଗଲା—

"ଏଇ ଭୁଲଟା କାହାର ହାୟ ରେ !
ମନମତାଣିଆ ବାସ୍ନା ଭରିତ ବୁକୁରେ
କରତକଣ୍ଟା ଦେଇ ଘେରିଲା କିଆଫୁଲର ଧାର ।"

ଝମର-ଝମର ଶବ୍ଦରେ ଟ୍ରେନ୍ ଚାଲିଅଛି । ସଙ୍ଗେ ସଙ୍ଗେ ବର୍ଷା ବି ହେଉଅଛି । ମଝିରେ ମଝିରେ ମେଘ ଉପରେ ଘନେଇ ଆସୁଅଛି ସନ୍ଧ୍ୟାବେଳର କଳା ଗଡ଼ିଆର ପାଣିର ରଙ୍ଗ ପରି ରଙ୍ଗ; ବର୍ଷା ଜୋର ହେଉଅଛି, ଏଇମିତି ଚାରିଆଡ଼ ଝାପ୍ସା । ଓଃ, ଇଆଡ଼େ ଖୁବ୍ ବର୍ଷା ହେଇଯାଇଛି । ପଡ଼ିଆ ପାଣିରେ ଭାସୁଅଛି । ବେଙ୍ଗଙ୍କର କଟର୍-କଟର୍ କଟର ଡାକ ଟ୍ରେନ୍‌ର ଶବ୍ଦକୁ ଡେଇଁକରି ବି କାନକୁ ଆସୁଅଛି । ଇଆଡ଼େ ତ ଅଡ଼ଡ଼ା ପଡ଼ିଗଲା । ଘମ୍-ଘମ୍ ଗମ୍-ଗମ୍ ଶବ୍ଦରେ ଟେ୍ରନଟା ଧ୍ରୁପଦ-ଗଢ଼ରେ ଗୀତ ଆରମ୍ଭ କଲା । ନଈର ପୋଲ । ଗେରୁଆ ରଙ୍ଗର ପାଣିରେ ଧଳା ଧଳା ଫେଣ ଭାସି ଚାଲୁଅଛି । ଏପାରିରୁ ସେପାରିଯାକେ ନାଳ ପାଣି ଦୁ'କୂଳ ଭରିଛି । ପାଣି ଭଉଁରି ଖାଉଛି, ପୁଣି ତୀର-ବେଗରେ ସିଧା ଧାଇଁ ଚାଲିଅଛି । ଦୁଇପାଖରେ କାଶତଣ୍ଡୀ ବଣ, ଘନ ସବୁଜ । ଅଜସ୍ର ! ଅଜସ୍ର ନୁହେଁ । ଦେଶକୁ ଆସିଯାଇଛି । ଦେଶ, ତାହାର ଗାଁ । ତାହାର ମା !

"ତୋ ଜବାବ ନପାଇଲେ ଯେ ମା, କିଛିରେ ମନ ଲାଗେନା
ଆଖିପତାରେ ନିଦ ଆସେନା ବନ୍ଧୁଯାଏ ମା' ଲୁହ ଖାଲି ।"

ଏଇ ଥର ବୋଲପୁର—ତାପରେ କୋପାଇ, ତାପରେ, ତାପରେ ଜଙ୍କସନ; ଗ୍ରେଟଲାଇନ୍—ଘଟର ଘଟର ଘଟର ଘଟର ଘଂ ଘଘଂ ଘଂ ଘଂ । ସର୍ବାଙ୍ଗରେ ଭୟଙ୍କର ଦୋହଲା ଦେଇ ନଗ୍ନକ ଗ୍ରେଟ ଲାଇନର ଗାଡ଼ିର ଚାଲି—ହାୟ ହାୟ ହାୟ ହାୟ ।

ସଙ୍ଗେ ସଙ୍ଗେ ନତାଇର ଗ୍ରୁଢ ଭିତରେ ନାଚୁଅଛି ନତାଇର ମନ । ପିଲାଟା ପରି ନାଚୁଅଛି । ଆଖିକୋଣରୁ ଲୁହ ଆସୁଅଛି ଏହି ଅଜୟ ନଈର ଜୁଆର ପରି । ମାଆଗୋ —ମା, ମୋ ମା । ମୋ ଗାଁ । ଏଇ ତ—ସେଇ 'ବମଚେର ଜୋଡ଼' 'ଉଦାସୀ ପଡ଼ିଆ'; ହେଇ ତ କାଶୀ ପୋଖରୀ; ଏଇ ତ ସେଇ କାଲୀ ବଗିଚ୍—ଯେଉଁ ବଗଚ୍ଛର ଗଛଗୁଡ଼ିକ ଥିଲେ ତାର କବି-ଜୀବନର ଗୀତଗୁଡ଼ିକର ପ୍ରଥମ ଶ୍ରୋତାଦଳ !

ଗାଡ଼ିଟା ଈଷତ୍ ବାଙ୍କିଲା—ଇଷ୍ଟ ସନରେ ପଶୁଅଛି । ହେଇ ତ, ହେଇ ତ ! ଗାଡ଼ି ରହିଲା ।

ଟ୍ରେନ୍ ଚାଲିଯାଇଛି ।

ନତାଇ ଠିଆହୋଇ ରହିଛି । ତାହାର ଗ୍ଭରପଟେ ବିସ୍ମିତ ଗୋଟିଏ ଜନତା । ନତାଇ ଏପରି ହବ ବୋଲି ପ୍ରତ୍ୟାଶା କରିନାହିଁ । ଏତେ ସ୍ନେହ, ଏତେ ସମାଦର ତାହା ପାଇଁ ସଞ୍ଚିତ ହୋଇ ରହିଛି ଏଠି ? ରାଜା ଚୁଣ୍ଡରେ ବି କଥା ନାହିଁ । ବେନେ-ମାମୁ, ଦେବେନ, କୃଷ୍ଣ ଦାସ, ରାମଲାଲ୍, କେଇଜଣ ଭଦ୍ରଲୋକ ମଧ୍ୟ ତାକୁ ଘେରି ଠିଆ-ହୋଇଛନ୍ତି । ଆଗରେ ସେହି କୃଷ୍ଣଚୂଡ଼ା ଗଛଟି । ଫୁଲର ସମୟ ଶେଷ ହୋଇ ଆସିଅଛି, ଘନ ସବୁଜ ଚିରି-ଚିରି ପତ୍ରରେ ଭରିଉଠିଅଛି; ତଥାପି ଦୁଇଗୁଚ୍ଛଟି ଫୁଲ ଯେପରି ନତାଇ ସକାଶେ ହିଁ ଧରି ରହିଛି । ନତାଇ ଆଖିରେ ଲୁହଧାର । ନତାଇ କାନ୍ଦୁଅଛି; କାନ୍ଦୁଅଛି ବିପ୍ରପଦ ବ୍ରାହ୍ମଣର ମୃତ୍ୟୁକୁ ଉପଲକ୍ଷ୍ୟ କରି । ବିପ୍ରପଦ ବ୍ରାହ୍ମଣ ମରି-ଯାଇଅଛି ।

ବିପ୍ରପଦ ସକାଶେ ନତାଇର କାନ୍ଦଣାରେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଯାଇଛନ୍ତି । କଥାଟା କୌତୁକର କଥା; କିନ୍ତୁ ନତାଇର ଏହି ନୀରବ ବିଗଳିତ ଅଶ୍ରୁଧାରା ଏପରି ଗୋଟିଏ ଅନୁଚ୍ଛ୍ୱସିତ ପ୍ରଶାନ୍ତ ମହିମାରେ ମହିମାନ୍ୱିତ ହୋଇଉଠିଥିଲା ଯେ, ତାହାର କାନ୍ଦକୁ ଉପହାସ କରିବାର ଉପାୟ ନଥିଲା । ନତାଇର କବିୟାଲଗିରିର ଖ୍ୟାତି ଦେଶରେ ସମସ୍ତେ ଶୁଣିଛନ୍ତି, ତାହା ଲାଗି ସମସ୍ତେ ତାହାକୁ ଶ୍ରଦ୍ଧା ନହେଲେ ନ ହିଁ ପ୍ରଶଂସା ବି କରନ୍ତି ମନେ ମନେ; କିନ୍ତୁ ଏ ତାହା ନୁହେ, ତାହାଠାରୁ ବି ଅଧିକ କିଛି । ତାହାର ଆଖିର ସେହି ଚିରବିଗଳିତ ଧାରାର ସେହି ମହିମାରେ ହିଁ ନତାଇ ମହିମାନ୍ୱିତ ହୋଇ ସମସ୍ତଙ୍କଠାରୁ ବଡ଼ ହୋଇ ଉଠିଅଛି । ବିପ୍ରପଦକୁ ହରାଇ ଯାହା ସେ କାନ୍ଦୁ ନଥିଲା, ସେମାନଙ୍କୁ ସମସ୍ତଙ୍କୁ ଫେରିପାଇ ମଧ୍ୟ କାନ୍ଦୁଅଛି ।

କେତେବେଳ ପରେ ।

ନତାଇ ଆସି ବସିଲ ସେହି କୃଷ୍ଣଚୂଡ଼ା ଗଛଟା ମୂଳରେ । ରାଜାକୁ ତାକ ପାଖରେ ବସାଇଲ । ଲାଇନ୍ ଯେଉଁଠାରେ ବଙ୍କାଇ ଯାଇଛି, ଦୁଇଟି ଲାଇନ ଯେଉଁଠି ଗୋଟିଏ ବନ୍ଦୁରେ ମିଶି ଏକ ହୋଇଯାଇଥିବାପରି ମନେହୁଏ, ସେଇଠାରେ ଦୃଷ୍ଟି ନିବଦ୍ଧ କରି ନତାଇ କହିଲ—ରାଜନ ! ଭାଇ !

—ଓସ୍ତାଦ୍ ! ଭଇୟା !

—ଠାକୁରଝୀ ?

—ଓସ୍ତାଦ୍ !

—ରାଜନ !

—ଠାକୁରଝୀ ତୋ ନହିଁ ରହୀ ଭଇୟା !

—ନାହିଁ ?

—ନାହିଁ ! ଉ ତୋ ମରଗୟୀ । ରାଜା ପରି ଶକତ ମଣିଷର ଓଠ ଦୁଇଟି ବି ଥରିବାକୁ ଲଗିଲ । କହିଲ—ଠାକୁରଝୀ ବାୟାଣୀ ହେଇଯାଇଥିଲ ଓସ୍ତାଦ୍ ! ତମେ ଚାଲିଯିବା ପରେ—

ରାଜାର ଆଖିରୁ ପାଣି ଗଡ଼ିବାକୁ ଲଗିଲ । ଠାକୁରଝୀ ନାହିଁ । ଠାକୁରଝୀ ମରିଯାଇଛି ! ପାଗଳ ହୋଇକରି ଠାକୁରଝୀ ମରିଯାଇଛି ! ଏଇ କେଇଟା କଥା ହିଁ ନତାଇ ପାଖରେ ଅନେକ କଥାର ତୋଫାନ ହୋଇଉଠିଲ । ଛାତି ଭିତରେ ଝଡ଼ ବୋହିଲ, ଆଖି ଫଟାଇ ଲୁହ ଝରିଲ । ମନେ ପଡ଼ିଲ—ଜୀବନ ଏତେ ଛୋଟ କପାଁ ? ତାକୁ କାନ୍ଦିବାର ଦେଖି ରାଜା କହିଲ—ଓସ୍ତାଦ୍, ଭଇୟା, ରୋତେ ହୋ ? କାନ୍ଦୁଚ ? ଠାକୁରଝୀ ଲଗି ?

ଆଖି ପୋଛି, ବଡ଼ଜୀ ହସ ହସିପକାଇ ନତାଇ କହିଲ—ଗୀତ ଶୁଣ ରାଜନ, ଗୀତ ଶୁଣ । ଗୁଣୁଗୁଣୁ କରି ଥରେ ଆବୃତ୍ତି କରି ନେଇ ସେ ଗଳା ଖୋଲି ଗାଇଲ—

"ଏଇ ଖେଦ ମୋର ମନେ—
ଭଲପାଇ ମେଣ୍ଟିଲନି ଆଶା—ଅଣ୍ଟିଲନି ଏ ଜୀବନେ !
ହାୟ, ଜୀବନ ଏତେ ଛୋଟ କପାଁ
ଏ ଭୁବନେ ?"

ରାଜା ତାହାର ହାତ ଚପିଧରି ଚକ୍କାର କରିଉଠିଲ—ହାୟ ହାୟ ହାୟରେ ! କୁହ ଓସ୍ତାଦ୍, ଜୀବନ ଏତେ ଛୋଟ କପାଁ ? ହାୟ ହାୟ ହାୟ !

ନିତାଇ କହିଲା—ତା ଯେବେ ଜାଣିଥାନ୍ତ ରାଜନ !—ପୁଣି ତାହାର ଆଖିରୁ ପାଣି ଝରିବାକୁ ଲାଗିଲା । ପୁଣି କାନ୍ଦିଲା । ନିତାଇର ଆଖିରୁ ପୁଣି ଅନର୍ଗଳ ଧାରାରେ ଲୁହ ଝରିବାକୁ ଆରମ୍ଭ କଲା ।

କାନ୍ଦ ଭିତରେଇ ପୁଣି ତାହା ମୁହଁରେ ହସ ଫୁଟିଉଠିଲା । ନା—ଠାକୁରଝି ମରିନାହିଁ—ସେ ଯେ ସ୍ପଷ୍ଟ ଦେଖିପାରୁଛି, ହେଇ ସେଇ ଯୋଡ଼ିଏ ରେଳ ଲାଇନ୍ ଦି'ଟା ଗୋଟିଏ ବିନ୍ଦୁରେ ମିଶି ବଙ୍କେଇ ଚାଲିଯାଇଛି ଦକ୍ଷିଣମୁହାଁ ନଈ ପାରିହେଇ; ସେଇଠାରେ ମୁଣ୍ଡରେ ସୁନାର ମୁକୁଟ ଦେଇଥିବା ଗୋଟିଏ କାଶତଣ୍ଡୀ ଫୁଲ ଏପଟ ସେପଟ କରି ଦୋହଲୁଅଛି, ଆଗେଇ ଆସୁଛି କି ଯେମିତି ! ସେ ଅଛି, ଅଛି ! ଏଠିକାର ସବୁ କିଛି ଭିତରେ ସେ ମିଶି ରହିଛି । ଏଇ କୃଷ୍ଣଚୂଡ଼ା ଗଛ । ହଠାତ୍ ମନେ ପଡ଼ିଗଲା —ଏଇଠାରେ ବସନ୍ତ ଆସି ପ୍ରଥମ ଦିନ ଶୋଇପଡ଼ି କହିଥିଲା—ହଇ ହେ ଓସ୍ତାଦ୍ ! ଚକିତରେ ମନ ବି ହେଲା, ବସନ୍ତ ବି ଯେମିତି ଶୋଇଅଛି ! ଆଃ ! ଠାକୁରଝି, ବସନ୍ତ—ଦିହେଁଯାକ ଯେମିତି ପାଖାପାଖି ଠିଆହୋଇଛନ୍ତି—ମିଶି ଏକାକାର ହୋଇ ଯାଉଛନ୍ତି ।

ନିତାଇ ଉଠିଲା, କହିଲା—ଚାଲ ।

—କହାଁ ଭୈୟା ?

—ମା' ଚଣ୍ଡୀଙ୍କ ଥାନକୁ । ଚାଲ ମାଆଙ୍କୁ ପ୍ରଣାମ କରି ଆସିବା ।

ରାଜା ମୁହଁକୁ ଚାହିଁ ସେ ପୁଣି କହିଲା—ମାଟିରେ ଗଡ଼ି ସାଷ୍ଟାଙ୍ଗରେ ପ୍ରଣିପାତ କରିବ ମାଆଙ୍କୁ ।

ତାହାର ସର୍ବାଙ୍ଗ ଯେପରି ଏଠାକାର ଧୂଳିମାଟିର ସ୍ପର୍ଶଲାଗି ଲାଳାୟିତ ହୋଇ ଉଠିଅଛି । ମାଆଙ୍କ ଛାମୁରେ ମାଆଙ୍କୁ ଯାଇ ପଚାରିବ—ମାଆ ଗୋ ! ଜୀବନ ଏତେ ଛୋଟ କିପାଁ ?